# ମହାପୁରୁଷ ଜଗନ୍ନାଥ ଦାସ

ଲେଖକ :
ଅଧ୍ୟାପକ ସର୍ବେଶ୍ୱର ଦାଶ

ଗ୍ରନ୍ଥମନ୍ଦିର

# ଉତ୍ସର୍ଗ

ନିତ୍ୟ ଭାଗବତ ପାରାୟଣ ଯାହାଙ୍କ ଜୀବନର ଅଲଙ୍ଘନୀୟ ବ୍ରତ ରୂପେ ଗୃହୀତ ହୋଇଥିଲା ମୋର ସେହି ପରମାରାଧ୍ୟ ସ୍ୱର୍ଗୀୟ ପିତାଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଏହି ଭକ୍ତି-ଅର୍ଘ୍ୟ ଅର୍ପିତ ହେଲା ।

ବିନୀତ ଲେଖକ

# ସୂଚୀପତ୍ର



---

## ଗ୍ରନ୍ଥ ସଂକେତ

୧ । ଚୈ. ଚ—ଚୈତନ୍ୟ ଚରିତାମୃତ
୨ । ଚୈ. ଚ. ଉ—ଚୈତନ୍ୟ ଚରିତ୍ରର ଉପାଦାନ
୩ । ଚୈ. ଭା—ଚୈତନ୍ୟ ଭାଗବତ
୪ । ଜ. ଚ—ଜଗନ୍ନାଥ ଚରିତାମୃତ
୫ । ଦା. ଭ. ର—ଦାର୍ଢ୍ୟତା ଭକ୍ତି ରସାମୃତ
୬ । ନା. ଭ. ସୂ—ନାରଦ ଭକ୍ତି ସୂତ୍ର
୭ । ବ୍ର. ସୂ—ବ୍ରହ୍ମସୂତ୍ର
୮ । ଭା.—ଭାଗବତ
୯ । ମା. ଉ—ମାଣ୍ଡୁକ୍ୟ ଉପନିଷଦ
୧୦ । ଶୂ. ସ—ଶୂନ୍ୟ ସଂହିତା

# ପ୍ରଥମ ଅଧ୍ୟାୟ

## ଜଗନ୍ନାଥଚରିତର ଉପାଦାନ

ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଇତିହାସରେ ଭକ୍ତାଗ୍ରଣୀ, କବିକୁଳତିଳକ ଜଗନ୍ନାଥ ଦାସଙ୍କ ନାମ ଅବିସ୍ମରଣୀୟ । ତାହାଙ୍କ ରଚିତ 'ଶ୍ରୀମଦ୍ଭାଗବତ' କେବଳ ଯେ ଓଡ଼ିଆ ଭାଷା ଓ ସାହିତ୍ୟର ମେରୁଦଣ୍ଡ ତାହା ନୁହେଁ, ଏହା ଉତ୍କଳୀୟ ସଭ୍ୟତା, ସଂସ୍କୃତି, ଧର୍ମ, ସମାଜ ତଥା ଜାତୀୟ-ଜୀବନର ମୂଳଭିତ୍ତି ସ୍ୱରୂପ । ଏହାର ପ୍ରମାଣ ହେଉଛି, ଓଡ଼ିଆର ଭାଗବତ-ଘର । ଓଡ଼ିଶାରେ ଏପରି ଗ୍ରାମ ନାହିଁ ଯେଉଁଠି ଭାଗବତଘର ନାହିଁ କିମ୍ବା ଏପରି ଗୃହ ନାହିଁ ଯେଉଁଠି ଜଗନ୍ନାଥ ଦାସଙ୍କ ରଚିତ ଭାଗବତ ପଠିତ ଓ ପୂଜିତ ହୁଏ ନାହିଁ । ଭାଗବତ ଯଥାର୍ଥରେ ଓଡ଼ିଆର ଜୀବନ ତଥା ମରଣର ସାଥୀ । ଯୁଗଯୁଗ ଧରି ଏହି ଗ୍ରନ୍ଥ ଏ ଜାତିର କୋଟି କୋଟି ନରନାରୀଙ୍କୁ ଜ୍ଞାନ, ଭକ୍ତି ଓ ଆଲୋକର ପଥ ପ୍ରଦର୍ଶନ କରିଆସୁଅଛି । ଭାରତୀୟ ସଭ୍ୟତା ଓ ସଂସ୍କୃତିରେ ଯାହା ନିତ୍ୟ, ଶାଶ୍ୱତ ଓ ଚିରନ୍ତନ ତାହା ଏହି କାବ୍ୟରେ ଭବ୍ୟ, ମଞ୍ଜୁଳ ଭାଷାରେ ଅଭିବ୍ୟକ୍ତ ହୋଇଅଛି । ଏହାର ଆବେଦନ ଚିରପୁରାତନ ହୋଇ ମଧ୍ୟ ନିତ୍ୟନୂତନ । ଏହିସବୁ ଦୃଷ୍ଟିରୁ ଜଗନ୍ନାଥ ଦାସଙ୍କୁ କବି ନ କହି ମହାକବି ବୋଲି କହିବା ଅଧିକ ଯୁକ୍ତିସଙ୍ଗତ ହେବ ।

ମହାକବି ଜଗନ୍ନାଥ ଦାସଙ୍କ ଅମରକାବ୍ୟ ଶ୍ରୀମଦ୍ଭାଗବତ ପ୍ରତି ଓଡ଼ିଆଙ୍କ ନିତ୍ୟପୂଜ୍ୟ ଓ ନିତ୍ୟସେବ୍ୟ ହେଲେହେଁ, ତାହାଙ୍କ ଜୀବନବୃତ୍ତାନ୍ତ ସମ୍ବନ୍ଧରେ ଆମେ ବିଶେଷ କିଛି ଜାଣୁନାହୁଁ । ସ୍ୱରଚିତ ଗ୍ରନ୍ଥସମୂହରେ ନାମୋଲ୍ଲେଖ ବ୍ୟତୀତ ନିଜ ସମ୍ବନ୍ଧରେ ସେ ବିଶେଷ କିଛି କହି ନାହାନ୍ତି । ତେଣୁ ତାହାଙ୍କ ଜୀବନୀ ସମ୍ବନ୍ଧରେ ଆଲୋଚନା କରିବାକୁ ହେଲେ ଆମକୁ ମୁଖ୍ୟତଃ ସମସାମୟିକ

ତଥା ପରବର୍ତ୍ତୀ କାଳରେ ରଚିତ ସାହିତ୍ୟକୃତିମାନଙ୍କ ଉପରେ ନିର୍ଭର କରିବାକୁ ପଡ଼ିବ । ଏହି ଗ୍ରନ୍ଥମାନଙ୍କରେ ବିବିଧ ପ୍ରସଙ୍ଗର ବର୍ଣ୍ଣନାକ୍ରମରେ ଜଗନ୍ନାଥ ଦାସଙ୍କ ମହତ୍ତ୍ୱ, ପଞ୍ଚସଖାଙ୍କ ସହିତ ତାଙ୍କର ସମ୍ପର୍କ, ରାଜା ପ୍ରତାପରୁଦ୍ରଙ୍କ ଦରବାର ଓ ତତ୍କାଳୀନ ବିଦ୍ୱନ୍ମଣ୍ଡଳୀରେ ତାଙ୍କର ପ୍ରତିଷ୍ଠା, ଚୈତନ୍ୟଙ୍କ ସଙ୍ଗେ ତାଙ୍କର ସାକ୍ଷାତ୍କାର ଓ ଦୀକ୍ଷାଗ୍ରହଣ ଇତ୍ୟାଦି ବିଷୟ ବର୍ଣ୍ଣିତ ହୋଇଅଛି । ଜଗନ୍ନାଥ ଦାସଙ୍କ ଜୀବନୀ ଆଲୋଚନା ପ୍ରସଙ୍ଗରେ ସେଗୁଡ଼ିକ ମଧ୍ୟରୁ ଯେଉଁଗୁଡ଼ିକ ସହାୟକ, ସେମାନଙ୍କ ନାମ ନିମ୍ନରେ ଉଲ୍ଲେଖ କରାଯାଉଅଛି ।

**୧ । ପଞ୍ଚସଖା ସାହିତ୍ୟ—**

'ପଞ୍ଚସଖା' ଏହି ନାମଟି ଓଡ଼ିଆ ସାହିତ୍ୟ ଓ ଉତ୍କଳୀୟ ଧର୍ମର ଇତିହାସରେ ବିଶେଷ ପ୍ରସିଦ୍ଧି ଲାଭ କରିଅଛି । ବଳରାମ ଦାସ, ଜଗନ୍ନାଥ ଦାସ, ଶିଶୁ ଅନନ୍ତ ଦାସ, ଯଶୋବନ୍ତ ଦାସ ଓ ଅଚ୍ୟୁତାନନ୍ଦ ଦାସଙ୍କୁ ପଞ୍ଚସଖା ବା ପଞ୍ଚଶାଖା କୁହାଯାଏ । ଏହି ପଞ୍ଚ ମହାତ୍ମା ଉତ୍କଳରେ ଶ୍ରୀଚୈତନ୍ୟଙ୍କର ଲୀଳାପରିକର ଥିଲେ ଏବଂ ପ୍ରତ୍ୟେକେ ସ୍ୱତନ୍ତ୍ର ପ୍ରଣାଳୀରେ ଉପାସନା କରୁଥିଲେ ହେଁ ଏକ ନିର୍ଦ୍ଦିଷ୍ଟ ମତବାଦର ଅନୁଗାମୀ ଥିଲେ । ଏଣୁ ଏମାନଙ୍କୁ ପଞ୍ଚସଖା ବା ପଞ୍ଚଶାଖା କହିବାରେ ଯୌକ୍ତିକତା ଅଛି । ଏମାନଙ୍କ ମଧ୍ୟରେ ବଳରାମ ଜ୍ୟେଷ୍ଠ ଏବଂ ଅଚ୍ୟୁତାନନ୍ଦ କନିଷ୍ଠ । ଯଶୋବନ୍ତ ଶିଶୁ ଅନନ୍ତଙ୍କଠାରୁ ଏବଂ ଶିଶୁ ଅନନ୍ତ ଅଚ୍ୟୁତାନନ୍ଦଙ୍କଠାରୁ ବୟସରେ ବଡ଼ଥିବା ଜଣାଯାଏ । ପଞ୍ଚସଖାଙ୍କ ଧର୍ମମତ ଓ ସାହିତ୍ୟ ଯେନି ବହୁ ଆଲୋଚନାମୂଳକ ଗ୍ରନ୍ଥ ସଙ୍କଳିତ ହୋଇଥିଲେହେଁ କେତେକ ସମାଲୋଚକ ପଞ୍ଚସଖା ନାମକରଣର ଯଥାର୍ଥତା ଓ ପ୍ରାଚୀନତା ସମ୍ବନ୍ଧରେ ଘୋର ସନ୍ଦେହ ପ୍ରକାଶ କରୁଥିବା ଜଣାଯାଏ । ଓଡ଼ିଆ ସାହିତ୍ୟର ଇତିହାସ ରଚୟିତା ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତିଙ୍କ ମତରେ 'ପଞ୍ଚସଖା' ନାମକରଣ ଐତିହାସିକ ନୁହେଁ, ଭକ୍ତିକ । ଅର୍ଥାତ୍ ଏ ପ୍ରକାର ନାମକରଣ କୌଣସି ଐତିହାସିକ ଘଟନା ବା ତଥ୍ୟ ଉପରେ ପ୍ରତିଷ୍ଠିତ ନୁହେଁ । ଅନ୍ୟ ଭାଷାରେ କହିଲେ, ଏହା କେବଳ

ଲୋକମୁଖରେ ପ୍ରଚରିତ ହୋଇ କାଳକ୍ରମେ ଏକ ପରଂପରାରେ ପରିଣତ ହୋଇଅଛି । ସେ ଯାହାହେଉ, ପଞ୍ଚସଖାଙ୍କ ସମକାଳୀନତା ସମ୍ବନ୍ଧରେ କୌଣସି ସନ୍ଦେହ ନାହିଁ । ଏମାନେ ନାନା ପୁରାଣ, ସଂହିତା, ଗୀତା, ଭଜନ ଓ ଚଉପଦୀ ରଚନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଯାଇଅଛନ୍ତି । ଅଚ୍ୟୁତାନନ୍ଦ, ଶିଶୁ ଅନନ୍ତ ଓ ଯଶୋବନ୍ତଙ୍କ ଲେଖାମାନଙ୍କରେ ବିବିଧ ପ୍ରସଙ୍ଗ ଅବତାରଣା ଛଳରେ ଶ୍ରୀଚୈତନ୍ୟ, ଜଗନ୍ନାଥ ଦାସ ଓ ଅନ୍ୟ ସଖାମାନଙ୍କ ବିଷୟ ବର୍ଣ୍ଣିତ ହୋଇଅଛି । ଅଚ୍ୟୁତାନନ୍ଦ ତାହାଙ୍କ 'ଶୂନ୍ୟ ସଂହିତା', 'ଗୁରୁଭକ୍ତି ଗୀତା', 'ଗରୁଡ଼ଗୀତା', 'ଗୋପାଳଙ୍କ ଓଗାଳି', 'ଉଦୟ କାହାଣୀ, 'ଭବନାବରି' ଓ 'ଦଶପଟଳ' ଆଦି ଗ୍ରନ୍ଥରେ ପଞ୍ଚସଖାଙ୍କ ଆବିର୍ଭାବ ଓ ଚୈତନ୍ୟଙ୍କ ନୀଳାଚଳ ଅବସ୍ଥିତି ଆଦି ବିଷୟ ବର୍ଣ୍ଣନାପ୍ରସଙ୍ଗରେ ଜଗନ୍ନାଥ ଦାସଙ୍କ ନାମୋଲ୍ଲେଖ କରିଅଛନ୍ତି । ଉଦାହରଣ ସ୍ୱରୂପ କେତେକ ପଂକ୍ତି ନିମ୍ନରେ ଉଦ୍ଧାର କରାଗଲା ।

"ତୁମ୍ଭ ପଞ୍ଚସଖାଙ୍କୁ ମୋ ଜନ୍ମେ ଜନ୍ମେ ଆଶ
ତୁମ୍ଭ ପାଇଁ ଅବତାର ଲୀଳା ଅଭିଳାଷ ।

× × × ×

ତାରଣ ମାରଣ ନାଗାନ୍ତକ ଯୋଗାନ୍ତକ
ବେଦାନ୍ତ ସିଦ୍ଧାନ୍ତ ପ୍ରଚ୍ଛନ୍ନ ଯେତେକ ।
ଆଗମ ନିଗମ ଶାସ୍ତ୍ର ଆଦି ଯେତେ ଧ୍ୟାନ
ଭିଆଇଲେ ପଞ୍ଚ ମହାଜନ ଏହୁ ନାମ ।

× × × ×

ଦିନ ପାଞ୍ଚ ସାତ ହେଲା ତପୀ ଗଲେ କେଣେ
ଶୁଣିଥିଲୁ ଓଡ଼ିଶା ସେ କରିବେ ଭ୍ରମଣେ ।
ଶ୍ରୀକୃଷ୍ଣ ଉଦୟ ହେଲେ ସଖାବୃନ୍ଦ ଘେନି
ବାର ସପ୍ତ ଭକ୍ତ ଉଦେ ହେଲେ ବୋଲି ଶୁଣି ।

ପଞ୍ଚଶାଖା ମୂଳେ ବାର ସପ୍ତ ଭକ୍ତ ତୁଳେ
ଖୋଳ କରତାଳ ଧରି ତରିଲେ ସକଳେ ।

× × × ×

ତୁମ୍ଭେ ମୋର ପଞ୍ଚସଖା ଅଟ ପଞ୍ଚପ୍ରାଣ
ଅବତାରଶ୍ରେଣୀ ଯେତେ ତୁମ୍ଭ ପାଇଁ ପୁଣ ।
ନିରାକାର ମନ୍ତ୍ରେ ସବ ଦୁର୍ଗତି ହରିବ
ଆପଣେ ତରିବ ସେ ଯେ ପରେ ତରାଇବ ।
ବୃଦ୍ଧମାତା ଆଦ୍ୟ ଶକ୍ତି ସଖୀ ଛନ୍ତି କହି
ନିରାକାର ଭଜନେ ନିର୍ମଳ ଭକ୍ତି ପାଇ ।
ଏମନ୍ତ କହି ସେ ଦେଲେ ମନ୍ତ୍ର ନିରାଧାର
ଆଜ୍ଞାଦେଲେ କଳିଯୁଗେ କର ଯା ପ୍ରଚାର ?”
[ ଶୂନ୍ୟ ସଂହିତା, ୯ମ ଅଧ୍ୟାୟ । ]

ଯାଅ ଅନନ୍ତ ଅଚ୍ୟୁତ ଯଶୋବନ୍ତ ଦାସ
ବଳରାମ ଜଗନ୍ନାଥ କର ଯା ପ୍ରକାଶ ।
ଅବତାରଶ୍ରେଣୀକି ଅନୁସରି
ଜନ୍ମ ଲଭିବେ ପୁଣି ଶ୍ରୀହରି ।
ଅଚ୍ୟୁତ ଅନନ୍ତ ଯେ ଯଶୋବନ୍ତ
ବଳରାମ ପୁଣି ଜଗନ୍ନାଥ ।
କଳିଯୁଗେ ଲୀଳା ପ୍ରକାଶ କରି
ତୁମ୍ଭ ଆଜ୍ଞା ଥିବେ ଶିରେ ଧରି ।
[ ଶୂନ୍ୟ ସହିତା, ୧୭ ଅଧ୍ୟାୟ । ]

ବୈଷ୍ଣବମଣ୍ଡଳ ଖୋଳ କରତାଳ
ବଜାଇ ବୋଲନ୍ତି ହରି,
ଚୈତନ୍ୟ ଠାକୁର ମଧ୍ୟେ ନୃତ୍ୟକାର
ଦଣ୍ଡ କମଣ୍ଡଳଧାରୀ ।

ଅଚ୍ୟୁତ ଅନନ୍ତ ଯେବେ ଯଶୋବନ୍ତ
ବଳରାମ ଜଗନ୍ନାଥ,
ଏ ପଞ୍ଚସଖା ହିଁ ନୃତ୍ୟ କରିଗଲେ
ଗୌରାଙ୍ଗଚନ୍ଦ୍ର ସଙ୍ଗତ ॥"
[ ଶୂନ୍ୟସଂହିତା—ପ୍ରଥମ ଅଧ୍ୟାୟ ]

× × × ×

"ପୁରସ୍ତମରେ ଯେ ରହିଣ । ଶ୍ରୀକୃଷ୍ଣ ଚୈତନ୍ୟଙ୍କି ଜାଣ ॥
ସଂପୂର୍ଣ୍ଣ ଷୋଳ ନାମ ପୁଣ । ଜଗନ୍ନାଥ ଦାସେ କହିଣ ॥
ତାରକ ବଳରାମ ଦାସେ । କହିଲେ ଯତନେ ହରଷେ ॥
ଶିଶୁକୁ ଏକାକ୍ଷର କହି । ପାଦୁକା ମନ୍ତ୍ର ଆଉ ଦେଇ ॥
ଅଣଅକ୍ଷର ମନ୍ତ୍ରସାର । କହିଲେ ଅଚ୍ୟୁତାନନ୍ଦର ॥"
[ ଗୁରୁଭକ୍ତି ଗୀତା, ୪୪ ପଟଳ ]

ଅଚ୍ୟୁତାନନ୍ଦଙ୍କ ଉପରୋକ୍ତ ଗ୍ରନ୍ଥମାନଙ୍କ ବ୍ୟତୀତ ସୁଦର୍ଶନ ଦାସ କୃତ ଯଶୋବନ୍ତଙ୍କ ଚୌରାଶି ଆଜ୍ଞା ଓ ଶିଶୁ ଅନନ୍ତଙ୍କ 'ରାସ' ଗ୍ରନ୍ଥରେ ମଧ୍ୟ ଜଗନ୍ନାଥ ଦାସଙ୍କ ସମ୍ବନ୍ଧରେ ଅନୁରୂପ ଉକ୍ତିମାନ ପରିଲକ୍ଷିତ ହୁଏ; ଯଥା—

"କହନ୍ତି ଚୈତନ୍ୟ ଗୋସାଇଁ । ପଞ୍ଚସଖାଙ୍କୁ ପାଶେ ଚାହିଁ ॥
ବୋଇଲେ ଜଗନ୍ନାଥ ଦାସ । ମୋର ନିକଟ ବେଗେ ଆସ ॥
ପୁଣି ବୋଇଲେ ବଳରାମ । ଆସ ମୋ ନିକଟେ ବହନ ॥
ଯଶୋବନ୍ତ ଦାସ ତୁ ଆସ । ଅଚ୍ୟୁତାନନ୍ଦ ଶିଶୁ ଦାସ ॥
ପ୍ରଭୁଙ୍କ ଶ୍ରୀମୁଖ ବଚନ । ରାଇଲେ ଗଲୁ ସନ୍ନିଧାନ" ॥
[ ଯଶୋବନ୍ତଙ୍କ ଚୌରାଶି ଆଜ୍ଞା ]

ଗୁରୁ କହନ୍ତି ଶିଷ୍ୟର ବଚନେ
ସଖାଏ ଜାତ ମର୍ତ୍ତ୍ୟଭୁବନେ ।
ଯଶୋବନ୍ତର ସାତଶ ପଞ୍ଚାଶ
ଦ୍ୱାଦଶ ଲକ୍ଷ ଏଥିରେ ବିଶେଷ ।

ଅନନ୍ତ ଷୋଳ ବାଆନ ଯେ ହୋଇ,
ଏଥି ମୋକ୍ଷ ଯାନ ଦ୍ୱାଦଶ ରହି ।
ଗୁଣେ ପନ୍ଦର ଶତ ଶତାବନ,
ଏଥି ମୋକ୍ଷ ଯାନ ଦ୍ୱାଦଶ ଜାଣ ।
ଶ୍ରୀବତ୍ସ ଛତ୍ତିଶ ଶତ ଭଣିତା,
ଦ୍ୱାଦଶ ଜଣ ଏଥିରେ କରତା ।
ଅଚ୍ୟୁତ ଅନନ୍ତ ବାଲଗୋପାଳ,
ଦ୍ୱାଦଶ ଶତେତଶ ଦ୍ୱାଦଶ ସାର ।”
[ ଗ୍ରନ୍ଥ ]

ଉପର୍ଯ୍ୟୁକ୍ତ ଉଦ୍ଧୃତାଂଶ ସମୂହରୁ ଜଗନ୍ନାଥ ଦାସଙ୍କର ମହତ୍ତ୍ୱ, ଧର୍ମମତ, ଚୈତନ୍ୟ ଓ ପଞ୍ଚସଖାଙ୍କ ସହିତ ତାଙ୍କର ସଂପର୍କ ଇତ୍ୟାଦି କେତେକ ବିଷୟରେ ସାମାନ୍ୟ ସୂଚନା ମିଳେ ।

## ୨ । ଜଗନ୍ନାଥଚରିତାମୃତ—

ବଙ୍ଗସାହିତ୍ୟରେ ଚୈତନ୍ୟଚରିତ ଗ୍ରନ୍ଥ ସଦୃଶ ଓଡ଼ିଆ-ସାହିତ୍ୟରେ ପଞ୍ଚସଖାଙ୍କ ମଧ୍ୟରେ ପ୍ରଧାନ ମହାପୁରୁଷ ଜଗନ୍ନାଥ ଦାସଙ୍କ ସମ୍ବନ୍ଧରେ ରଚିତ ଦିବାକର ଦାସଙ୍କ “ଜଗନ୍ନାଥଚରିତାମୃତ” ଏକ ଉପାଦେୟ ଓ ଅପରିହାର୍ଯ୍ୟ ପ୍ରାମାଣିକ ଗ୍ରନ୍ଥ । ମହାତ୍ମା ଜଗନ୍ନାଥ ଦାସଙ୍କ ଜୀବନର ପ୍ରଧାନ ପ୍ରଧାନ ଘଟଣାବଳୀ ଏଥିରେ ଯେପରି ବର୍ଣ୍ଣିତ ହୋଇଅଛି, ତାହା ଅନ୍ୟତ୍ର ବିରଳ । ପରବର୍ତ୍ତୀ କାଳରେ ଯେଉଁ ଲେଖକମାନେ ଜଗନ୍ନାଥ ଦାସଙ୍କ ଜୀବନୀ ଆଲୋଚନା କରିଛନ୍ତି, ସେମାନେ ସମସ୍ତେ ଏହାକୁ ସେମାନଙ୍କର ଆଲୋଚନାର ପ୍ରଧାନ ଅବଲମ୍ବନରୂପେ ଗ୍ରହଣ କରିଅଛନ୍ତି । ‘ଜଗନ୍ନାଥଚରିତାମୃତ’ରେ ‘ଚୈତନ୍ୟଚରିତାମୃତ’ର ଶ୍ଳୋକ ଉଦ୍ଧାର କରାଯାଇଥିବାରୁ ଦିବାକର ଦାସ ‘ଚୈତନ୍ୟଚରିତାମୃତ’ର ରଚୟିତା କୃଷ୍ଣଦାସ କବିରାଜଙ୍କ ପରବର୍ତ୍ତୀ । ‘ଚୈତନ୍ୟଚରିତାମୃତ’ର ରଚନା ଖ୍ରୀ: ୧୬୧୫ରେ ସମାପ୍ତ ହୋଇଥିବା ହେତୁ, ‘ଜଗନ୍ନାଥଚରିତାମୃତ’ ସପ୍ତଦଶ ଶତାବ୍ଦୀର ଦ୍ୱିତୀୟ ବା ତୃତୀୟ

ପାଦରେ ଲିଖିତ ହୋଇଥିବା ସମ୍ଭବପର । ପୁନଶ୍ଚ 'ଚୈତନ୍ୟଚରିତାମୃତ' ବ୍ୟତୀତ ପରବର୍ତ୍ତୀ ବଙ୍ଗୀୟ ଅନ୍ୟ କୌଣସି ଚୈତନ୍ୟ ଚରିତ ଗ୍ରନ୍ଥର ଶ୍ଳୋକାଦ୍ଧାର କରାଯାଇନଥିବାରୁ କବି ଦିବାକର ଦାସ ସପ୍ତଦଶ ଶତାବ୍ଦୀରେ ଜୀବିତ ଥିବା ନିଶ୍ଚିତ ।

### ୩ । ଚୈତନ୍ୟ ଭାଗବତ—

ବଙ୍ଗଳା 'ଚୈତନ୍ୟ ମଙ୍ଗଳ', 'ଚୈତନ୍ୟ ଭାଗବତ' ଓ 'ଚୈତନ୍ୟ-ଚରିତାମୃତ' ପରି 'ଚୈତନ୍ୟ ଭାଗବତ' ଓଡ଼ିଆରେ ଲିଖିତ ଏକ ପ୍ରଧାନ ଚୈତନ୍ୟଚରିତ ଗ୍ରନ୍ଥ । ଏହାର ଲେଖକ ଈଶ୍ୱର ଦାସଙ୍କ ସମୟ ଓ 'ଚୈତନ୍ୟ ଭାଗବତ'ର ରଚନାକାଳ ସମ୍ବନ୍ଧରେ କୌଣସି ସ୍ପଷ୍ଟ ସଙ୍କେତ ଏ ଗ୍ରନ୍ଥରେ ନାହିଁ । ପୁସ୍ତକର ପ୍ରଥମ ଅଧ୍ୟାୟରେ ଗ୍ରନ୍ଥକାର ନିଜର ପରିଚୟ କେବଳ ଏତିକି ମାତ୍ର ଦେଇଅଛନ୍ତି ଯେ, ସେ କ୍ଷିତିକୁଳ ଅର୍ଥାତ୍ ମାର୍କଣ୍ଡବଂଶ ଅବଧାନବଂଶରେ ଜାତ ଏବଂ ସ୍ୱୟଂ ଜଗନ୍ନାଥ କର୍ତ୍ତୃକ ସ୍ୱପ୍ନାଦିଷ୍ଟ ହୋଇ ଗ୍ରନ୍ଥ ରଚନାକରିଅଛନ୍ତି । ଗ୍ରନ୍ଥବର୍ଣ୍ଣିତ ଚୈତନ୍ୟା ମୃତ୍ୟୁ ବିଷୟକ ଆଲୋଚନା ଓ ନିତ୍ୟାନନ୍ଦଙ୍କ ପୁତ୍ର ବୀରଭଦ୍ରଙ୍କ ଜନ୍ମବୃତ୍ତାନ୍ତକୁ ଭିତ୍ତି କରି ଶ୍ରୀଯୁକ୍ତ ପ୍ରଭାତଚନ୍ଦ୍ର ମୁଖୋପାଧ୍ୟାୟ ଈଶ୍ୱର ଦାସଙ୍କୁ ସପ୍ତଦଶ ଶତାବ୍ଦୀର ପ୍ରଥମ ପାଦରେ ଅବସ୍ଥାପିତ କରିଅଛନ୍ତି । କିନ୍ତୁ 'ଚୈତନ୍ୟ ଚରିତେର ଉପାଦାନ'ର ଲେଖକ ଶ୍ରୀଯୁକ୍ତ ବିମାନବିହାରୀ ମଜୁମଦାର ଓଡ଼ିଆ 'ଚୈତନ୍ୟ ଭାଗବତ' ଶ୍ରୀଚୈତନ୍ୟଙ୍କ ତିରୋଭାବର ୧୫୦ ବର୍ଷ ପରେ ଲିଖିତ ହୋଇଅଛି ବୋଲି ମତ ପ୍ରଦାନ କରିଅଛନ୍ତି । ଉକ୍ତ ଆର୍ତ୍ତବଲ୍ଲଭ ମହାନ୍ତି ମଧ୍ୟ 'ଚୈତନ୍ୟ ଭାଗବତ'ର ମୁଖବନ୍ଧରେ ମଜୁମଦାରଙ୍କର ମତକୁ ଅନୁମୋଦନ କରିଅଛନ୍ତି ।

ଚୈତନ୍ୟଲୀଳା ପ୍ରଖ୍ୟାପନ ଗ୍ରନ୍ଥର ମୂଳ ଉଦ୍ଦେଶ୍ୟ ହେଲେ ହେଁ, ଲେଖକ ପ୍ରସଙ୍ଗକ୍ରମେ ଚୈତନ୍ୟଙ୍କର ଲୀଳାପରିକର ଜଗନ୍ନାଥପ୍ରମୁଖ ପଞ୍ଚସଖାଙ୍କ ବିଷୟ ଉଲ୍ଲେଖ କରିଅଛନ୍ତି । ଜଗନ୍ନାଥ ଦାସଙ୍କ ସମ୍ବନ୍ଧରେ ସେ ଯାହା କହିଅଛନ୍ତି ତାହା ସହିତ ଦିବାକର ଦାସଙ୍କ 'ଜଗନ୍ନାଥଚରିତାମୃତ'ବର୍ଣ୍ଣିତ ବିଷୟର ଯଥେଷ୍ଟ ସାମଞ୍ଜସ୍ୟ ଥିଲେ ହେଁ କେତେକ ବ୍ୟତିକ୍ରମ ଲକ୍ଷିତ ହୁଏ ।

'ଚୈତନ୍ୟ-ଭାଗବତ'ର ଆଲୋଚନାରୁ ଜଣାଯାଏ ଯେ, ଈଶ୍ୱର ଦାସ କେତେକ ନୂତନ ବିଷୟର ଅବତାରଣା କରିବା ସଙ୍ଗେ ସଙ୍ଗେ 'ଜଗନ୍ନାଥ-ଚରିତାମୃତ'ର କେତେକ ବିଷୟ ଛାଡ଼ିଯାଇଛନ୍ତି । ଉଦାହରଣ ସ୍ୱରୂପ, ପଞ୍ଚସଖାଙ୍କ ପୁରାଣାଦି ରଚନା କରିବା ନିମିତ୍ତ ଆଦେଶ କରିବା ପାଇଁ ଚୈତନ୍ୟ ଶ୍ରୀଜଗନ୍ନାଥଙ୍କୁ ପ୍ରାର୍ଥନା କରିବା, ଚୈତନ୍ୟ ଜଗନ୍ନାଥ ଦାସଙ୍କୁ ଅବତାର ମଠର ଅଧିକାରୀ ଭାବରେ ଅଭିହିତ କରି ତାହାଙ୍କ ମୁଣ୍ଡରେ ଶାଢ଼ି ବାନ୍ଧିବା, ବିଭିନ୍ନ ଯୁଗରେ ଜଗନ୍ନାଥ ଦାସ ଭିନ୍ନ ଭିନ୍ନ ନାମରେ ଜନ୍ମଗ୍ରହଣ କରିବା, ଚୈତନ୍ୟ ଓ ସୀତାଠାକୁରାଣୀଙ୍କ ଆଦେଶରେ ଜଗନ୍ନାଥ ଦାସ ପ୍ରତାପରୁଦ୍ରଙ୍କ ପାଟରାଣୀ ଭାନୁମତୀ ଓ ଅନ୍ୟ ବତିଶ ରାଣୀଙ୍କୁ ଦୀକ୍ଷା ପ୍ରଦାନ କରିବା, ପଞ୍ଚସଖା ସମେତ ଜଗନ୍ନାଥ ଦାସ କଟକରେ ଚୈତନ୍ୟଙ୍କ ସଙ୍ଗେ ଲୀଳାସଂକୀର୍ତ୍ତନରେ ଯୋଗଦାନ କରିବା, ଜଗନ୍ନାଥ ଦାସଙ୍କ ରଚିତ ଭାଗବତକୁ ଶ୍ରୀନିବାସ ଚୈତନ୍ୟଙ୍କୁ ପଢ଼ି ଶୁଣାଇବା ଓ ଜଗନ୍ନାଥ ଦାସ ଶ୍ରୀଜଗନ୍ନାଥଙ୍କ କୃପାରୁ ସଖ୍ୟଙ୍କ ପ୍ରାପ୍ତ ହେବା ଇତ୍ୟାଦି ବହୁ ବିଷୟ 'ଜଗନ୍ନାଥ-ଚରିତାମୃତ'ରେ ନାହିଁ । ପୁନଶ୍ଚ ଜଗନ୍ନାଥ ଦାସଙ୍କ ବାଲ୍ୟଶିକ୍ଷା, ବଟଗଣେଶଙ୍କ ନିକଟରେ ଶ୍ରୀଚୈତନ୍ୟଙ୍କ ସଙ୍ଗେ ମିଳନ ଏବଂ ରାଣୀ ଗୌରୀଦେବୀଙ୍କୁ ଦୀକ୍ଷା ପ୍ରଦାନ ଇତ୍ୟାଦି କେତେକ ବିଷୟ ଈଶ୍ୱର ଦାସ ଉଲ୍ଲେଖ କରିନାହାନ୍ତି । ଏ ସବୁର ତୁଳନାତ୍ମକ ବିଚାର ଯଥାସ୍ଥାନରେ କରାଯିବ ।

କେତେକ ଆଲୋଚକ ଈଶ୍ୱର ଦାସଙ୍କ 'ଚୈତନ୍ୟ-ଭାଗବତ'କୁ ଏକ ଐତିହାସିକ ପ୍ରାମାଣିକ ଗ୍ରନ୍ଥ ରୂପେ ଗ୍ରହଣ କରିବାପାଇଁ ପଶ୍ଚାତ୍‌ପଦ । ଅବଶ୍ୟ ଈଶ୍ୱର ଦାସ ଅନ୍ୟାନ୍ୟ ଚରିତ-ଗ୍ରନ୍ଥକାରମାନଙ୍କ ସଦୃଶ ଭକ୍ତିର ଉଲ୍ଲୋଳକଲ୍ଲୋଳରେ ଭାସିଯାଇ ବହୁ କାଳ୍ପନିକ, ଅତିରଞ୍ଜିତ ଅତିମାନବିକ ଉପାଖ୍ୟାନକୁ ତାଙ୍କ କାବ୍ୟର ଅଙ୍ଗୀଭୂତ କରିଅଛନ୍ତି । ହେଲେହେଁ ଚୈତନ୍ୟ ଓ ପଞ୍ଚସଖାଙ୍କ ମଧ୍ୟରେ ସମ୍ବନ୍ଧ, ଚୈତନ୍ୟଙ୍କ ଉଦାର ଧର୍ମମତ ଓ ଉତ୍କଳୀୟ ବୈଷ୍ଣବଧର୍ମର ସ୍ୱରୂପ ବିଶ୍ଳେଷଣରେ ସେ ଯେ ଗୌଡ଼ୀୟ ବୈଷ୍ଣବ ଗ୍ରନ୍ଥକାରମାନଙ୍କ ଚର୍ବିତଚର୍ବିତ ପନ୍ଥା ଛାଡ଼ି ନୂତନ ଆଲୋକର ସନ୍ଧାନ ଦେଇଛନ୍ତି, ଏଥିରେ ସନ୍ଦେହ ନାହିଁ । ଏ ଦୃଷ୍ଟିରୁ ବିଚାରକଲେ 'ଚୈତନ୍ୟ-

ଭାଗବତ'ର ଐତିହାସିକ ଉପାଦେୟତା ନାହିଁ ବୋଲି କହିବା ସମୀଚୀନ ହେବନାହିଁ ।

## ୪ । ଗୋପାଳଖଣ୍ଡିକକୃତ ପଦ୍ମକଳ୍ପ ପୁରାଣ—

ଦିବାକର ଦାସଙ୍କ ଜଗନ୍ନାଥଚରିତାମୃତ ପାଠରୁ ଜଣାଯାଏ ଯେ ଜଗନ୍ନାଥ ଦାସଙ୍କର ପ୍ରଧାନ ଷୋଡ଼ଶ ଶିଷ୍ୟଙ୍କ ମଧ୍ୟରେ ଗୋପାଳ ଦାସ (ଖଣ୍ଡିକ) ଅନ୍ୟତମ ଥିଲେ । ସେ ମହାରାଜା ପ୍ରତାପରୁଦ୍ରଙ୍କ ସମକାଳୀନ ଓ ଜାତିରେ ବ୍ରାହ୍ମଣ ଥିବା ବିଷୟ ସ୍ୱରଚିତ 'ପଦ୍ମକଳ୍ପ ପୁରାଣ'ରେ ଉଲ୍ଲେଖ କରିଅଛନ୍ତି । 'ପଦ୍ମକଳ୍ପ ପୁରାଣ' ବର୍ଣ୍ଣିତ ଜଗନ୍ନାଥ ଦାସଙ୍କ ଧର୍ମମତ, ଜନ୍ମ-ରହସ୍ୟ, ଅତିବଡ଼ ଉପାଧି ପ୍ରାପ୍ତି ଓ ସ୍ତ୍ରୀ-ଅଙ୍ଗ ପ୍ରାପ୍ତି ଆଦି ବିଷୟ ସହିତ ଦିବାକର ଦାସଙ୍କ 'ଜଗନ୍ନାଥଚରିତାମୃତ'ର ବିଷୟ-ବସ୍ତୁର ବିଶେଷ ସାମଞ୍ଜସ୍ୟ ଲକ୍ଷିତହୁଏ ।

## ୫ । ନନ୍ଦଦାସଙ୍କ ଅଣାକାର ସଂହିତା—

ନନ୍ଦଦାସଙ୍କ 'ଅଣାକାର ସଂହିତା' ଅଚ୍ୟୁତାନନ୍ଦଙ୍କ 'ଅଣାକାର ସଂହିତା' ପରି ଯୋଗସମ୍ବନ୍ଧୀୟ ଏକ ଗ୍ରନ୍ଥ । ଏହା ଶ୍ରୀକୃଷ୍ଣ ଅର୍ଜୁନ ଉକ୍ତି-ପ୍ରତ୍ୟୁକ୍ତି ଛଳରେ 'ଆଗତ ଭବିଷ୍ୟପୁରାଣ' ଢାଞ୍ଚାରେ ରଚିତ ହୋଇଅଛି । ଏହି ପୁସ୍ତକରେ 'ପରଚେ ଗୀତା', 'ଶୈବପୁରାଣ' ଓ 'ଗୋବିନ୍ଦଗୀତା' ଇତ୍ୟାଦିର ଲେଖକ ଦ୍ୱାରିକା ଦାସଙ୍କ ନାମୋଲ୍ଲେଖ କରାଯାଇଥିବାରୁ ନନ୍ଦ ଦାସ ଦ୍ୱାରିକା ଦାସଙ୍କ ସମସାମୟିକ ଅଥବା କିଞ୍ଚିତ୍ ପରବର୍ତ୍ତୀ ବୋଲି ମନେହୁଏ । ଦ୍ୱାରିକା ଦାସ ସପ୍ତଦଶ ଖ୍ରୀଷ୍ଟାବ୍ଦର ଦ୍ୱିତୀୟାର୍ଦ୍ଧରେ ଜୀବିତ ଥିବା ବିଷୟ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି 'ପରଚେ ଗୀତା'ର ମୁଖବନ୍ଧରେ ଦର୍ଶାଇଛନ୍ତି । ତେଣୁ ନନ୍ଦ ଦାସ ସପ୍ତଦଶ ଶତାବ୍ଦୀର ଦ୍ୱିତୀୟ ବା ତୃତୀୟ ପାଦରେ ଜୀବିତ ଥିବା ସମ୍ଭବପର । ଏହି ପୁସ୍ତକର ସପ୍ତମ ଅଧ୍ୟାୟରେ ଜଗନ୍ନାଥ ଦାସଙ୍କ ଜନ୍ମବୃତ୍ତାନ୍ତ ଉଲ୍ଲେଖ କରିବାକୁ ଯାଇ ନନ୍ଦଦାସ କହିଅଛନ୍ତି—

"ଏବେ ଯେ ଜଗନ୍ନାଥ ଜନ୍ମ ।
କହିବା ଶୁଣ ହେ। ଅର୍ଜୁନ ॥
ପୁରୁଷୋତ୍ତମ ଯେ କ୍ଷେତ୍ରରେ ।
ଜନ୍ମିବେ ବ୍ରାହ୍ମଣକୁଳରେ ॥
ରାଧାଙ୍କ ପ୍ରେମ ଭଜନରେ ।
ଚଉ ବୁଡ଼ାଇ ନିରନ୍ତରେ ॥
କରିବ ନାମ ଭାଗବତ ।
ଧରିବ ଶ୍ରୀହରିଙ୍କ ମତ ॥
ଶିଷ୍ୟ ପ୍ରଶିଷ୍ୟ କରିବ ।
ସମସ୍ତେ ପୁଣି ନାଶିଯିବ ॥"

ନନ୍ଦ ଦାସଙ୍କର ଏହି ଉକ୍ତି ସହିତ 'ଜଗନ୍ନାଥ ଚରିତାମୃତ' ବର୍ଣ୍ଣିତ ବିଷୟର ପୂର୍ଣ୍ଣ ସାମଞ୍ଜସ୍ୟ ଲକ୍ଷିତ ହୁଏ ।

## ୭ । ଦାର୍ଢ୍ୟତାଭକ୍ତିରସାମୃତ—

ଏହି ଗ୍ରନ୍ଥର ରଚୟିତା ହେଉଛନ୍ତି ରାମ ଦାସ । ସେ ଅଷ୍ଟାଦଶ ଶତକରେ ଗଞ୍ଜାମ ଜିଲ୍ଲାର ମହୁରି ତାଲୁକରେ ଜୁରା ଗ୍ରାମରେ ବାସକରୁଥିଲେ । 'ଦାର୍ଢ୍ୟତାଭକ୍ତିରସାମୃତ'ର ପଞ୍ଚବିଂଶ ଅଧ୍ୟାୟ ଶେଷରେ ଲେଖାଅଛି—

"ଏ ଦାର୍ଢ୍ୟତାଭକ୍ତି କଥାମାନ
ପଚିଶ ଅଧ୍ୟାୟେ ସମ୍ପୂର୍ଣ୍ଣ ।
ଶ୍ରୀ ବୀରକେଶରୀ ଦେବଙ୍କ
ସଂପୂର୍ଣ୍ଣ ବୟାଳିଶ ଅଙ୍କ ।
ଏମନ୍ତ ଶୁଭ ଅନୁକୂଳେ
ପ୍ରାଣୀଙ୍କ ଶ୍ରବଣ ମଙ୍ଗଳେ ।
ସମ୍ପୂର୍ଣ୍ଣ ହେଲା ଏ ଚରିତ
କହଇ ଲଛମନ ସୁତ ।"

ଏଥିରୁ ଅନୁମିତ ହୁଏ ଯେ, ଖ୍ରୀ: ୧୭୬୫-୭୬ ବେଳକୁ କବି ଜୀବିତ ଥିଲେ । 'ଦାର୍ଢ୍ୟତାଭକ୍ତିରସାମୃତ' ଦୁଇ ଭାଗରେ ବିଭକ୍ତ ଏବଂ ପ୍ରତ୍ୟେକ ଭାଗରେ ପୌରାଣିକ ଓ ଐତିହାସିକ ପଚାଶ ଜଣ ଭକ୍ତଙ୍କର ଚରିତ ସନ୍ନିବେଶିତ ହୋଇଅଛି । ନାଭାଜୀକୃତ ହିନ୍ଦୀ 'ଭକ୍ତମାଳା' ପରି ଏହା ଏକ ଚରିତ-ଗ୍ରନ୍ଥ । 'ଦାର୍ଢ୍ୟତାଭକ୍ତିରସାମୃତ'ରେ ଭକ୍ତମାନଙ୍କର ଅଦ୍ଭୁତ କ୍ରିୟାକଳାପ ସମ୍ବନ୍ଧରେ ଯେପରି ଅତିରଞ୍ଜିତ, ଅବାସ୍ତବ ଓ ଅତିମାନୁଷିକ ଘଟଣାବଳୀର ଉଲ୍ଲେଖ କରାଯାଇଅଛି, ତହିଁରୁ ଅନୁମିତ ହୁଏ ଯେ, ଲେଖକ କେବଳ ଜନଶ୍ରୁତି, କିମ୍ବଦନ୍ତୀ ଓ ନିଜ କଳ୍ପନାକୁ ଆଶ୍ରୟ କରି ଏହା ଲେଖି-ଯାଇଛନ୍ତି । ବସ୍ତୁତଃ ଏଗୁଡ଼ିକରେ କୌଣସି ଐତିହାସିକ ସତ୍ୟ ଥିବାପରି ମନେ ହୁଏ ନାହିଁ । ଭକ୍ତିର ମାହାତ୍ମ୍ୟ ପ୍ରଖ୍ୟାପନ ଗ୍ରନ୍ଥର ପ୍ରଧାନ ଉଦ୍ଦେଶ୍ୟରୂପେ ଗୃହୀତ ହୋଇଅଛି ।

'ଦାର୍ଢ୍ୟତାଭକ୍ତିରସାମୃତ' ପଞ୍ଚଦଶ ଅଧ୍ୟାୟରେ ବର୍ଣ୍ଣିତ 'ଜଗନ୍ନାଥ ଦାସ' ସମ୍ବାଦରୁ ନିମ୍ନଲିଖିତ ବିଷୟର ଆଭାସ ମିଳେ ।

(୧) ଜଗନ୍ନାଥ ଦାସଙ୍କ ପାଣ୍ଡିତ୍ୟ ଓ ବହୁଶାସ୍ତ୍ରଦର୍ଶିତ୍ୱ ।

(୨) ସ୍ୱୟଂ ଭଗବାନଙ୍କ ଦ୍ୱାରା ସ୍ୱପ୍ନାଦିଷ୍ଟ ହୋଇ ଜଗନ୍ନାଥ ଦାସ 'ଭାଗବତ' ରଚନାରେ ପ୍ରବୃତ୍ତ ହେବା ।

(୩) ନାରୀମହଲରେ ତାଙ୍କର ପ୍ରତିପତ୍ତି ।

(୪) ଈର୍ଷାପରାୟଣ ଖଳ ଲୋକଙ୍କର ପ୍ରରୋଚନାରେ ରାଜା ପ୍ରତାପ-ରୁଦ୍ରଙ୍କର କ୍ରୋଧ ଓ ଜଗନ୍ନାଥ ଦାସଙ୍କୁ ନାରୀଭାବ ପ୍ରଦର୍ଶନ ନିମିତ୍ତ ଆଦେଶ ପ୍ରଦାନପୂର୍ବକ କାରାଗାରରେ ନିକ୍ଷେପ ।

(୫) ଭଗବାନଙ୍କ ଅସୀମ କୃପାରୁ ଜଗନ୍ନାଥ ଦାସଙ୍କର ସ୍ତ୍ରୀ-ରୂପ ପ୍ରାପ୍ତି ।

(୬) ରାଜାଙ୍କ ସନ୍ଦେହ ମୋଚନ ପାଇଁ ଜଗନ୍ନାଥ ଦାସଙ୍କ ଦ୍ୱାରା ରଜସ୍ୱଳା ନାରୀର ଚିହ୍ନ ପ୍ରଦର୍ଶନ ।

(୭) ଜଗନ୍ନାଥ ଦାସଙ୍କଠାରେ ରାଜାଙ୍କର କ୍ଷମାଭିକ୍ଷା ଓ ଭୂମ୍ୟାଦି ପ୍ରଦାନ । ଜଗନ୍ନାଥ ଦାସଙ୍କ ଧାର୍ମିକତା, ଭକ୍ତିମତ୍ତା ଓ ପାଣ୍ଡିତ୍ୟାଦି ବିଷୟ ପଞ୍ଚସଖା ସାହିତ୍ୟ, ଜଗନ୍ନାଥଚରିତାମୃତ ଓ ଚୈତନ୍ୟ-ଭାଗବତରେ ବର୍ଣ୍ଣିତ ହୋଇଅଛି । ପ୍ରତାପରୁଦ୍ରଙ୍କଦ୍ୱାରା ତାହାଙ୍କର ପରୀକ୍ଷା ଓ ସ୍ୱୀଭାବ ପ୍ରକଟନ ଇତ୍ୟାଦି ବିଷୟମାନ ମଧ୍ୟ 'ଜଗନ୍ନାଥଚରିତାମୃତ', 'ଚୈତନ୍ୟ-ଭାଗବତ' ଓ 'ନିତ୍ୟଗୁପ୍ତମଣି'ରେ ବର୍ଣ୍ଣିତ ହୋଇଅଛି । କିନ୍ତୁ ଜଗନ୍ନାଥ ଦାସ ନାରୀମାନଙ୍କୁ ଭାଗବତ ଶୁଣାଇବା ଓ ତନ୍ନିମିତ୍ତ ପ୍ରତାପରୁଦ୍ର ତାହାଙ୍କୁ କାରାଗାରରେ ନିକ୍ଷେପ କରିବା ଓ ଭଗବାନଙ୍କ ପଦସ୍ପର୍ଶରେ ଜଗନ୍ନାଥ ଦାସ ନାରୀ-ରୂପ ପ୍ରାପ୍ତ ହେବା ଇତ୍ୟାଦି ବିଷୟ ଅନ୍ୟ କୌଣସି ଗ୍ରନ୍ଥରେ ବର୍ଣ୍ଣିତ ହୋଇନାହିଁ । ଏହି ବିଷୟମାନ ଯେପରି ହାସ୍ୟାସ୍ପଦ ତଦ୍ରୂପ ଅବିଶ୍ୱାସ-ବ୍ୟଞ୍ଜକ । ଯେତେଦୂର ଅନୁମିତ ହୁଏ, ରାମ ଦାସ କେତେକ ଜନଶ୍ରୁତି ଉପରେ ଆପଣା ରଙ୍ଗିନ୍ କଳ୍ପନାର ପ୍ରଲେପ ଦେଇ ଏପରି ଲେଖିଯାଇଅଛନ୍ତି । ଜଗନ୍ନାଥ ଦାସଙ୍କ ଜୀବନୀ ସମ୍ବନ୍ଧରେ ଏ ପୁସ୍ତକ କୌଣସି ନୂତନ ଆଲୋକର ସନ୍ଧାନ ଦିଏ ନାହିଁ ।

## ୭ । ଚକଡ଼ା ବଖାଣ—

ଚନ୍ଦ୍ରକୁଳ ଚଇମାଙ୍କ ପୁତ୍ର ମଙ୍ଗଳ ଶ୍ରବଣ ଚଇମାଙ୍କ ଦ୍ୱାରା ଲିଖିତ 'ଚକଡ଼ା ବଖାଣ' ନାମକ ପୋଥିରେ ଜଗନ୍ନାଥ ଦାସଙ୍କ ଭାଗବତର ଉଲ୍ଲେଖ ନିମ୍ନପ୍ରକାରେ ଦୃଷ୍ଟହୁଏ ।

"ସନ୍ନ୍ୟାସ ଗୋସାଇଁ ଆଜ୍ଞା କଲେ ଶ୍ରୀଭାଗବତର ବିଷୟ କହିଲେ ଭିକ୍ଷା କରିବୁ । ଚଇମା କହିଲେ—ସେ ଭାଗବତ ସୁଧା-ସମୁଦ୍ର ମନୁଷ୍ୟମାନଙ୍କୁ କି ଗୋଚର ? ପୂର୍ବେ ଶ୍ରୀବିଷ୍ଣୁ ବ୍ରହ୍ମାଙ୍କୁ କହିଲେ, ବ୍ରହ୍ମା ନାରଦଙ୍କୁ କହିଲେ, ନାରଦ ବେଦବ୍ୟାସଙ୍କୁ କହିଲେ, ବ୍ୟାସ ଶୁକଦେବଙ୍କୁ କହିଲେ, ଶୁକ ପରୀକ୍ଷିତଙ୍କୁ କହିଲେ । ଏମାନଙ୍କୁ ଭାଗବତ ବିଷୟ ଗୋଚର, ମୋତେ ଗୋଚର ନାହିଁ, କି ଆଜ୍ଞା ହେଉଅଛି ହେଉ । ସନ୍ନ୍ୟାସ ଗୋସାଇଁ ଆଜ୍ଞା କଲେ ଶ୍ରୀଭାଗବତ ଦ୍ୱାଦଶ ସ୍କନ୍ଧ ମଧ୍ୟରେ ସାର କିଏ ? ଚଇମା କହିଲେ

ଦଶମସ୍କନ୍ଧ ସାର । ସନ୍ନ୍ୟାସି କହିଲେ—ଏଥିମଧ୍ୟରେ ସାର କଏ ? ଚଇନି କହିଲେ ଶ୍ରୀରାସ ପାଞ୍ଚ ଅଧ୍ୟାୟ ସାର । ସନ୍ନ୍ୟାସ କହିଲେ, ଏଥି ମଧ୍ୟରେ ସାର କଏ ? ଚଇନି କହିଲେ—ଶ୍ରୀକୃଷ୍ଣ ବୃନ୍ଦାବତୀଙ୍କି ଯେବେ ଅନ୍ତର୍ଦ୍ଧାନ ହେଲେ ସେ ଅଧ୍ୟାୟ ସାର ।"

ବୃନ୍ଦାବତୀ-ଉପାଖ୍ୟାନ ମୂଳ ସଂସ୍କୃତ ଭାଗବତରେ ନାହିଁ । ଏହା କେବଳ ଜଗନ୍ନାଥ ଦାସଙ୍କ ରଚିତ ଓଡ଼ିଆ ଭାଗବତରେ ଅଛି ।

"ଗୋପିକା ବୃନ୍ଦାବତୀ ନାମେ,
ଥିଲି ସେ କୃଷ୍ଣ ସନ୍ନିଧାନେ ।
ପୂର୍ବେ ସେ ଅଛି ତପ କରି,
ଶ୍ରୀକୃଷ୍ଣ ତା'ର ଭୁଜ ଧରି ।"...

ଚଇନିଙ୍କ ଟୀକାରେ ରାଜା ପ୍ରତାପରୁଦ୍ରଙ୍କ ରାଜତ୍ୱ କାଳର ଘଟନାବଳୀ ବର୍ଣ୍ଣିତ ହୋଇଥିବାରୁ ଏହା ଷୋଡ଼ଶ ଶତାବ୍ଦୀର ପ୍ରଥମ ପାଦର ରଚନା ବୋଲି କେତେକେ ମତ ପ୍ରଦାନ କରିଥାନ୍ତି । ଅନ୍ୟ କେତେକଙ୍କ ମତରେ ଏହା ଭୋଇବଂଶୀୟ ରାମଚନ୍ଦ୍ର ଦେବଙ୍କ କାଳର ରଚନା ।

## ୮ । ନିତ୍ୟଗୁପ୍ତମଣି—

ଏହା ସଂସ୍କୃତ ଭାଷାରେ ଲିଖିତ ଓ ଦିବାକର ମିଶ୍ରଙ୍କ ଦ୍ୱାରା ରଚିତ । 'ନିତ୍ୟଗୁପ୍ତମଣି'ର ଆଲୋଚନାରୁ ନିମ୍ନଲିଖିତ ଦୁଇଗୋଟି ବିଷୟର ସୂଚନା ମିଳିଥାଏ ।

(୧) ବଳରାମ ଦାସଙ୍କଠାରୁ ଜଗନ୍ନାଥ ଦାସଙ୍କ ଦୀକ୍ଷାଗ୍ରହଣ ।

(୨) ପ୍ରତାପରୁଦ୍ରଙ୍କ ରାଣୀ ଗୌରୀ ପାଟମହାଦେଈଙ୍କୁ ଦୀକ୍ଷା ପ୍ରଦାନ କରିବା ନିମିତ୍ତ ଚୈତନ୍ୟଙ୍କ ଆଦେଶରେ ଜଗନ୍ନାଥ ଦାସଙ୍କ ସ୍ତ୍ରୀରୂପ ପରିଗ୍ରହ । ଏ ଉଭୟ ବିଷୟ 'ଚୈତନ୍ୟ ଭାଗବତ' ଓ 'ଜଗନ୍ନାଥ ଚରିତାମୃତ'ରେ ବର୍ଣ୍ଣିତ ହୋଇଅଛି । ତେଣୁ ଜଗନ୍ନାଥ ଦାସଙ୍କ ଜୀବନୀ ଦୃଷ୍ଟିରୁ 'ନିତ୍ୟଗୁପ୍ତମଣି' କୌଣସି ନୂତନ ଆଲୋକର ସନ୍ଧାନ ଦିଏ ନାହିଁ ।

## ୯ । ଜଗନ୍ନାଥ ସୁଧାଗ୍ରନ୍ଥ—

ସଂସ୍କୃତ ଭାଷାରେ ରଚିତ ଓ ପୁରୀ ଓଡ଼ିଆ ମଠର ମହନ୍ତ ଶ୍ରୀ ବୃନ୍ଦାବନ ଦାସଙ୍କ ଦ୍ୱାରା ପ୍ରକାଶିତ ଏହି ପୁସ୍ତକଟି ସଂସ୍କୃତ ଷଟ୍‌ସନ୍ଦର୍ଭ ଇତ୍ୟାଦି ଗ୍ରନ୍ଥ-ସମୂହର ପ୍ରଣେତା ପ୍ରସିଦ୍ଧ ଗୌଡ଼ୀୟ ବୈଷ୍ଣବ ଶ୍ରୀମଦ୍‌ ଜୀବଗୋସ୍ୱାମୀଙ୍କର ରଚନା ବୋଲି ପ୍ରକାଶକ ମୁଖବନ୍ଧରେ ଉଲ୍ଲେଖ କରିଥିଲେ ହେଁ, ଏ ବିଷୟରେ କେତେକ ଐତିହାସିକ ଘୋର ସନ୍ଦିହାନ ।

ଏଥିରେ ଉଲ୍ଲେଖଅଛି ଯେ ଦିନେ ରାଜା ପ୍ରତାପରୁଦ୍ର ଜଗନ୍ନାଥ ଦର୍ଶନ ସାରି ଶ୍ରୀମନ୍ଦିରରୁ ପ୍ରତ୍ୟାବର୍ତ୍ତନ କରୁଥିବା ସମୟରେ ବଟମୂଳରେ ଅତିବଡ଼ି ସ୍ୱାମୀଙ୍କ ସହ ତାଙ୍କର ସାକ୍ଷାତ ହେଲା । ଭକ୍ତିବିନମ୍ର ଚିତ୍ତରେ ସେ ଜଗନ୍ନାଥ ଦାସଙ୍କ ଚରଣ ତଳେ ପ୍ରଣିପାତ କରିବା ସମୟରେ ତାଙ୍କର ଭାବାବେଶହେଲା ଏବଂ ସେ ଜଗନ୍ନାଥ ଦାସଙ୍କୁ ଅଷ୍ଟଭୁଜ ମୂର୍ତ୍ତି ଧାରଣ କରିଥିବା ଦେଖି ବିସ୍ମୟାଭିଭୂତ ହୋଇଗଲେ ।

"ଅଷ୍ଟବାହୁ ଜଗନ୍ନାଥ
ଦାସୋ ବଂଶୀଧନୁଃଶରାନ୍‌
ଶଙ୍ଖ ଚକ୍ର ଗଦା ପଦ୍ମ
ବିଭ୍ରତ୍ଛାମୋଽଭବତ୍ତଦା ॥"

ଚାରିଗୋଟି ହସ୍ତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ, ଦୁଇଗୋଟି ହସ୍ତରେ ଧନୁଶର ଏବଂ ଅପର ଦୁଇଗୋଟି ହସ୍ତରେ ବଂଶୀ ଧାରଣ ପୂର୍ବକ ଅଚିନ୍ତ୍ୟ ଶକ୍ତିସମ୍ପନ୍ନ ଶ୍ୟାମବିଗ୍ରହ ରୂପେ ଦଣ୍ଡାୟମାନ ଜଗନ୍ନାଥ ଦାସଙ୍କୁ ଦେଖି ରାଜା ବିସ୍ମିତ ହୋଇଥିଲେ । ଉପର୍ଯ୍ୟୁକ୍ତ ଘଟଣାଟି ଅତ୍ୟନ୍ତ ଅତିରଞ୍ଜିତ ଏବଂ ଭକ୍ତମାନଙ୍କ ମନଗଢ଼ା ବୋଲି ମନେହୁଏ । ଗୌଡ଼ୀୟ ବୈଷ୍ଣବଗଣଙ୍କ କଳ୍ପିତ ଷଡ଼ଭୁଜ ଚୈତନ୍ୟ ଅନୁକରଣରେ ଉତ୍କଳୀୟ ବୈଷ୍ଣବ ପରବର୍ତ୍ତୀ କାଳରେ ଜଗନ୍ନାଥ ଦାସଙ୍କର ଅଷ୍ଟଭୁଜ ମୂର୍ତ୍ତି କଳ୍ପନା କରିବା ଅସ୍ୱାଭାବିକ ନୁହେଁ ।

ତେଣୁ 'ଜଗନ୍ନାଥ ସୁଧାରସ' ବର୍ଣ୍ଣିତ ଉପର୍ଯ୍ୟୁକ୍ତ ଉପାଖ୍ୟାନର ପ୍ରସ୍ତୁତ ବିଷୟର ଆଲୋଚନାରେ କୌଣସି ଐତିହାସିକ ମୂଲ୍ୟ ନାହିଁ ।

**୧୦ । ବଙ୍ଗୀୟ ଚରିତ ଗ୍ରନ୍ଥ—**

ମହାପ୍ରଭୁ ଚୈତନ୍ୟଙ୍କ ଜୀବନର ଏକ ବୃହତ୍ ଓ ମହତ୍ତ୍ୱପୂର୍ଣ୍ଣ ଅଂଶ ଉତ୍କଳରେ ଅତିବାହିତ ହୋଇଥିଲା । ପୁଣ୍ୟଭୂମି ଉତ୍କଳକୁ ସେ ଆପଣା ସାଧନାର ତପୋଭୂମି ରୂପେ ବରଣ କରିନେଇ ସେଠାରେ ଦୀର୍ଘ ଅଠରବର୍ଷ-କାଳ ଅତିବାହିତ କରିଥିଲେ ଓ ଅବଶେଷରେ ଜୀବନର ଶେଷ ନିଃଶ୍ୱାସ ସେହିଠାରେ ତ୍ୟାଗ କରିଥିଲେ । ଚୈତନ୍ୟଙ୍କର ଉତ୍କଳ ଆଗମନ ଓ ନୀଳାଚଳରେ ଦୀର୍ଘକାଳ ଅବସ୍ଥାନ ଉତ୍କଳରେ ବୈଷ୍ଣବଧର୍ମର ପ୍ରବାହକୁ ଉଜ୍ଜ୍ୱଳ ଓ ପରିପ୍ରସାରିତ କରିଥିଲା । ତେଣୁ ପଞ୍ଚସଖା ସମେତ ବହୁ ଉତ୍କଳୀୟ ବୈଷ୍ଣବ ଚୈତନ୍ୟଙ୍କର ଘନିଷ୍ଠ ସମ୍ପର୍କରେ ଆସିଥିବା ଓ ତାହାଙ୍କର ନିତ୍ୟ-ଲୀଳା ପରିକର ରୂପେ ଗୃହୀତ ହୋଇଥିବା ଇତ୍ୟାଦି ଯାହା ପଞ୍ଚସଖା ଓ ଅନ୍ୟାନ୍ୟ ଉତ୍କଳୀୟ ବୈଷ୍ଣବମାନଙ୍କ ରଚନାରେ ବର୍ଣ୍ଣିତ ହୋଇଅଛି, ତାହା ଯେ ସତ୍ୟ ଓ ସ୍ୱାଭାବିକ ଏଥିରେ ସନ୍ଦେହର ଅବକାଶ ନାହିଁ ।

ବ୍ୟାସକବି ଫକୀରମୋହନଙ୍କ ମତରେ "ପ୍ରଭୁଙ୍କ ଶ୍ରୀକ୍ଷେତ୍ରଲୀଳା ମଧ୍ୟରେ ସାର୍ବଭୌମଙ୍କ ସହ ଶାସ୍ତ୍ରାର୍ଥ ବିଚାର ଏବଂ ଜଗନ୍ନାଥ ଦାସଙ୍କ ସହିତ ସମ୍ମିଳନ ଏହି ଦୁଇଗୋଟି ପ୍ରଧାନ ଘଟଣା ।" କିନ୍ତୁ ଘୋର ପରିତାପର ବିଷୟ ଯେ, ବଙ୍ଗୀୟ ଚୈତନ୍ୟଚରିତ ଗ୍ରନ୍ଥସମୂହରେ ଜଗନ୍ନାଥ ଦାସ ସମେତ ପଞ୍ଚସଖାଙ୍କର ନାମୋଲ୍ଲେଖ ପର୍ଯ୍ୟନ୍ତ ପରିଦୃଷ୍ଟ ହୁଏନାହିଁ । ବଙ୍ଗୀୟ ଚୈତନ୍ୟଚରିତ ଗ୍ରନ୍ଥସମୂହରେ ଚୈତନ୍ୟଙ୍କ ଶ୍ରୀକ୍ଷେତ୍ର ଅବସ୍ଥାନ କାଳର ପ୍ରିୟସଖା ରାୟ ରାମାନନ୍ଦଙ୍କ ପ୍ରସଙ୍ଗ ବିଶଦଭାବରେ ବର୍ଣ୍ଣିତ ହୋଇଅଛି ଏବଂ ସ୍ଥଳବିଶେଷରେ ମାଧବୀ ଦାସୀ, ଶିଖି ମହାନ୍ତି, କାଶୀ ମିଶ୍ର, କୃଷ୍ଣ ଦାସ, ଓଡ଼ିଆ ହରି ଦାସ, ଜନାର୍ଦ୍ଦନ ଦାସ, ପ୍ରଦ୍ୟୁମ୍ନ ମିଶ୍ର, ତୁଳସୀ ପରିଚ୍ଛା, ଜଗନ୍ନାଥ ମହାନ୍ତି ଓ କାହ୍ନୁ ଝୁଣ୍ଟିଆ ଆଦି ଗୌଡ଼ୀୟ ବୈଷ୍ଣବମାନଙ୍କର ନାମୋଲ୍ଲେଖ ସହିତ ଗଜପତି ପ୍ରତାପରୁଦ୍ରଙ୍କ ପ୍ରସଙ୍ଗ ଲିପିବଦ୍ଧ ହୋଇଅଛି ।

ପଞ୍ଚସଖାଙ୍କ ସମ୍ବନ୍ଧରେ ଗୌଡ଼ୀୟ ବୈଷ୍ଣବ ଗ୍ରନ୍ଥକାରମାନଙ୍କର ଏ ନୀରବତା ଯେପର ରହସ୍ୟାଚ୍ଛନ୍ନ, ସେହିପରି କୌତୂହଳୋଦ୍ଦୀପକ । ଏହାର କାରଣ ହୁଏତ ଏହା ହୋଇପାରେ ଯେ, ଅନ୍ୟାନ୍ୟ ଗୌଡ଼ୀୟ ବୈଷ୍ଣବମାନଙ୍କ ସଦୃଶ ପଞ୍ଚସଖା ଉତ୍କଳର ଧର୍ମ ଓ ଦର୍ଶନର ପରଂପର୍ରେ ଜଳାଞ୍ଜଳି ଦେଇ ଗୌଡ଼ୀୟ ଗୋଷ୍ଠୀ ସହିତ ନିଜକୁ ସମ୍ପୂର୍ଣ୍ଣଭାବରେ ମିଶାଇ ଦେଇ ପାରିନଥିଲେ ଏବଂ ନିଜର ବୈଶିଷ୍ଟ୍ୟ ବଜାୟ ରଖିବାକୁ ଶ୍ରେୟସ୍କର ମଣିଥିଲେ । ତେଣୁ ଗୌଡ଼ୀୟ ବୈଷ୍ଣବ ଗ୍ରନ୍ଥକାରଗଣ ସଂକୀର୍ଣ୍ଣ ସାଂପ୍ରଦାୟିକ ଧର୍ମଭାବ ଦ୍ୱାର୍ ଚାଳିତ ହୋଇ ପଞ୍ଚସଖା ଓ ଅନ୍ୟାନ୍ୟ ଉତ୍କଳୀୟ ବୈଷ୍ଣବମାନଙ୍କୁ ସମ୍ପୂର୍ଣ୍ଣ ଉପେକ୍ଷା କରିଥିବା ଉଚିତ ମନେକରିଅଛନ୍ତି । ମାଧବ ପଟ୍ଟନାୟକଙ୍କ ରଚିତ ଓଡ଼ିଆ 'ଚୈତନ୍ୟ ବିଳାସ' ଗ୍ରନ୍ଥରେ ପଞ୍ଚସଖାଙ୍କ ବିଷୟ ଉଲ୍ଲେଖ ନ ଥିବା ଏହାର ଏକ ପ୍ରମାଣ ।

**୧୧ । ବଙ୍ଗୀୟ ବୈଷ୍ଣବବନ୍ଦନା ଗ୍ରନ୍ଥ—**

ଷୋଡ଼ଶ ଶତାବ୍ଦୀର ବଙ୍ଗୀୟ ବୈଷ୍ଣବ-କବି ଦେବକୀନନ୍ଦନ ନିଜର ବୈଷ୍ଣବ ବନ୍ଦନା ଗ୍ରନ୍ଥରେ ଜଗନ୍ନାଥ ଦାସଙ୍କର ବନ୍ଦନା କରିଅଛନ୍ତି । ବଙ୍ଗ-ସାହିତ୍ୟରେ ମିଳୁଥିବା ପ୍ରାଚୀନତମ ବୈଷ୍ଣବବନ୍ଦନାମାନଙ୍କ ମଧ୍ୟରେ ଏହା ଅନ୍ୟତମ । ଏହାଙ୍କ ବୈଷ୍ଣବ ବନ୍ଦନା ଗ୍ରନ୍ଥରେ ରାଜା ପ୍ରତାପରୁଦ୍ର, ଓଡ଼ିଆ ବିପ୍ରଦାସ ଓ କହ୍ନାଇ ଖୁଣ୍ଟିଆ ଆଦି ଭକ୍ତମାନଙ୍କ ସହିତ ବଳରାମ ଦାସ ଓ ଜଗନ୍ନାଥ ଦାସଙ୍କ ବନ୍ଦନା ପ୍ରଦତ୍ତ ହୋଇଅଛି । ଜଗନ୍ନାଥ ଦାସଙ୍କ ସମ୍ବନ୍ଧରେ ସେ ଲେଖିଛନ୍ତି—

"ଜଗନ୍ନାଥ ଦାସ ବନ୍ଦ ସଙ୍ଗୀତ ପଣ୍ଡିତ,
ଯାର ଗାନ ରସେ ଜଗନ୍ନାଥ ବିମୋହିତ ।"

ଜୟକୃଷ୍ଣ ଦାସ ତାଙ୍କର ବୈଷ୍ଣବବନ୍ଦନା ଗ୍ରନ୍ଥରେ ଓଡ଼ିଆ ବଳରାମ ଦାସଙ୍କ ନାମୋଲ୍ଲେଖ କରିଅଛନ୍ତି । ଶ୍ରୀମଦ୍ ଜୀବଗୋସ୍ୱାମୀ ତାହାଙ୍କ ବୈଷ୍ଣବ-ବନ୍ଦନାରେ ନିମ୍ନଲିଖିତ ପ୍ରକାରେ ଜଗନ୍ନାଥ ଦାସଙ୍କ ବନ୍ଦନା କରିଅଛନ୍ତି—

"ବନ୍ଦେହଂ ଜଗନ୍ନାଥଂ
ଯଦ୍ ଗାନାତ୍ ତରବୋଽପ୍ୟୁଦନ୍ ବିବଶାଇବ ।"

ଉପର୍ଯ୍ୟୁକ୍ତ ଦୃଷ୍ଟାନ୍ତ ସମୂହରୁ ପଞ୍ଚସଖାଙ୍କ ମଧ୍ୟରେ ଜଗନ୍ନାଥ ଦାସଙ୍କ ଶ୍ରେଷ୍ଠତ୍ୱ ଓ ଉତ୍କଳ ବାହାରେ ତାଙ୍କର ଖ୍ୟାତି ସୂଚିତ ହୁଏ ।

୧୨ । ପରବର୍ତ୍ତୀ ଆଲୋଚକଗଣ—

ଆଧୁନିକ ଯୁଗରେ ବହୁ ଆଲୋଚକ ଜଗନ୍ନାଥ ଦାସଙ୍କ ସମ୍ବନ୍ଧରେ ଅଳ୍ପ-ବହୁତ ଆଲୋଚନା କରିଅଛନ୍ତି । ସେମାନଙ୍କ ମଧ୍ୟରେ ନିମ୍ନଲିଖିତ ବ୍ୟକ୍ତିମାନଙ୍କ ନାମ ଉଲ୍ଲେଖଯୋଗ୍ୟ ।

୧—୧୮୯୭-୯୮ରେ ଏସିଆଟିକ୍ ସୋସାଇଟି ପତ୍ରିକାରେ ପ୍ରକାଶିତ ମନମୋହନ ଚକ୍ରବର୍ତ୍ତୀଙ୍କ ପ୍ରବନ୍ଧ ।

୨—୧୯୧୨ରେ ପ୍ରକାଶିତ ତାରଣୀଚରଣ ରଥଙ୍କ ଦ୍ୱାରା ପ୍ରଣୀତ 'ଓଡ଼ିଆ ସାହିତ୍ୟର ଇତିହାସ' ଅନ୍ତର୍ଭୁକ୍ତ ଜଗନ୍ନାଥ ଦାସ ପ୍ରବନ୍ଧ ।

୩—୧୯୨୩ରେ ପ୍ରକାଶିତ ବିଜୟଚନ୍ଦ୍ର ମଜୁମଦାରଙ୍କଦ୍ୱାରା ସମ୍ପାଦିତ 'Typical selections from Oriya literature' ପ୍ରଥମ ଖଣ୍ଡର ମୁଖବନ୍ଧ ।

୪—୧୯୨୧ରେ ପ୍ରକାଶିତ ଅପନ୍ନା ପଣ୍ଡାଙ୍କର 'ଗ୍ରନ୍ଥଚନ୍ଦ୍ରିକା ।'

୫—୧୯୨୫ ଆଶ୍ୱିନ ୧୧, ସପ୍ତମ ଭାଗ, ଷଷ୍ଠ ସଂଖ୍ୟା, ଉତ୍କଳ ସାହିତ୍ୟରେ ପ୍ରକାଶିତ ମଧୁସୂଦନ ଦାସଙ୍କ ଓଡ଼ିଆ ଭାଷା ଓ ପ୍ରାଚୀନ ସାହିତ୍ୟ ଶୀର୍ଷକ ପ୍ରବନ୍ଧ ।

୬—ଶ୍ୟାମସୁନ୍ଦର ରାଜଗୁରୁଙ୍କ ପ୍ରଣୀତ 'ପ୍ରବନ୍ଧାବଳୀ' ।

୭—ଉତ୍କଳ ସାହିତ୍ୟରେ ପ୍ରକାଶିତ ମୃତ୍ୟୁଞ୍ଜୟ ରଥଙ୍କ ପ୍ରବନ୍ଧାବଳୀ ।

୮—'ସତ୍ୟବାଦୀ' ପଞ୍ଚମଖଣ୍ଡ, ୧୧ଶ, ୧୨ଶ ସଂଖ୍ୟା, ୧୩୨୨-୨୬ ସାଲରେ ପ୍ରକାଶିତ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଲିଖିତ ଜଗନ୍ନାଥ ଦାସ ଓ ଓଡ଼ିଆ ଭାଗବତ ଶୀର୍ଷକ ପ୍ରବନ୍ଧ ।

୯—ଫକୀରମୋହନଙ୍କ 'ଶ୍ରୀକ୍ଷେତ୍ରରେ ଚୈତନ୍ୟ ମହାପ୍ରଭୁ' ଶୀର୍ଷକ ପ୍ରବନ୍ଧ ।

୧୦—ବ୍ରଜକିଶୋର ଦାଶଙ୍କ ଦ୍ୱାରା ସମ୍ପାଦିତ ଓଡ଼ିଆ ଭାଗବତର ମୁଖବନ୍ଧ ।

୧୧—୧୯୨୧ରେ ପ୍ରକାଶିତ ମହାମହୋପାଧ୍ୟାୟ ପଣ୍ଡିତ ସଦାଶିବ ମିଶ୍ରଙ୍କ ରଚିତ 'ଅତିବଡ଼ୀ ଶ୍ରୀଜଗନ୍ନାଥ ଦାସ ଗୋସ୍ୱାମୀ ।'

୧୨—୧୯୨୮ରେ ପ୍ରଥମବାର ପ୍ରକାଶିତ ପଣ୍ଡିତ ବିନାୟକ ମିଶ୍ରଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ବର୍ଣ୍ଣିତ ଜଗନ୍ନାଥ ଦାସ ଶୀର୍ଷକ ପ୍ରବନ୍ଧ ।

୧୩—୧୯୨୯ରେ ପ୍ରକାଶିତ ଜଗବନ୍ଧୁ ସିଂହଙ୍କ 'ପ୍ରାଚୀନ ଉତ୍କଳ'ର ଓଡ଼ିଆ ଭାଷା ଓ ସାହିତ୍ୟର ଆଲୋଚନା ।

୧୪—୧୯୪୧ରେ ପ୍ରକାଶିତ ରାୟବାହାଦୁର ଚନ୍ଦ୍ରମଣି ଆଚାର୍ଯ୍ୟଙ୍କ ଦ୍ୱାରା ପ୍ରଣୀତ 'ଭକ୍ତକବି ଜଗନ୍ନାଥ ଦାସ ।'

୧୫—୧୯୪୫ରେ ପ୍ରକାଶିତ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ପ୍ରଥମଖଣ୍ଡରେ ପ୍ରଦତ୍ତ ଜଗନ୍ନାଥ ଦାସ ଶୀର୍ଷକ ଆଲୋଚନା ।

୧୬—ଶ୍ରୀ ପ୍ରଭାତ ମୁଖାର୍ଜିଙ୍କ ରଚିତ ଇଂରାଜୀ "History of Medieval Vaishnavism in Orissa"ବର୍ଣ୍ଣିତ "The Vaishnava writers of the medieval school of Vaishnavism in Orissa" ଶୀର୍ଷକ ପ୍ରବନ୍ଧ ।

୧୭—ଡକ୍ଟର ମାୟାଧର ମାନସିଂହଙ୍କ ଲିଖିତ 'ଜଗନ୍ନାଥ ଦାସ' ପ୍ରବନ୍ଧ ।

୧୮—ବିମାନ ବିହାରୀ ମଜୁମଦାରଙ୍କ ରଚିତ 'ଚୈତନ୍ୟ ଚରିତେର ଉପାଦାନ' ବର୍ଣ୍ଣିତ 'ଚୈତନ୍ୟଙ୍କ ଉତ୍କଳୀୟ ଭକ୍ତବୃନ୍ଦ' ଶୀର୍ଷକ ପ୍ରବନ୍ଧ ।

୧୯—ପଣ୍ଡିତ ନୀଳକଣ୍ଠ ଦାସଙ୍କ ରଚିତ 'ଓଡ଼ିଆ ସାହିତ୍ୟର କ୍ରମପରିଣାମ' ପ୍ରଥମ ଓ ଦ୍ୱିତୀୟଖଣ୍ଡରେ ବର୍ଣ୍ଣିତ ପଞ୍ଚସଖା ସାହିତ୍ୟ ସମ୍ବନ୍ଧୀୟ ଆଲୋଚନା ।

୨୦—ଶ୍ରୀ ନରେନ୍ଦ୍ର ନାଥ ମିଶ୍ରଙ୍କ ରଚିତ ବଳରାମ ଦାସଙ୍କ ରାମାୟଣ ।

୨୧—'ଜଗନ୍ନାଥ ପରିକ୍ରମା' ଶ୍ରୀ ବ୍ରଜମୋହନ ମହାନ୍ତି ।

୨୨—ଚିତ୍ତରଞ୍ଜନ ଦାସଙ୍କ ଲିଖିତ 'ଅଚ୍ୟୁତାନନ୍ଦ ଓ ପଞ୍ଚସଖା ।'

୨୩—ଡକ୍ଟର ହରେକୃଷ୍ଣ ମହତାବଙ୍କ 'ଓଡ଼ିଶା ଇତିହାସ' ବର୍ଣ୍ଣିତ ଓଡ଼ିଆ ସାହିତ୍ୟ ସମ୍ବନ୍ଧୀୟ ଆଲୋଚନା ।

ଉପର୍ଯ୍ୟୁକ୍ତ ଆଲୋଚକଗଣ ଦିବାକର ଦାସଙ୍କ ରଚିତ 'ଜଗନ୍ନାଥ ଚରିତାମୃତ'କୁ ସେମାନଙ୍କ ଆଲୋଚନାର ପ୍ରଧାନ ଉପଜୀବ୍ୟ ରୂପେ ଗ୍ରହଣ କରିଅଛନ୍ତି । ସେଗୁଡ଼ିକରୁ ଜଗନ୍ନାଥ ଦାସଙ୍କ ଜୀବନ ସମ୍ବନ୍ଧରେ କୌଣସି ନୂତନ ଆଲୋକର ସନ୍ଧାନ ମିଳେନାହିଁ ।

## ଜନଶ୍ରୁତି ଓ କିମ୍ବଦନ୍ତୀ

ଜନଶ୍ରୁତି ଇତିହାସ ନୁହେଁ; କିନ୍ତୁ ଅନେକ ସମୟରେ ଜନଶ୍ରୁତିର ଅନ୍ତରାଳରେ ଗଭୀର ଐତିହାସିକ ସତ୍ୟ ଲୁକ୍‌କାୟିତ ଥିବାର ଦେଖାଯାଏ । ତେଣୁ ଜନଶ୍ରୁତି ବା କିମ୍ବଦନ୍ତୀ ଏକାନ୍ତ ଅବହେଳାର ବସ୍ତୁ ନୁହେଁ । ଜଗନ୍ନାଥ ଦାସଙ୍କ ସମ୍ବନ୍ଧରେ ଏକ ଜନଶ୍ରୁତି ଅଛି ଯେ, ତାହାଙ୍କ ପିତା-ମାତା ଅତ୍ୟନ୍ତ ଦରିଦ୍ର ଥିଲେ । ଏକଦା ତାଙ୍କର ପରମପୂଜନୀୟା ମାତା ପୁରାଣ ଶୁଣିବା ଅଭିପ୍ରାୟରେ ପୁରୀ ମନ୍ଦିରକୁ ଯାଇଥିଲେ; ମାତ୍ର ଉତ୍କଟ ଦରିଦ୍ରତା ଯୋଗୁ ଉପଯୁକ୍ତ ଦକ୍ଷିଣା ଦେଇନପାରିବାରୁ ପୁରାଣ ପଣ୍ଡା ପୁରାଣ ଶୁଣାଇବା ପାଇଁ ନାସ୍ତି କରିଦେଲେ । ବୃଦ୍ଧା ନୈରାଶ୍ୟଜର୍ଜରିତ ହୃଦୟରେ ଗୃହକୁ ଫେରିଆସି ନିଜ ହୃଦୟର ବେଦନା ପ୍ରାଣୋପମ ପୁତ୍ର ଜଗନ୍ନାଥଙ୍କୁ ଜଣାଇଲେ ଏବଂ ସଂସ୍କୃତ ଭାଗବତ ଓ ପୁରାଣାଦିର ଉତ୍କଳାନୁବାଦ କରିବା ପାଇଁ ତାହାଙ୍କୁ ଉପଦେଶ ଦେଲେ । ମାତୃଆଦେଶ ପାଳନ କରି ଜଗନ୍ନାଥ ସଂସ୍କୃତ ଶ୍ରୀମଦ୍‌ଭାଗବତକୁ ଭାଷା ଛନ୍ଦରେ ରଚନା କଲେ । ଏହି ଘଟଣା ସତ୍ୟ ଅବା ସମ୍ପୂର୍ଣ୍ଣ କପୋଳ-କଳ୍ପିତ ହୋଇପାରେ, କିନ୍ତୁ ସଂସ୍କୃତ ଶାସ୍ତ୍ର ଶିକ୍ଷାରୁ ବଞ୍ଚିତ କୋଟି କୋଟି ନରନାରୀଙ୍କର ଭାଗବତର ଅମୃତପଦାବଳୀ ପାଇଁ ଯେ ଆକୁଳ ଆକାଂକ୍ଷା, ସେ ତାହା ମର୍ମେ ମର୍ମେ ଅନୁଭବ କରିଥିଲେ ।

ତାହାହିଁ ଯେ ତାଙ୍କୁ ଓଡ଼ିଆ ଭାଗବତ ରଚନାରେ ପ୍ରବୃତ୍ତ କରିଥିବ, ଏଥିରେ ସନ୍ଦେହ ନାହିଁ । ତାହାଙ୍କ ସମ୍ବନ୍ଧରେ ଏହିପରି ଅନ୍ୟାନ୍ୟ କେତେକ ଜନଶ୍ରୁତି ମଧ୍ୟ ରହିଅଛି । କିନ୍ତୁ ଅଧିକ ବିଶ୍ୱାସଯୋଗ୍ୟ ପ୍ରମାଣ ନ ମିଳିବା ପର୍ଯ୍ୟନ୍ତ ସେଗୁଡ଼ିକ ଉପରେ କୌଣସି ଆସ୍ଥା ସ୍ଥାପନ କରାଯାଇନପାରେ ।

***

# ଦ୍ୱିତୀୟ ଅଧ୍ୟାୟ

## ଆଦ୍ୟଜୀବନ

ଜଗନ୍ନାଥ ଦାସ ପୁରୁଷୋତ୍ତମ କ୍ଷେତ୍ରର ପ୍ରାୟ ତିନିକୋଶ ଦୂରରେ ଅବସ୍ଥିତ କପିଳେଶ୍ୱରପୁର ନାମକ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଭଗବାନ ଦାସ ଓ ମାତାଙ୍କ ନାମ ପଦ୍ମାବତୀ । ଭଗବାନ ଦାସ କୌଶିକ ଗୋତ୍ରୀୟ ଦାସ ଉପାଧିଧାରୀ ବ୍ରାହ୍ମଣ ଥିଲେ । ସେ ଜଣେ ବିଶିଷ୍ଟ ସଂସ୍କୃତ ପଣ୍ଡିତ ଥିଲେ ଏବଂ ସଂସ୍କୃତ ଭାଷାରେ ରଚିତ ରାମାୟଣ, ମହାଭାରତ ଓ ଅଷ୍ଟାଦଶ ପୁରାଣାଦି ବ୍ୟାଖ୍ୟା କରି ଶ୍ରୋତାମାନଙ୍କୁ ଶୁଣାଇବା ତାଙ୍କର କାର୍ଯ୍ୟ ଥିଲା । ତାଙ୍କର ଏହି କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ଉତ୍କଳର ତତ୍କାଳୀନ ଗୁଣଗ୍ରାହୀ ରାଜା ପୁରୁଷୋତ୍ତମ ଦେବ ତାଙ୍କୁ ପୁରାଣପଣ୍ଡା ଉପାଧିରେ ଭୂଷିତ କରିଥିଲେ ।

ମହାତ୍ମା ଜଗନ୍ନାଥ ଦାସ ଭାଦ୍ରବମାସ ଶୁକ୍ଳପକ୍ଷ, ଅନୁରାଧା ନକ୍ଷତ୍ର, ବୁଧବାର ମଧ୍ୟାହ୍ନ କାଳରେ ଧରାଧାମରେ ଅବତୀର୍ଣ୍ଣ ହୋଇଥିଲେ । ଏକଥା ଦିବାକର ଦାସ ତାହାଙ୍କ ଜଗନ୍ନାଥ ଚରିତାମୃତ ଗ୍ରନ୍ଥରେ ଲେଖିଅଛନ୍ତି । ସେ କେଉଁ ସାଲରେ ଜନ୍ମଗ୍ରହଣ କରିଥିଲେ ତାହାର କୌଣସି ସୁସ୍ପଷ୍ଟ ନିଦର୍ଶନ ମିଳେନାହିଁ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ସାଦ୍ୟ ଭାଷାରେ ଲିଖିତ ଅଚ୍ୟୁତାନନ୍ଦଙ୍କ ଉଦୟ କାହାଣୀରେ ବର୍ଣ୍ଣିତ ପଞ୍ଚସଖାଙ୍କ ଜନ୍ମବିବରଣୀକୁ ଭିତ୍ତି କରି ୧୪୮୭ ଖ୍ରୀଷ୍ଟାବ୍ଦ ତାହାଙ୍କ ଜନ୍ମକାଳ ବୋଲି ନିର୍ଦ୍ଧାରଣ କରିଅଛନ୍ତି । 'ଜଗନ୍ନାଥ ଚରିତାମୃତ'ରେ ବର୍ଣ୍ଣିତ ହୋଇଅଛି ଯେ, ଚୈତନ୍ୟଙ୍କ ନୀଳାଚଳ ଆଗମନବେଳକୁ ଜଗନ୍ନାଥ ଦାସଙ୍କୁ ୧୮ ବର୍ଷ ବୟସ ହୋଇଥିଲା ।

"ଏମାନ ସାଧିଲେ ବିଶେଷ । ହେଲା ଅଷ୍ଟାଦଶ ବରଷ ॥"
ବଟ ଗଣେଶଙ୍କ ଅଗ୍ରତ । ରଚିଲେ ଭାଷା ଭାଗବତ ॥
(ଜ· ଚ·, ପ୍ରଥମ ଅଧ୍ୟାୟ)

ଶ୍ରୀଚୈତନ୍ୟ ୧୫୦୯ ଖ୍ରୀଷ୍ଟାବ୍ଦରେ ପୁରୁଷୋତ୍ତମକ୍ଷେତ୍ରରେ ପଦାର୍ପଣ କରିଥିଲେ । ତେଣୁ ଜଗନ୍ନାଥ ଦାସ ୧୪୯୦-୯୧ରେ ଜନ୍ମଗ୍ରହଣ କରିଥିବା ସୁନିଶ୍ଚିତ ।

ଜଗନ୍ନାଥ ଦାସ ଶ୍ରୀରାଧାଙ୍କର ଅବତାର ରୂପେ ଧରାଧାମରେ ଅବତୀର୍ଣ୍ଣ ହୋଇଥିଲେ ବୋଲି ଦିବାକର ଦାସ ତାହାଙ୍କ ଜଗନ୍ନାଥ ଚରିତାମୃତ ଗ୍ରନ୍ଥରେ ଉଲ୍ଲେଖ କରିଅଛନ୍ତି ।

"ସେ ଅତିବଡ଼ ଯେ ଗୋସାଇଁ । ତାଙ୍କ ଚରିତ ଦେବା କହି ॥
ଶ୍ରୀ ବୈକୁଣ୍ଠ ନିତ୍ୟସ୍ଥାନ । ଶ୍ରୀରାଧା କୃଷ୍ଣ ବିଦ୍ୟମାନ ॥
ଅଛନ୍ତି ଏକ ଭାବ ହୋଇ । ମନଚଞ୍ଚଳ କେବେ ନୋହି ॥
ରସ ଆନନ୍ଦେ ସୁଖେ ଥିଲେ । ସ୍ନେହରେ ମୁଖକୁ ଚାହିଁଲେ ॥
ଅମୃତ ପ୍ରାୟ ରାଧା ମୁଖ । ଦେଖି ପାଇଲେ କୃଷ୍ଣ ସୁଖ ॥
ସେ ହାସ୍ୟ ମଧୁର ଅମୃତ । ତହୁଁ ଚୈତନ୍ୟ ହେଲେ ଜାତ॥
ଏକତ୍ର ଭାବ ଯେଣୁ ହୋଇ । ରାଧା ହସିଲେ କୃଷ୍ଣେ ଚାହିଁ ॥
ସେ ହାସରୁ ଜନ୍ମିଲେ ତୁରିତ । ଯେ ଅତିବଡ଼ ଜଗନ୍ନାଥ ॥"
[ଜ: ଚ:]

ରାଧାଙ୍କ ହାସରୁ ଜଗନ୍ନାଥ ଦାସ ଜନ୍ମଲାଭ କରିଥିବା ବିଷୟ ଯାହା ଦିବାକର ଦାସ ତଦୀୟ ଜଗନ୍ନାଥଚରିତାମୃତରେ ବର୍ଣ୍ଣନା କରିଅଛନ୍ତି, ତାହାର ଯୁକ୍ତିଯୁକ୍ତତା ସମ୍ବନ୍ଧରେ ମନରେ ଘୋର ସଂଶୟ ଜାତ ହୁଏ । କାରଣ ଜଗନ୍ନାଥ ଦାସ ସ୍ୱରଚିତ ଭାଗବତରେ ରାଧାଙ୍କର ନାମୋଲ୍ଲେଖ ପର୍ଯ୍ୟନ୍ତ କରିନାହାନ୍ତି । ତୁଳାଭିଣା ଓ 'ଷୋଳଚଉପଦି' ଆଦି ଗ୍ରନ୍ଥରେ ରାଧାଙ୍କର ନାମୋଲ୍ଲେଖ ଦୃଷ୍ଟ ହେଲେ ହେଁ, ତାହା ସମ୍ପୂର୍ଣ୍ଣ ଭିନ୍ନ ଅର୍ଥରେ ପ୍ରଯୁକ୍ତ ହୋଇଅଛି । ଏଣୁ ଜଗନ୍ନାଥ ଦାସଙ୍କୁ ରାଧାଙ୍କର ଅବତାର ବୋଲି କହିବା କେତେଦୂର ସମୀଚୀନ ତାହା ବିଚାର୍ଯ୍ୟ । ଯେତେଦୂର ଅନୁମିତ ହୁଏ ପରବର୍ତ୍ତୀ

ଯୁଗରେ ତାହାଙ୍କର ଶିଷ୍ୟ ଓ ଅନୁଗାମିଗଣ ଜଗନ୍ନାଥ ଦାସଙ୍କ ମାହାତ୍ମ୍ୟ ପ୍ରଖ୍ୟାପନ ଉଦ୍ଦେଶ୍ୟରେ କାଳ୍ପନିକ ଉପାଖ୍ୟାନମାନ ମନରୁ ଗଢ଼ି ତାଙ୍କ ଚରିତ ସଙ୍ଗେ ଯୋଡ଼ିଦେଇଅଛନ୍ତି । ଏ ପ୍ରକାର କଳ୍ପନା ମୂଳରେ ନିମ୍ନ-ଲିଖିତ କେତେକ କାରଣ ବିଦ୍ୟମାନ ଥିବା ଅନୁମିତ ହୁଏ ।

୧ । ଭାଦ୍ର ଶୁକ୍ଳପକ୍ଷ ରାଧାଷ୍ଟମୀ ତିଥିରେ ଜଗନ୍ନାଥ ଦାସଙ୍କର ଜନ୍ମ ।

୨ । ତାହାଙ୍କର ଶୁଦ୍ଧସୁବର୍ଣ୍ଣ ସଦୃଶ ଅଙ୍ଗକାନ୍ତି ।

୩ । ତାହାଙ୍କର ପ୍ରେମଭକ୍ତି ।

ଯୋଗୀ ଓ ସାଧକ ଶିରୋମଣି ଜଗନ୍ନାଥ ଦାସ ଯେ ପ୍ରେମଭକ୍ତିର ପ୍ରଧାନ ଉପାସକ ଥିଲେ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

'ଜଗନ୍ନାଥଚରିତାମୃତ'ର ନିମ୍ନଲିଖିତ ଉକ୍ତିଚୟରୁ ଏହା ସ୍ପଷ୍ଟ ପ୍ରତିପାଦିତ ହୁଏ ।

"ଦ୍ୱାଦଶ ପ୍ରେମ ଏ ଜାଣଇ । ଏଡ଼େ ପ୍ରେମଖିଲୁକ ନାହିଁ ॥
ଏ ଅନ୍ତେ ଛତିଶ ବର୍ଷ । ପ୍ରେମ ସାଧିଲେ ଅହର୍ନିଶ ॥
ଷାଠି ବରଷ ଦେହାନ୍ତରେ । ପ୍ରେମ ସ୍ଥାପି ସ୍ୱର୍ଗେ ଗମିଲେ ॥
ରାଧାଙ୍କ ପ୍ରେମେ ଜରଜର । ଚଉଦ ବୁଡ଼ଇ ନିରନ୍ତର ॥"

[ଜ: ଚ:]

ସଂସ୍କୃତ ଲକ୍ଷଣ ଗ୍ରନ୍ଥମାନଙ୍କରେ ଗୁଣ, ସାମର୍ଥ୍ୟ ଓ ରୂପର ସାମଞ୍ଜସ୍ୟ ଥିବା ସ୍ଥଳରେ ଅବତାର ଶବ୍ଦର ପ୍ରୟୋଗ କରାଯାଇଥାଏ—ଯେପରି ଅମୁକ ବ୍ୟକ୍ତି ସାକ୍ଷାତ କାମଦେବ ଅଥବା ଅମୁକ କବି ସାକ୍ଷାତ ବ୍ୟାସଦେବ । ଶଙ୍କରଙ୍କୁ ଶିବଙ୍କର ଏବଂ ଭକ୍ତକବି ରାମଚରିତମାନସ ରଚୟିତା ତୁଳସୀ ଦାସଙ୍କୁ ବାଲ୍ମୀକିଙ୍କର ଅବତାର ରୂପେ କଳ୍ପନା କରାଯାଇଛି । ଗୌଡ଼ୀୟ ତଥା ଉତ୍କଳୀୟ ବୈଷ୍ଣବଗଣ ଶ୍ରୀଚୈତନ୍ୟଙ୍କୁ ଶ୍ରୀକୃଷ୍ଣଙ୍କର ଅବତାର ବୋଲି ପ୍ରମାଣିତ କରିବା ପାଇଁ ବହୁ ଆୟାସ ସ୍ୱୀକାର କରିଅଛନ୍ତି । ଏଣୁ ଜଗନ୍ନାଥ ଦାସଙ୍କ ଭକ୍ତିମତ୍ତା ସୂଚାଇବା ଉଦ୍ଦେଶ୍ୟରେ ତାହାଙ୍କୁ ପରିପୂର୍ଣ୍ଣ ପ୍ରେମ-ସ୍ୱରୂପିଣୀ ଶ୍ରୀରାଧାଙ୍କର ଅବତାରରୂପେ କଳ୍ପନା କରିବାରେ କୌଣସି ବୈଚିତ୍ର୍ୟ ନାହିଁ ।

## ବାଲ୍ୟ ଜୀବନ ଓ ବିଦ୍ୟାଶିକ୍ଷା

ତୁଳସୀ ଦୁଇପଦରୁ ବାରିବା ପରଠାରୁ ବାଲ୍ୟାବସ୍ଥାରୁ ଜଗନ୍ନାଥଙ୍କ ହୃଦୟରେ ଭଗବତ୍ଭକ୍ତିର ବୀଜ ଅଙ୍କୁରିତ ହୋଇଥିଲା । ବାଳକମାନଙ୍କ ସହିତ କ୍ରୀଡ଼ାରତ ଥିବା ସମୟରେ ସେ ହରେରାମକୃଷ୍ଣ ଉଚ୍ଚାରଣ କରୁଥିଲେ । ପାଞ୍ଚବର୍ଷ ବୟସରେ ତାଙ୍କର କର୍ଣ୍ଣବେଧ ଓ ବିଦ୍ୟାରମ୍ଭ ଏବଂ ଆଠବର୍ଷ ବୟସରେ ତାଙ୍କର ଉପନୟନ ଯଥାବିଧି ସମ୍ପନ୍ନ ହୋଇଥିଲା ବୋଲି ଯାହା ମହାମହୋପାଧ୍ୟାୟ ପଣ୍ଡିତ ସଦାଶିବ ମିଶ୍ର ଓ ରାୟବାହାଦୁର ଚନ୍ଦ୍ରମଣି ଆଚାର୍ଯ୍ୟ ସ୍ୱ ସ୍ୱ ଗ୍ରନ୍ଥମାନଙ୍କରେ ଉଲ୍ଲେଖ କରିଅଛନ୍ତି ତାହା ମୂଳଗ୍ରନ୍ଥ ଜଗନ୍ନାଥ ଚରିତାମୃତରେ ନାହିଁ । ବୋଧହୁଏ ପଣ୍ଡିତ ସଦାଶିବ ମିଶ୍ର ମୂଳଗ୍ରନ୍ଥ 'ଜଗନ୍ନାଥଚରିତାମୃତ'ରେ ବର୍ଣ୍ଣିତ 'କାଳେଣ' ଶବ୍ଦର ଅର୍ଥ ପ୍ରଚଳିତ ପରଂପରା ଓ ଶାସ୍ତ୍ରୀୟ ବିଧିବିଧାନ ପ୍ରତି ଲକ୍ଷ୍ୟ ରଖି ଏହିପରି ଭାବରେ ଗ୍ରହଣ କରିଅଛନ୍ତି ଏବଂ ଚନ୍ଦ୍ରମଣି ଆଚାର୍ଯ୍ୟ ତାଙ୍କ ମତର ପୁନରୁକ୍ତି ମାତ୍ର କରିଅଛନ୍ତି । ଜଗନ୍ନାଥ ଯେତେବେଳେ ଦ୍ୱାଦଶବର୍ଷ ବୟସରେ ପଦାର୍ପଣ କଲେ ସେତେବେଳେ ତତ୍କାଳୀନ ସାମାଜିକ ପରଂପରା ଅନୁଯାୟୀ ତାଙ୍କ ପିତା ତାଙ୍କୁ ବିଭାଦେବାପାଇଁ ନିଜର ଅଭିଳାଷ ପ୍ରକାଶ କଲେ । କିନ୍ତୁ ଭୌତିକ ସୁଖସମ୍ଭୋଗର ଆକର୍ଷଣ ତାଙ୍କ ମନକୁ ବାନ୍ଧି ରଖି ପାରିଲାନାହିଁ । ଏକ ମହତ୍ତର ଓ ବୃହତ୍ତର ଜୀବନର ସ୍ୱପ୍ନ ତାଙ୍କ ହୃଦୟକୁ ନିରନ୍ତର ଆଲୋଡ଼ିତ କରିବାକୁ ଲାଗିଲା । ସେ ପିତାଙ୍କ ପ୍ରସ୍ତାବରେ ଅସମ୍ମତି ପ୍ରକାଶ କଲେ ଏବଂ ଆପାତତଃ କେତେ କାଳ ପାଇଁ ନିଜକୁ କେବଳ ବିଦ୍ୟାଧ୍ୟୟନରେ ନିମଜ୍ଜିତ ରଖିବା ପାଇଁ ସଂକଳ୍ପବଦ୍ଧ ହେଲେ । ଜଗନ୍ନାଥ ଦାସ ଜଣେ ମେଧାବୀ ଛାତ୍ର ଥିଲେ ଏବଂ ନିଜର ଅସାଧାରଣ ଧୀଶକ୍ତି ବଳରେ ଅଳ୍ପ ବୟସରେ ବିବିଧଶାସ୍ତ୍ରରେ ପାରଦର୍ଶିତା ଲାଭକରିଥିଲେ । ପ୍ରଥମେ ସେ 'କଳାପ' ଓ 'ବର୍ଦ୍ଧମାନ' ନାମକ ଦୁଇଗୋଟି ବ୍ୟାକରଣ ପୁସ୍ତକ ଆୟତ୍ତକରି ବ୍ୟାକରଣ ଶାସ୍ତ୍ରରେ ବ୍ୟୁତ୍ପତ୍ତି ଲାଭକରିଥିଲେ । ପରେ ସେ ଯଜୁର୍ବେଦ, ସାମବେଦ, ବିଭିନ୍ନ ବେଦାଙ୍ଗ, ନ୍ୟାୟ, ବେଦାନ୍ତାଦି ଷଡ଼୍ଦର୍ଶନ ଏବଂ ରାମାୟଣ, ମହାଭାରତାଦି ଶାସ୍ତ୍ର ଅଧ୍ୟୟନ କରିଥିଲେ । ସର୍ବଶେଷରେ ସେ ବିବିଧ ଟୀକାଟିପ୍ପଣୀ ସହିତ

ଶ୍ରୀମଦ୍ଭାଗବତ ଗ୍ରନ୍ଥ ଅଧ୍ୟୟନ କରିଥିଲେ । ତାହାଙ୍କ ରଚିତ ଭାଗବତ ପାଠରୁ ଜଣାଯାଏ ଯେ ସେ ବିବିଧ ପୁରାଣ ମଧ୍ୟ ଅଧ୍ୟୟନ କରିଥିଲେ । ସେ କେଉଁଠାରେ ଅଧ୍ୟୟନ କରିଥିଲେ ଓ ତାଙ୍କର ଶିକ୍ଷାଗୁରୁ କିଏ, ସେ ସମସ୍ତ ଜାଣିବାର ଉପାୟ ନାହିଁ । ଯେତେଦୂର ଅନୁମିତ ହୁଏ, ସେ ସ୍ଥାନୀୟ ସଂସ୍କୃତ ଟୋଲରେ ଅଧ୍ୟୟନ କରିଥିବେ । ପରବର୍ତ୍ତୀକାଳରେ ସେ ସ୍ୱଚେଷ୍ଟାରେ ବହୁ ଗ୍ରନ୍ଥ ଅଧ୍ୟୟନ କରିଥିବା ମଧ୍ୟ ଅଧିକ ସମୀଚୀନ । ତାଙ୍କର ସଂସ୍କୃତ ରଚନାବଳୀରୁ ଜଣାଯାଏ ଯେ, ସଂସ୍କୃତ ଭାଷାରେ ତାଙ୍କର ଅଗାଧ ପ୍ରବେଶ ଥିଲା । ସେ ମାର୍କଣ୍ଡ ଦାସଙ୍କ 'କେଶବକୋଇଲି'ର ଆଧ୍ୟାତ୍ମିକ ବ୍ୟାଖ୍ୟା କରି 'ଅର୍ଥ କୋଇଲି' ନାମକ ଏକ ପୁସ୍ତିକା ରଚନା କରିଥିଲେ । ତାଙ୍କ ରଚିତ 'ଦାରୁବ୍ରହ୍ମଗୀତା'ରେ 'ସାରଳା ମହାଭାରତ'ର ପ୍ରଭାବ ଦୃଷ୍ଟ ହୁଏ । ତେଣୁ ଏହା ଅକ୍ଲେଶରେ ଅନୁମାନ କରାଯାଇପାରେ ଯେ ସେ 'ସାରଳା ମହାଭାରତ', 'କେଶବକୋଇଲି' ଓ ନିଜର ଦୀକ୍ଷାଗୁରୁ ବଳରାମ ଦାସଙ୍କ 'ଜଗମୋହନ ରାମାୟଣ' ଆଦି ଓଡ଼ିଆ ଭାଷାରେ ରଚିତ ଗ୍ରନ୍ଥ ଅଧ୍ୟୟନ କରିଥିବେ । 'ବୈଷ୍ଣବ ବନ୍ଦନା'ର ଲେଖକ ଦେବକୀନନ୍ଦ ଓ ଶ୍ରୀମତ୍ ଜୀବଗୋସ୍ୱାମୀ ଜଗନ୍ନାଥଙ୍କୁ ଜଣେ ସଙ୍ଗୀତଜ୍ଞରୂପେ ବର୍ଣ୍ଣନା କରିଅଛନ୍ତି । ଓଡ଼ିଆ ଭାଗବତ ରଚନା କରିବା-ନିମିତ୍ତ ସେ ଏକ ଅଭିନବ ଛନ୍ଦ ଆବିଷ୍କାର କରିଥିଲେ । ତାହା ଭାଗବତବୃତ୍ତି ନାମରେ ସୁପରିଚିତ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ ଭାବପ୍ରକାଶର ଏକ ଅନ୍ତର୍କିତ ଓ ଆକସ୍ମିକ ପ୍ରକାଶଭଙ୍ଗୀରୂପରେ ଏହା ହୁଏତ ଲୋକରେ ବିଦ୍ୟମାନ ଥିଲା । କିନ୍ତୁ ଜଗନ୍ନାଥ ଦାସ ଏହାକୁ ସ୍ୱରବିଜ୍ଞାନସମ୍ମତ ଏକ ସାର୍ବଜନୀନ ରୂପ ପ୍ରଦାନ କଲେ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ସଙ୍ଗୀତ ଶାସ୍ତ୍ରରେ ତାହାଙ୍କର ଗଭୀର ପ୍ରବେଶ ଥିଲା ।

ଅଠର ବର୍ଷ ବୟସ ବେଳକୁ ଜଗନ୍ନାଥ ଦାସ ସକଳ ଶାସ୍ତ୍ରରେ ପ୍ରବୀଣ ହୋଇଥିଲେ ଏବଂ ତାଙ୍କ ଯଶଃର ସୌରଭ ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ହୋଇ ଯାଇଥିଲା । ଈଶ୍ୱରାରାଧନା ଜଗନ୍ନାଥ ଦାସଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ ଥିଲା ଏବଂ ଏହି ଇଚ୍ଛାର ପରିପୂରଣ ନିମିତ୍ତ ୧୯ ବର୍ଷ ବୟସରେ ସେ ଗୃହତ୍ୟାଗୀ ହୋଇ ମର୍ତ୍ତ୍ୟବୈକୁଣ୍ଠ ପବିତ୍ର ପୁରୁଷୋତ୍ତମଧାମକୁ ଆଗମନ କଲେ ଏବଂ

ନୀଳାଚଳପତି ଜଗନ୍ନାଥଙ୍କ ସେବାରେ ଆପଣାକୁ ନିୟୋଜିତ କଲେ । ଜଗନ୍ନାଥ ଦାସ ତାହାଙ୍କ ପୁରୁଷୋତ୍ତମ ଆଗମନ ପୂର୍ବରୁ ବୈଷ୍ଣବଧର୍ମ ଗ୍ରହଣ କରିଥିବା ବିଷୟ ସ୍ୱର୍ଗୀୟ ଜଗବନ୍ଧୁ ସିଂହ ତାହାଙ୍କ ରଚିତ "ପ୍ରାଚୀନ ଉତ୍କଳ" ନାମକ ପୁସ୍ତକରେ ଉଲ୍ଲେଖ କରିଅଛନ୍ତି । କିନ୍ତୁ ଜଗନ୍ନାଥ ଦାସ ଚୈତନ୍ୟଙ୍କ ନିର୍ଦ୍ଦେଶରେ ମଧ୍ୱ ବଳରାମ ଦାସଙ୍କ ଠାରୁ ଦୀକ୍ଷା ଗ୍ରହଣ କରିଥିବା ସପକ୍ଷରେ ନିର୍ଦ୍ଦିଷ୍ଟ ପ୍ରମାଣ ଥିବା ଦୃଷ୍ଟିରୁ ଜଗବନ୍ଧୁ ସିଂହଙ୍କର ଏ ମତ ଗ୍ରହଣୀୟ ହୋଇ ନ ପାରେ । (୧)

**ଭାଗବତ ରଚନା**—କପିଳେନ୍ଦ୍ର ଦେବ ତାଙ୍କ ରାଜତ୍ୱରେ ଜଗନ୍ନାଥ ମନ୍ଦିରରେ ନିତ୍ୟ ଭାଗବତ ପାଠର ବ୍ୟବସ୍ଥା କରିଥିଲେ ଏବଂ ନିଜର ପ୍ରତିଷ୍ଠିତ ଶାସନ କପିଳେଶ୍ୱରପୁରର ନରୋତ୍ତମ ଦାସଙ୍କୁ ଶ୍ରୀମନ୍ଦିରରେ ନିତ୍ୟ ଭାଗବତ ପାଠ ନିମିତ୍ତ ନିୟୋଜିତ କରିଥିଲେ । ସେହିଦିନଠାରୁ ଜଗନ୍ନାଥ ମନ୍ଦିରରେ ପୁରାଣପାଠ ଦାସବଂଶର କୌଳିକ ବୃତ୍ତିରୂପେ ଗୃହୀତ ହେଲା । ଏହି ବଂଶର ଚତୁର୍ଥ ପୁରୁଷ ହେଉଛନ୍ତି ଜଗନ୍ନାଥଙ୍କ ପିତା ଭଗବାନ ଦାସ । ପିତାଙ୍କର ଦେହାବସାନ ଅନ୍ତେ ଜଗନ୍ନାଥ ଦାସ ସ୍ୱପୈତୃକ ବୃତ୍ତିରେ ନିଯୁକ୍ତ ହେଲେ । ଶ୍ରୀମନ୍ଦିରର ଦକ୍ଷିଣପାର୍ଶ୍ୱରେ ଅବସ୍ଥିତ ବଟଗଣେଶଙ୍କ ନିକଟରେ ଭାଗବତ ପାଠ ତାଙ୍କର ପ୍ରାତ୍ୟହିକ କର୍ମ ଥିଲା । ସେକାଳରେ ସୁଧୀ-ଶିଷ୍ଟ ସମାଜର ଭାଷା ଥିଲା ସଂସ୍କୃତ । ତେଣୁ ଭାଗବତ ତଥା ଅନ୍ୟାନ୍ୟ ପୁରାଣ ପାଠ ସଂସ୍କୃତରେ ହିଁ ହେଉଥିଲା । ସଂସ୍କୃତରେ ଭାଗବତ ପାଠର ଏହି ଧାରା ଜଗନ୍ନାଥଙ୍କ ପିତା ଭଗବାନ ଦାସଙ୍କ ପର୍ଯ୍ୟନ୍ତ ପ୍ରଚଳିତ ଥିଲା । ଜଗନ୍ନାଥ ଦାସ ପ୍ରଥମେ ଏହି ପରଂପରା ଭଙ୍ଗକରି ସଂସ୍କୃତ ଭାଗବତକୁ ସରଳ ଓ ପ୍ରାଞ୍ଜଳ ଓଡ଼ିଆରେ ଅନୁବାଦ କରି ଲୋକଙ୍କୁ ଶୁଣାଇଲେ ।

"ବଟ ଗଣେଶଙ୍କ ଅଗ୍ରତ । ରଚିଲେ ଭାଷା ଭାଗବତ ॥
ପଢ଼ୁଣିଆନ୍ତି ସୁଖ ପାଇ । ଗଣେଶ ଦେଉଥାନ୍ତି କହି ॥"
[ଜ.ଚ., ପ୍ରଥମ ଅଧ୍ୟାୟ]

---

(୧) ଓଡ଼ିଆ ସାହିତ୍ୟର କ୍ରମପରିଣାମ—ପୃଷ୍ଠା ୨୧୭, ପ୍ରଥମ ସଂସ୍କରଣ ।

ଜଗନ୍ନାଥ ଦାସ କାହିଁକ ପ୍ରତିଷ୍ଠିତ ପରଂପରାର ପ୍ରତିକୂଳତା ଆଚରଣ ପୂର୍ବକ ଓଡ଼ିଆରେ ଭାଗବତ ରଚନା କରିବା ପାଇଁ ମନବଳାଇଲେ ସେ ସମ୍ବନ୍ଧରେ ବିଭିନ୍ନ ପୁସ୍ତକରେ ବିବିଧ ଜନଶ୍ରୁତିର ଉଲ୍ଲେଖ ଦୃଷ୍ଟହୁଏ । ଏକ ଜନଶ୍ରୁତି ଅନୁଯାୟୀ ଜଗନ୍ନାଥ ଦାସଙ୍କ ବୃଦ୍ଧା ନିରକ୍ଷରା ଧର୍ମପ୍ରାଣାଜନନୀ କୃଷ୍ଣଚରିତ ଶୁଣିବା ପାଇଁ ଏକାନ୍ତ ଇଚ୍ଛା ପୋଷଣ କରନ୍ତେ ମାତୃବତ୍ସଳ ଜଗନ୍ନାଥ ଜନନୀଙ୍କର ଶେଷଜୀବନର ଅଭିଳାଷ ପୂରଣ ନିମିତ୍ତ ସଂସ୍କୃତ ଭାଗବତକୁ ଅଧ୍ୟାୟ ଅଧ୍ୟାୟ କରି ଓଡ଼ିଆରେ ଅନୁବାଦ କରି ତାହାଙ୍କୁ ଶୁଣାଇବାକୁ ଲାଗିଲେ । (୧) ରାମଦାସଙ୍କ 'ଦାର୍ଢ୍ୟତା ଭକ୍ତି ରସାମୃତ'ରେ ଲିଖିତ ଅଛି ଯେ, ସ୍ୱୟଂ ନୀଳାଚଳପତି ଜଗନ୍ନାଥଙ୍କ ନିର୍ଦ୍ଦେଶକ୍ରମେ ଜଗନ୍ନାଥ ଦାସ ଶ୍ରୀମଦ୍‌ଭାଗବତକୁ ଓଡ଼ିଆରେ ଅନୁବାଦ କରିଥିଲେ ।

''ସେ ମହାପୁରାଣ ଚରିତ । ପ୍ରାକୃତବନ୍ଧେ କଲେ ଗୀତ ॥
ତୁ ନିଷ୍ଟେ ପବିତ୍ର ହୋଇବୁ । ଅଶେଷ ପ୍ରାଣୀକି ତାରିବୁ ॥
ଶ୍ରୀ ଭାଗବତ ଶୁଣି କର୍ଣ୍ଣେ । ପବିତ୍ର ହେବେ ପ୍ରାଣୀମାନେ ॥
ଏମନ୍ତ ଦାସେ ଆଜ୍ଞା ପାଇ । ସ୍ୱପନେ ପ୍ରଭୁଙ୍କୁ ଜଣାଇ ॥''
[ଦା:ଭ:ର.—ପଞ୍ଚଦଶ ଅଧ୍ୟାୟ ]

ଈଶ୍ୱର ଦାସଙ୍କ ଚୈତନ୍ୟ ଭାଗବତରେ ଏହା କିଞ୍ଚିତ୍ ଭିନ୍ନଭାବରେ ବର୍ଣ୍ଣିତ ହୋଇଅଛି ।

''ଜଗନ୍ନାଥଙ୍କ ମୁଖ ଚାହିଁ । କହନ୍ତି ଚୈତନ୍ୟ ଗୋସାଇଁ ॥
ପଞ୍ଚସଖାଙ୍କୁ ଆଜ୍ଞା କରି । ପୁରାଣ ଯେତେ ଗ୍ରନ୍ଥ ସାରି ॥
ନ ଜାଣି ପ୍ରାଣୀ ପଶୁଜନ । ପାପରେ ହୋଇଲେ ଦହନ ॥
ପଞ୍ଚସଖାଏ ଅବତାର । ମୋହର ଅଂଶରୁ ବାହାର ॥
ପୁରାଣ ଗୀତ ରସ କରି । ଗାଇବେ ମୁଖେ ରାମହରି ॥

---

(୧) ଓଡ଼ିଆ ସାହିତ୍ୟର ଇତିହାସ—ଡକ୍ଟର ମାୟାଧର ମାନସିଂହ, —୧୫୪ ପୃ: ।

ଲେଖିବେ ମୋହର ଚରିତ । ଶୁଣିଣ ପ୍ରାଣୀ ହେବେ ମୁକ୍ତ ॥
ପୁରାଣ ଗୀତ ରସସାର । ଲେଖ ଶ୍ରୀମୁଖେ ଆଜ୍ଞାକର ॥"

[ଚୈ. ଭା. ୪୮ ଅଧ୍ୟାୟ—୧୫୭-୧୭୦ ପଦ]

ଉପରୋକ୍ତ ଭକ୍ତ ସମୂହର ପୁରାଣଧର୍ମୀ ଅଲୌକିକତାର ଅନ୍ତରାଳରେ ଯେଉଁ ପ୍ରକୃତ ସତ୍ୟ ନିହିତ ତାହାହିଁ ଜଗନ୍ନାଥ ଦାସଙ୍କ ଭାଗବତ ରଚନାର ପ୍ରଧାନ କାରଣ । ତାହା ହେଉଛି, ସଂସ୍କୃତାନଭିଜ୍ଞ କୋଟି କୋଟି ନରନାରୀଙ୍କର ଆଧ୍ୟାତ୍ମିକ କ୍ଷୁଧାର ନିବାରଣ ଓ ସତ୍ୟଧର୍ମର ପ୍ରଚାର । ଜଗନ୍ନାଥ ଚରିତାମୃତକାର ଦିବାକର ଦାସଙ୍କ ଉକ୍ତି ଅନୁଯାୟୀ ଜଗନ୍ନାଥ ଦାସ ତାହାଙ୍କ ଅଷ୍ଟାଦଶ ବର୍ଷ ବୟସରେ ଭାଗବତ ରଚନା କରିଥିଲେ ଏବଂ ଚୈତନ୍ୟଙ୍କ ସହିତ ସାକ୍ଷାତ ସମୟରେ ସେ ଦଶମସ୍କନ୍ଧର ଶ୍ରୀକୃଷ୍ଣସ୍ତୁତି ବିଷୟକ ନିମ୍ନଲିଖିତ ଶ୍ଳୋକଟିର ଓଡ଼ିଆ ଅନୁବାଦ ଆବୃତ୍ତି କରି ଲୋକମାନଙ୍କୁ ଶୁଣାଉଥିଲେ ।

"ଶ୍ରେୟଃ ଶ୍ରୁତିଂ ଭକ୍ତିମୁଦସ୍ୟତେ ବିଭୋ,
କ୍ଲିଶ୍ୟନ୍ତି ଯେ କେବଳ ବୋଧ ଲବ୍ଧୟେ ।
ତେଷାମସୌ କ୍ଲେଶଳ ଏବ ଶିଷ୍ୟତେ
ନାନ୍ୟଦ୍ ଯଥା ସ୍ଥୂଳ ତୁଷାବଘାତିନାମ୍ ॥

ଯେ କୃଷ୍ଣ ଆଗ୍ରେ ପ୍ରତେଜନ୍ତି । ବେଦ ବଚନରେ ମଜ୍ଜନ୍ତି ॥
ତାଙ୍କର କ୍ଲେଶହିଁ କେବଳ । କେବେହେଁ ନ ଲଭନ୍ତି ଫଳ ॥
ତଣ୍ଡୁଳ ଆଶେ ଚଷ୍ଟୁକୁଟି । କେବଳ ପରିଶ୍ରମେ ଫୁଟି ॥"

ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଶ୍ରୀଚୈତନ୍ୟଙ୍କ ନୀଳାଚଳ ଆଗମନ କାଳ ଅର୍ଥାତ ପ୍ରାୟ ୧୫୧୦ ଖ୍ରୀଷ୍ଟାବ୍ଦ ସୁଦ୍ଧା ଭାଗବତର ରଚନା ପ୍ରାୟ ସମାପ୍ତ ହୋଇସାରିଥିଲା । କେତେକ ଆଲୋଚକ ଏଥିରେ ସନ୍ଦେହ ପ୍ରକାଶ କରିବାର ଦେଖାଯାଏ । ସେମାନଙ୍କ ମତରେ ଭାଗବତରେ ଯେଉଁ ବିଦ୍ୱତ୍ତା, କାବ୍ୟୋତ୍କର୍ଷ ଓ ରଚନା ସୌଷ୍ଠବ ଦୃଷ୍ଟହୁଏ, ଅଷ୍ଟାଦଶ ବୟସ୍କ ଜଣେ ତରୁଣ ପକ୍ଷରେ ତାହା ସମ୍ଭବପର ନୁହେଁ । ତେଣୁ ଏହା ଜଗନ୍ନାଥ

ଦାସଙ୍କ ପ୍ରାରମ୍ଭିକ ରଚନା ନ ହୋଇ ପରିଣତ ବୟସର କୃତ ହୋଇଥିବା ଅଧିକ ଯୁକ୍ତିସଂଗତ । କିନ୍ତୁ କେବଳ ଅନୁମାନକୁ ଭିତ୍ତି କରି ଜଗନ୍ନାଥ-ଚରିତାମୃତର ଅକାଟ୍ୟ ପ୍ରମାଣକୁ ଅସ୍ୱୀକାର କରିବା ବିଜ୍ଞତାର ପରିଚାୟକ ନୁହେଁ । ଗ୍ରନ୍ଥର ଉପସଂହାରରେ ଦିବାକର ଦାସ ଲେଖିଛନ୍ତି—

"ଅଷ୍ଟାଦଶ ବରଷଠାରେ । ଶ୍ରୀଚଇତନ୍ୟ ଭେଟ ହେଲେ ॥
ଛଡ଼ବରଷ ନିରନ୍ତର । ସେବିଲେ ଚୈତନ୍ୟ ପୟର ॥
ଏଅନ୍ତେ ଛତିଶ ବରଷ । ପ୍ରେମ ସାଧିଲେ ଅହର୍ନିଶ ॥
ଷାଠି ବରଷ ସମୟରେ । ପ୍ରେମ ସ୍ଥାପି ସ୍ଥାନେ ଗମିଲେ ॥"

ଏଥିରୁ ଅନୁମିତ ହୁଏ ଯେ, ୧୮ ବର୍ଷ ପରଠାରୁ ଜଗନ୍ନାଥ ଦାସଙ୍କର ସାଧକର ଭାବାବିଷ୍ଟ ଜୀବନର ଆରମ୍ଭ । ଏହାର ସବିଶେଷ ବିବରଣୀ ଜଗନ୍ନାଥ-ଚରିତାମୃତରେ ଅନ୍ୟତ୍ର ବର୍ଣ୍ଣିତ ହୋଇଅଛି । ତେଣୁ ୧୮ ବର୍ଷ ବୟସ ପରେ ଜଗନ୍ନାଥ ଦାସ ଭାଗବତ ପରି କଠିନ ଦାର୍ଶନିକ ତଥ୍ୟପୂର୍ଣ୍ଣ ଗ୍ରନ୍ଥର ବ୍ୟାଖ୍ୟାରେ ପ୍ରବୃତ୍ତ ହେବା ଅବସ୍ଥାରେ ନ ଥିଲେ । ପୁନଶ୍ଚ ଭାଗବତର ବିବିଧ ବିଷୟରେ ବର୍ଣ୍ଣନା ପ୍ରସଙ୍ଗରେ ଯେ ଭାବୋଚ୍ଛ୍ୱାସ, ପ୍ରାଣର ଯେ ପ୍ରାଚୁର୍ଯ୍ୟ, ବର୍ଣ୍ଣନାର ଯେ ହୃଦୟ ଉନ୍ମାଦକାରୀ ଚମତ୍କାରିତା ଦୃଷ୍ଟ ହୁଏ ତାହା ତରୁଣ ପକ୍ଷରେ ହିଁ ସମ୍ଭବ । ପୃଥିବୀର ବହୁ କବି, ଲେଖକ, କଳାକାର ଓ ଦାର୍ଶନିକ ତାରୁଣ୍ୟରେ ହିଁ ସେମାନଙ୍କର ଯଶ ଓ କୀର୍ତ୍ତିର ପରାକାଷ୍ଠାରେ ଉପନୀତ ହୋଇଅଛନ୍ତି । ତେଣୁ ଭାଗବତର ଉପରୋକ୍ତ ରଚନାକାଳ ସମ୍ବନ୍ଧରେ ଭିନ୍ନ ମତ ପୋଷଣ କରିବାର କୌଣସି କାରଣ ନାହିଁ ।

## ଶ୍ରୀଚୈତନ୍ୟ ଓ ଜଗନ୍ନାଥ ଦାସ—

ବ୍ୟାସକବି ଫକୀରମୋହନ ଲେଖିଅଛନ୍ତି ଯେ ଚୈତନ୍ୟଙ୍କ ନୀଳାଚଳ ଅବସ୍ଥାନ କାଳର ଦୁଇଗୋଟି ଘଟନା ବିଶେଷ ଉଲ୍ଲେଖଯୋଗ୍ୟ । ପ୍ରଥମଟି ହେଉଛି ଜଗନ୍ନାଥ ଦାସଙ୍କ ସହିତ ତାଙ୍କର ମିଳନ ଏବଂ ଦ୍ୱିତୀୟଟି ହେଉଛି ପୁରୀର ପ୍ରସିଦ୍ଧ ନୈୟାୟିକ ପଣ୍ଡିତ ସାର୍ବଭୌମଙ୍କ ସହିତ ଚୈତନ୍ୟଙ୍କର ଆଲୋଚନା; ଚୈତନ୍ୟଙ୍କ ନିକଟରେ ସାର୍ବଭୌମଙ୍କର ପରାଜୟସ୍ୱୀକାର ଓ

ବୈଷ୍ଣବ ଧର୍ମ ଗ୍ରହଣ । ଉତ୍କଳର ବୈଷ୍ଣବଧର୍ମର ଇତିହାସରେ ଏ ଦୁଇଟି ଘଟଣା ଯେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଏଥିରେ ସନ୍ଦେହର ଅବକାଶ ନାହିଁ । ଈଶ୍ୱର ଦାସ ତାହାଙ୍କ ଚୈତନ୍ୟଭାଗବତରେ ଉଲ୍ଲେଖ କରିଅଛନ୍ତି ଯେ ନୀଳାଚଳ ଆଗମନ ପୂର୍ବରୁ ପଥ ମଧ୍ୟରେ ଯଶୋବନ୍ତ, ଅଚ୍ୟୁତ, ଅନନ୍ତ ଓ ବଳରାମଙ୍କ ସହିତ ଶ୍ରୀଚୈତନ୍ୟଙ୍କର ସାକ୍ଷାତ ହୋଇଥିଲା ଏବଂ ଶ୍ରୀଚୈତନ୍ୟଙ୍କର ପ୍ରଥମ ଶ୍ରୀମନ୍ଦିର ଦର୍ଶନକାଳରେ ଉକ୍ତ ଗୁରୁସଖା ତାଙ୍କ ଗହଣରେ ଉପସ୍ଥିତଥିଲେ ।

"ସଙ୍ଗତେ ବଳରାମ ଦାସ । ଯଶୋବନ୍ତ ଅଚ୍ୟୁତ ଦାସ ॥
ଅନନ୍ତ ଦାସ ସଙ୍ଗତର । ଗୁରୁସଖାଙ୍କ ଧରି କର ॥
ଏମନ୍ତେ ଚୈତନ୍ୟ ଗୋସାଇଁ । ଶ୍ରୀକ୍ଷେତ୍ର ତାହାଣୀବନ୍ତ ହୋଇ ॥
ଅଛନ୍ତି ପ୍ରଦକ୍ଷିଣ କରି । ଶିଙ୍ଗା ମୁରଲି ନାଦ ସ୍ଫୁରି ॥"

[—ଚ: ଭା: ୪୭ଅ, ୪୬ପଦ]

ଏ ଉକ୍ତି ଅନୁଯାୟୀ ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ ସଖା ଜଗନ୍ନାଥ ଦାସଙ୍କ ସହିତ ଶ୍ରୀଚୈତନ୍ୟଙ୍କର ସର୍ବଶେଷରେ ପରିଚୟ ହୁଏ । ଦିବାକର ଦାସଙ୍କ ମତାନୁଯାରେ ୧୫୧୦ ଖ୍ରୀଷ୍ଟାବ୍ଦରେ ଶ୍ରୀଚୈତନ୍ୟଙ୍କର ପ୍ରଥମ ନୀଳାଚଳ ଆଗମନର ସ୍ୱଳ୍ପକାଳ ମଧ୍ୟରେ ଏ ମିଳନ ସଂଘଟିତ ହୋଇଥିଲା । ଜଗନ୍ନାଥ-ଚରିତାମୃତରେ ଉଲ୍ଲେଖ ଅଛି ଯେ, ଶ୍ରୀଚୈତନ୍ୟ ପୁରୀରେ ଅବସ୍ଥାନ କରିବା ସମୟରେ ପ୍ରତ୍ୟହ ସାଙ୍ଗୋପାଙ୍ଗଙ୍କ ସହିତ ଜଗନ୍ନାଥ ଦର୍ଶନପୂର୍ବକ ନୃତ୍ୟ-ଗୀତ ଓ ସଂକୀର୍ତ୍ତନାଦ ସହ ମହାସମାରୋହରେ ମନ୍ଦିର ପରିକ୍ରମା କରୁଥିଲେ । ଏକଦା ଶ୍ରୀମନ୍ଦିରର ପ୍ରାଙ୍ଗଣରେ ପ୍ରବେଶ କରି ଯେତେବେଳେ ଶ୍ରୀଚୈତନ୍ୟ ବଟଗଣେଶଙ୍କ ନିକଟରେ ଉପସ୍ଥିତ ହେଲେ, ସେତେବେଳେ ସେ ଦେଖିଲେ ଯେ ଜଗନ୍ନାଥ ଦାସ ସରଳ ପ୍ରାଞ୍ଜଳ ଭାଷାରେ ଭାଗବତର ବ୍ୟାଖ୍ୟାକରି ସମବେତ ଶ୍ରୋତାବୃନ୍ଦଙ୍କୁ ବୁଝାଉଛନ୍ତି । ଜଗନ୍ନାଥ ଦାସଙ୍କର ସୁଲଳିତ କଣ୍ଠଧ୍ୱନି ସଙ୍ଗେ ଭାଗବତର ମନୋଜ୍ଞ ବ୍ୟାଖ୍ୟା ଶ୍ରବଣକରି ଶ୍ରୀଚୈତନ୍ୟ ପରମସନ୍ତୋଷ ଲାଭ କଲେ ଓ ସଙ୍ଗେ ସଙ୍ଗେ ତାହାଙ୍କର ଭାବାନ୍ତର ଉପସ୍ଥିତ ହେଲା । ପ୍ରେମଭକ୍ତିଗତ

ଚଉରେ ସେ ଜଗନ୍ନାଥ ଦାସଙ୍କୁ ଆଲିଙ୍ଗନ କଲେ; ଏହି ଆଲିଙ୍ଗନ ଅଢ଼େଇଦିନ ପର୍ଯ୍ୟନ୍ତ ସ୍ଥାୟୀ ହୋଇଥିଲା । ଏହିପରି ଭାବରେ ଦୁଇଟି ଜୀବନଧାରା ଏକାକାର ହୋଇଗଲା । ଦୁହିଁଙ୍କର ହୃଦୟତନ୍ତ୍ରୀ ଏକ ତାନରେ ବାଜି ଉଠିଲା । ଦୁହେଁ ଦୁହିଁଙ୍କୁ ଚିହ୍ନି ପାରିଲେ । ପ୍ରେମବିହ୍ୱଳ ଭାବୋନ୍ମତ୍ତ ଦୁଇଟି ପ୍ରାଣର ଏ ଅପୂର୍ବ ମିଳନ ଯଥାର୍ଥରେ ମଣିକାଞ୍ଚନର ସଂଯୋଗ । ଦିବାକର ଦାସ ନିମ୍ନଲିଖିତ ପ୍ରକାରେ ଏ ଘଟଣାର ବର୍ଣ୍ଣନା କରିଅଛନ୍ତି ।

"ଏହି ସମୟେ ଶ୍ରୀଚୈତନ୍ୟ । ସଙ୍ଗତେ ଘେନି ସଖାଗଣ ॥
ବଟତଳେଣ ବିଜେ କଲେ । ପୁରାଣ ଶୁଣି ତୋଷ ହେଲେ ॥
ପ୍ରେମଭରେଣ ଶ୍ରୀଚୈତନ୍ୟ । ଦାସଙ୍କୁ କଲେ ଆଲିଙ୍ଗନ ॥
ଅଢ଼ାଇ ଦିବସ ପର୍ଯ୍ୟନ୍ତେ । ଦୁହେଁ ରହିଲେ ପ୍ରେମଚିତ୍ତେ ॥"

[ଜଃ ଚଃ ପ୍ରଥମ ଅଧ୍ୟାୟ]

ଆଧୁନିକ ବୈଜ୍ଞାନିକ ଯୁଗର ଯୁକ୍ତିବାଦୀ ମନ ହୁଏତ ଏହାକୁ ଅଳୀକ କବିକଳ୍ପନା, ଭକ୍ତିକ, ଅତିରଞ୍ଜନ ବୋଲି ମତ ପ୍ରକାଶ କରିପାରେ; କିନ୍ତୁ ଶ୍ରୀଚୈତନ୍ୟ ଓ ଜଗନ୍ନାଥ ଦାସଙ୍କର ଭାବପ୍ରବଣ ହୃଦୟ ସହିତ ଯେଉଁମାନଙ୍କର ସମ୍ୟକ ଜ୍ଞାନ ଅଛି ସେମାନେ ଏହି ଘଟଣାର ସତ୍ୟତା ସମ୍ବନ୍ଧରେ କଦାପି ଦ୍ୱିମତ ହେବେ ନାହିଁ । ବୃନ୍ଦାବନ ଦାସ ତାହାଙ୍କ ଚୈତନ୍ୟଚରିତ ଗ୍ରନ୍ଥରେ ଉଲ୍ଲେଖ କରିଅଛନ୍ତି ଯେ, ଶ୍ରୀମନ୍ଦିରରେ ଜଗନ୍ନାଥଙ୍କ ପ୍ରଥମ ଦର୍ଶନରେ ଚୈତନ୍ୟ ଭାବବିହ୍ୱଳ ହୋଇ ଜଗନ୍ନାଥଙ୍କ ବିଗ୍ରହକୁ ଆଲିଙ୍ଗନ କରିବାକୁ ଉଦ୍ୟତହେଲେ ଏବଂ ସଙ୍ଗେ ସଙ୍ଗେ ଅଚେତ ହୋଇପଡ଼ିଲେ । ମନ୍ଦିରର ପଣ୍ଡାମାନେ ତାଙ୍କୁ ବିକୃତମସ୍ତିଷ୍କ ମନେକରି ତାଙ୍କ ପ୍ରତି ଅସୌଜନ୍ୟ ପ୍ରଦର୍ଶନ କରିଥିଲେ । ଏହି ଦୃଶ୍ୟ ଦେଖି ସାର୍ବଭୌମ ତାଙ୍କୁ ନିଜ ଘରକୁ ନେଇଯାଇଥିଲେ ।(୧) ଚୈତନ୍ୟଚରିତାମୃତରେ ମଧ୍ୟ ଏତାଦୃଶ ଏକାଧିକ ଘଟଣାର ଉଲ୍ଲେଖ ଅଛି । ଦିବାକର ଦାସ ମଧ୍ୟ ଜଗନ୍ନାଥ ଦାସଙ୍କର ଭାବଭୋଳା ହୃଦୟର ମନୋଜ୍ଞ ଚିତ୍ର ତାହାଙ୍କ ଗ୍ରନ୍ଥରେ ପ୍ରଦାନ କରିଅଛନ୍ତି ।

(୧) ଶ୍ରୀଚୈତନ୍ୟ—ଦିଲୀପକୁମାର ମୁଖର୍ଜୀ ।

ତେଣୁ ଉପରୋକ୍ତ ଘଟନା ଉଭୟଙ୍କର ପ୍ରକୃତ ଅନୁକୂଳ, ସୁତରାଂ ସ୍ୱାଭାବିକ ଥିଲା । ଫଳାଫଳ ଉତ୍ତାରୁ ଜଗନ୍ନାଥ ଦାସ ଚୈତନ୍ୟଙ୍କ ସଙ୍ଗେ ମନ୍ଦିର ପ୍ରଦକ୍ଷିଣ ପୂର୍ବକ ମହାପ୍ରଭୁ ଜଗନ୍ନାଥଙ୍କ ଦର୍ଶନକୁ ଗଲେ । ତତ୍ପରେ ଚୈତନ୍ୟ ସ୍ୱୀୟ ସହଚରମାନଙ୍କୁ ଲକ୍ଷ୍ୟକରି କହିଲେ···"ସକଳ ଘଟରେ ବ୍ରହ୍ମ ପୂରି ରହିଛନ୍ତି । ମୁଁ ଜଗନ୍ନାଥ ଦେବଙ୍କୁ ଯେପରି ଭୟ ଓ ଭକ୍ତି କରେ, ସର୍ବଦା ମୋର ସେହିଭାବ । ବିଶେଷତଃ ଦାସଙ୍କ ବିଷୟରେ ମୁଁ ଅତ୍ୟନ୍ତ ଭୀତ । କାରଣ ସେ ମହାପ୍ରଭୁ ଜଗନ୍ନାଥଙ୍କ ନିତ୍ୟ ଦାସ ଅଟନ୍ତି । ତାଙ୍କର ପାଦପଦ୍ମ ମହାପ୍ରେମର ଆକର । ମୁଁ ନିଷ୍କାମ ହୃଦୟରେ ତାହା ଭାବୁଥିବି ।"

[ଜଃ ଚଃ, ପ୍ରଥମ ଅଧ୍ୟାୟ]

ଏହା କହି ଶ୍ରୀଚୈତନ୍ୟ ଜଗନ୍ନାଥ ଦାସଙ୍କୁ ପୁନଃ ପୁନଃ ମାନ୍ୟ ପ୍ରଦର୍ଶନ କଲେ । ଏହା ଦେଖି ଉପସ୍ଥିତ ବୈଷ୍ଣବଗଣ ମଧ୍ୟ ତାହାଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ ପୂର୍ବକ ନିଜ ନିଜ ବସାକୁ ଫେରିଗଲେ । ଈଶ୍ୱର ଦାସଙ୍କ ଚୈତନ୍ୟଭାଗବତରେ ଏହି ଘଟଣାଟି କିଞ୍ଚିତ ଭିନ୍ନଭାବରେ ବିବୃତ ହୋଇଅଛି । ସେଥିରେ ଉଲ୍ଲେଖ ଅଛି ଯେ ଜଗନ୍ନାଥ ଦାସ ମହାପ୍ରଭୁ ଜଗନ୍ନାଥଙ୍କ ଦ୍ୱାରା ଆଦିଷ୍ଟ ହୋଇ ମାଳାଚନ୍ଦନ ସହ ଚୈତନ୍ୟଙ୍କୁ ଭେଟିଥିଲେ ଏବଂ ମହାପ୍ରଭୁଙ୍କ ଶ୍ରୀମୁଖବାଣୀ ତାହାଙ୍କୁ ନିବେଦନ କରିଥିଲେ ।

ଶ୍ରୀଚୈତନ୍ୟଙ୍କ ସହିତ ଜଗନ୍ନାଥ ଦାସଙ୍କର ମିଳନର କାଳନିରୂପଣ ସମ୍ବନ୍ଧରେ ଆଲୋଚକମାନଙ୍କ ମଧ୍ୟରେ ମତାନୈକ୍ୟ ଦୃଷ୍ଟହୁଏ । କେତେକଙ୍କ ମତରେ ୧୫୧୦ ଖ୍ରୀଷ୍ଟାବ୍ଦରେ ଚୈତନ୍ୟଙ୍କର ପ୍ରଥମ ପୁରୀ ରହଣିକାଳ ମଧ୍ୟରେ ଏବଂ ତାହାଙ୍କର ଦାକ୍ଷିଣାତ୍ୟ ଯାତ୍ରା ପୂର୍ବରୁ ଏହା ସଂଘଟିତ ହୋଇଥିଲା । ଆଉ କେତେକ ମତ ପ୍ରଦାନକରନ୍ତି ଯେ, ଶ୍ରୀଚୈତନ୍ୟଙ୍କର ଦ୍ୱିତୀୟ ରହଣୀକାଳ, ଅର୍ଥାତ ୧୫୧୨ ଖ୍ରୀଷ୍ଟାବ୍ଦ ଜ୍ୟେଷ୍ଠ ପୂର୍ଣ୍ଣିମା ପରେ, ଅର୍ଥାତ ତାହାଙ୍କର ଦାକ୍ଷିଣାତ୍ୟ ପ୍ରତ୍ୟାବର୍ତ୍ତନ ପରେ, ଏ ସାକ୍ଷାତ ଅନୁଷ୍ଠିତ ହୋଇଥିଲା । ଚୈତନ୍ୟଚରିତ ଗ୍ରନ୍ଥସମୂହର ବିବରଣୀରୁ ଜଣାଯାଏ ଯେ, ପଣ୍ଡିତ ବାସୁଦେବ ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କ ସହିତ ଚୈତନ୍ୟଙ୍କର ସାକ୍ଷାତ୍କାର ଓ

ସାର୍ବଭୌମଙ୍କର ବୈଷ୍ଣବଧର୍ମ ଗ୍ରହଣ, ୧୫୧୦ ଖ୍ରୀଷ୍ଟାବ୍ଦରେ ଚୈତନ୍ୟଙ୍କର ପ୍ରଥମ ପୁରୀ ରହଣିକାଳର ଏକ ବିଶିଷ୍ଟ ଘଟଣା । (୧) ଚୈତନ୍ୟଙ୍କ ସହ ସାର୍ବଭୌମଙ୍କର ସାକ୍ଷାତକାର କାଳରେ ଜଗନ୍ନାଥ ଦାସ ଉପସ୍ଥିତ ଥିବା ବିଷୟ ଦିବାକର ଦାସ ତାହାଙ୍କ ଗ୍ରନ୍ଥରେ ଉଲ୍ଲେଖ କରିଅଛନ୍ତି ।

"ଏକ ଦିନେ ସେ ମେଳ ହୋଇ । ଗଲେ ସାର୍ବଭୌମ ତହିଁ ॥
ସେ ସାର୍ବଭୌମ ଭଟ୍ଟାଚାର୍ଯ୍ୟ । ପ୍ରବୃତ୍ତିମାର୍ଗେ ତାଙ୍କ କାର୍ଯ୍ୟ ॥
ନିବୃତ୍ତି ମାର୍ଗ ହରିଭକ୍ତି । ସାଧନ ପ୍ରେମ ନ ଜାଣନ୍ତି ॥
ଶାସ୍ତ୍ରଙ୍କ ପଣ୍ଡିତ ଅଟନ୍ତି । ଅଭିମାନରେ ପୂର୍ଣ୍ଣ ମତି ॥
ତାହାଙ୍କୁ ତାରିବାର ଆଶେ । ପ୍ରଭୁ ଯେ ସ୍ୱୟଂ ବିଜେ ପାଶେ ॥"
[ଜ. ଚ., ୪ର୍ଥ ଅଧ୍ୟାୟ]

ତେଣୁ ଜଗନ୍ନାଥ ଦାସଙ୍କ ସହିତ ଚୈତନ୍ୟଙ୍କ ମିଳନ ୧୫୧୦ ଖ୍ରୀଷ୍ଟାବ୍ଦ ଫାଲ୍‌ଗୁନ ଓ ବୈଶାଖ ମାସ ମଧ୍ୟରେ କୌଣସି ଦିନ ହୋଇଥିବା ନିଶ୍ଚିତ ।

**ଦୀକ୍ଷା ଗ୍ରହଣ**—ଦିନକୁ ଦିନ ଜଗନ୍ନାଥ ଦାସଙ୍କ ସହିତ ଚୈତନ୍ୟଙ୍କ ବନ୍ଧୁତା ଗାଢ଼ରୁ ଗାଢ଼ତର ହେବାକୁ ଲାଗିଲା । ଜଗନ୍ନାଥଙ୍କ ହୃଦୟର ନିଷ୍ଠା, ଐକାନ୍ତିକତା ଓ ଭକ୍ତିମତ୍ତାର ପରିଚୟ ପାଇ ଶ୍ରୀଚୈତନ୍ୟ ତାହାଙ୍କୁ ନିଜର ନିତ୍ୟସହଚରରୂପେ ବାଛିନେଲେ । ଜଗନ୍ନାଥ ମଧ୍ୟ ଚୈତନ୍ୟଙ୍କ ସଦୃଶ ମହାପୁରୁଷଙ୍କୁ ନିଜର ଗୁରୁ ଓ ସଖାରୂପେ ପାଇ ନିଜ ଜୀବନକୁ ଧନ୍ୟ ମନେକଲେ । ସେହିଦିନଠାରୁ ପ୍ରତ୍ୟହ ଶ୍ରୀଚୈତନ୍ୟ ଜଗନ୍ନାଥଙ୍କୁ ସାଙ୍ଗରେ ଧରି ମହାପ୍ରଭୁଙ୍କ ଦର୍ଶନକୁ ଯାଆନ୍ତି । ମନ୍ଦିର ପ୍ରତ୍ୟାବର୍ତ୍ତନାନ୍ତର କିଛିକ୍ଷଣ ବଟ ମୂଳରେ ଅବସ୍ଥାନ କରି ଭାଗବତ ଶ୍ରବଣ କରନ୍ତି । ମନୁଷ୍ୟର ପ୍ରକୃତି ଅତ୍ୟନ୍ତ ବିଚିତ୍ର । ଚୈତନ୍ୟଙ୍କର ଜଗନ୍ନାଥ ଦାସଙ୍କ ପ୍ରତି ଏତାଦୃଶ ସସ୍ନେହ ବ୍ୟବହାର ଗୌଡ଼ୀୟ ବୈଷ୍ଣବମାନଙ୍କୁ ସୁଖ ଲାଗିଲା ନାହିଁ ।

---

(୧) ଶ୍ରୀଚୈତନ୍ୟ—ଦିଲୀପକୁମାର ମୁଖାର୍ଜୀ—ଓଡ଼ିଆ ଅନୁବାଦ—୨୫ପୃଃ ।

ସେମାନେ ଚୈତନ୍ୟଙ୍କୁ କହିଲେ, "ଜଗନ୍ନାଥ ଦାସ ବୈଷ୍ଣବଧର୍ମରେ ଦୀକ୍ଷିତ ହୋଇନାହାନ୍ତି । ବୈଷ୍ଣବ ପକ୍ଷରେ ଅନୁପଦିଷ୍ଟ ବ୍ୟକ୍ତିର ଅଙ୍ଗ ସ୍ପର୍ଶ ନିଷେଧ । ଏଣୁ ତାହାଙ୍କୁ ସ୍ପର୍ଶ କରିବା ଆପଣଙ୍କ ପକ୍ଷରେ ଅନୁଚିତ ଅଟେ ।" ଏହା ଶୁଣି ଚୈତନ୍ୟ କହିଲେ, "ଆପଣମାନଙ୍କର ଉକ୍ତି ଯୁକ୍ତିଯୁକ୍ତ ନୁହେଁ, କାରଣ ବ୍ରାହ୍ମଣ ସର୍ବଦା ପୂଜ୍ୟ । ତାର ଶରୀର ବିଷ୍ଣୁଙ୍କର ଆବାସସ୍ଥଳ । ତେଣୁ ଉପଦିଷ୍ଟ ହୋଇ ନ ଥିଲେ ମଧ୍ୟ ଜଗନ୍ନାଥ ଭକ୍ତିମୟ ଶରୀର ଅଟନ୍ତି ।" ଚୈତନ୍ୟଙ୍କର ଏ ପ୍ରକାର ଉତ୍ତରରେ ବୈଷ୍ଣବଗଣ ଆଉ କିଛି ନକହି ନୀରବ ରହିଲେ । କିନ୍ତୁ ଜଗନ୍ନାଥ ଦାସ ସ୍ଥିର ହୋଇ ରହିପାରିଲେ ନାହିଁ । ସେ ଯେତେବେଳେ ଜାଣିଲେ ଯେ ସେ ଅଦୀକ୍ଷିତ ହୋଇଥିବାରୁ ଗୌଡ଼ୀୟ ବୈଷ୍ଣବଗଣ ତାହାଙ୍କ ବିରୁଦ୍ଧରେ ଚୈତନ୍ୟଙ୍କ ନିକଟରେ ଅଭିଯୋଗ ଉପସ୍ଥାପିତ କରିଅଛନ୍ତି, ସେତେବେଳେ ଦୀକ୍ଷା ଗ୍ରହଣ ପାଇଁ ତାଙ୍କର ହୃଦୟ ବ୍ୟାକୁଳ ହୋଇଉଠିଲା । ଦିନେ ସେ ଦୁଇ ହାତରେ ଦୁଇଖଣ୍ଡି ଅଭଡ଼ା ଧରି ଚୈତନ୍ୟଙ୍କ ନିକଟରେ ଉପସ୍ଥିତ ହେଲେ । ତତ୍ପରେ ହସ୍ତପ୍ରକ୍ଷାଳନ ପୂର୍ବକ ଚୈତନ୍ୟଙ୍କୁ ନମସ୍କାର କରନ୍ତେ ଚୈତନ୍ୟ ସହାସ୍ୟବଦନରେ 'ପୁଣ୍ଡି ଭକ୍ତିମୟ ଦାସେ ଆସିବା ହେଉନ୍ତୁ' ବୋଲି କହିଲେ । ଜଗନ୍ନାଥ ଦାସ ପୂର୍ବବତ୍ କୃତାଞ୍ଜଳିବଦ୍ଧ ହୋଇ ଜଣାଇଲେ—"ମୁଁ ଅନୁପଦିଷ୍ଟ ତେଣୁ ଅସ୍ପୃଶ୍ୟ । ଆପଣ ମୋ ପ୍ରତି କୃପା ପ୍ରଦର୍ଶନ ପୂର୍ବକ ମୋତେ ଦୀକ୍ଷା ପ୍ରଦାନ କରନ୍ତୁ ।" ଜଗନ୍ନାଥ ଦାସ "ହରେ ରାମ ହରେରାମ ରାମ ରାମ ହରେ ହରେ—ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ' ଏହି ୧୬ ନାମ ଓ ୩୨ ଅକ୍ଷର ଯୁକ୍ତ ମହାମନ୍ତ୍ରରେ ଦୀକ୍ଷିତ ହେବାପାଇଁ ନିଜର ଅଭିଳାଷ ବ୍ୟକ୍ତ କଲାରୁ ଚୈତନ୍ୟ ତାଙ୍କୁ କହିଲେ—

"ସବୁ ନାମରେ କୃଷ୍ଣ ନାମ । ଉତ୍କୃଷ୍ଟ ଆଉ ଅନୁପମ ॥
ସେ ନାମ ପଛେ ଉଚ୍ଚାରଣ । କପାଇଁ କହ ତା କାରଣ ॥
ସିଦ୍ଧାନ୍ତ ଏ ପୂର୍ବ ପକ୍ଷର । ତୁମ୍ଭେ ଯଦି ବା କରିପାର ॥
ହେ କଲ୍ୟାଣୀୟ ବିପ୍ରବର । ଆପତ୍ତି ତେବେ ନାହିଁ ମୋର ॥"

ଏହା ପରେ ଜଗନ୍ନାଥ ଦାସ ଉତ୍କଳୀୟ ବୈଷ୍ଣବମାନଙ୍କ ଦ୍ୱାରା ଅନୁସୃତ ଏହି ମହାମନ୍ତ୍ରର ସନ୍ତୋଷଜନକ ଆଧ୍ୟାତ୍ମିକ ବ୍ୟାଖ୍ୟା କରନ୍ତେ ଶ୍ରୀଚୈତନ୍ୟ

ତାହାଙ୍କର ବଦ୍‌ବନ୍ତ୍ର ଓ ଶାସ୍ତ୍ରଦର୍ଶିତାରେ ପ୍ରୀତ ହୋଇ ତାହାଙ୍କୁ ଦୀକ୍ଷା ଗ୍ରହଣର ଉପଯୁକ୍ତ ପାତ୍ର ବୋଲି ମନ୍ତବ୍ୟକ୍ତ କରିଥିଲେ । କିନ୍ତୁ ହରେକୃଷ୍ଣ ମନ୍ତ୍ର ସ୍ୱପ୍ରତିଷ୍ଠିତ ସମ୍ପ୍ରଦାୟର ଏକମାତ୍ର ଅନୁମୋଦିତ ମନ୍ତ୍ର ହୋଇଥିବାରୁ, ସେ ଏ ପରମ୍ପରାକୁ ଭଙ୍ଗ କରିବାପାଇଁ ଇଚ୍ଛା କରି ନଥିଲେ । ପରନ୍ତୁ ଉଦାର ହୃଦୟ ଚୈତନ୍ୟ ନିଜ ସମ୍ପ୍ରଦାୟର ମନ୍ତ୍ରରେ ଦୀକ୍ଷିତ ହେବାପାଇଁ ଜଗନ୍ନାଥ ଦାସଙ୍କୁ ବାଧ କରିବା ଉଚିତ ମଣି ନ ଥିଲେ । ତେଣୁ ସେ ଉତ୍କଳୀୟ ବୈଷ୍ଣବ, ଭକ୍ତ ଶିରୋମଣି ମଠ ବଳରାମଙ୍କଦ୍ୱାରା ଜଗନ୍ନାଥ ଦାସଙ୍କ ଦୀକ୍ଷା ଗ୍ରହଣରେ ବ୍ୟବସ୍ଥା କରିଥିଲେ ।

"ତୁମ୍ଭେ ତ ହେବାକୁ ଦୀକ୍ଷିତ । ଆମ୍ଭର ଅଟେ ସନମତ ॥
ଏ ମଠ ବଳରାମ ଦାସ । ପୁରାଇବେ ତୁମ୍ଭ ମାନସ ॥
ହରେ ରାମାଦି ମହାମନ୍ତ୍ର । ଯାହା ତୁମ୍ଭର ଅଭିମତ ॥
ପାଇ ସେ ମୋହର ଆଦେଶ । ତୁମ୍ଭଙ୍କୁ ଦେବ ଉପଦେଶ ॥"

[ଜ. ଚ., ୩୯ପୃ]

ମଠ ବଳରାମଙ୍କଠାରୁ ଜଗନ୍ନାଥ ଦାସଙ୍କ ଦୀକ୍ଷାଗ୍ରହଣ ବିଷୟକୁ ଈଶ୍ୱର ଦାସ ତାହାଙ୍କ ଚୈତନ୍ୟଭାଗବତରେ ସମର୍ଥନ କରିଅଛନ୍ତି ।

"ନାମ ତା ମଠ ବଳରାମ । ଜଗତେ ବିଦିତ ଉତ୍ତମ ॥
ଦେଖିଲେ ଜଗନ୍ନାଥ ଦାସ । ସେଠାରୁ ହେଲେ ଉପଦେଶ ॥
ଚୈତନ୍ୟ ପରୋକ୍ଷ ଶିଷ୍ୟ । ଅନେକ କହେ ପରିହାସ ॥"

[ଚୈ: ଭା: ୭ ଅଧ୍ୟାୟ]

ଈଶ୍ୱର ଦାସ ନିମ୍ନଲିଖିତ ପ୍ରକାରେ ଜଗନ୍ନାଥ ଦାସଙ୍କ ଗୁରୁପରମ୍ପରା ନିରୂପଣ କରିଅଛନ୍ତି ।




'ନିତ୍ୟଗୁପ୍ତମଣି'ରେ ମଧ୍ୟ ଜଗନ୍ନାଥ ଦାସଙ୍କ ଗୁରୁ ପରମ୍ପରାର ଉଲ୍ଲେଖ ଅଛି । କିନ୍ତୁ ଈଶ୍ୱର ଦାସଙ୍କ ପ୍ରଦତ୍ତ ଗୁରୁ ପ୍ରଣାଳୀଠାରୁ ଏହା କେତେକାଂଶରେ ଭିନ୍ନ ।

"ଶ୍ରୀମଦ୍ ଚୈତନ୍ୟ ଦେବସ୍ୟ ଗୌର ଦାସାଖ୍ୟ ପଣ୍ଡିତଃ
ତଚ୍ଛିଷ୍ୟୋ ମତ୍ତପୂର୍ବସ୍ତୁ ବଳରାମ ଇତି ସ୍ମୃତଃ ।
ମହାନପି ଜଗନ୍ନାଥ ଦାସ ସ୍ତତ୍ପରମ୍ପରକଃ ।"

[ନିତ୍ୟଗୁପ୍ତମଣି—ଜନବଂଶ ଆସ୍ୱାଦ]

**ଅତିବଡ଼ ଉପାଧି ପ୍ରାପ୍ତି—**

ମନ୍ତ୍ରଗ୍ରହଣ ପରେ ଚୈତନ୍ୟଙ୍କ ସହିତ ଜଗନ୍ନାଥଙ୍କର ଘନିଷ୍ଠତା ବୃଦ୍ଧି ପାଇଲା ।

ବନକୃବନ ନୂଆ ପ୍ରୀତ । ଶ୍ରୀଚୈତନ୍ୟ କଲେ ଭକ୍ତ ॥
[ଜ. ଚ. ୩ୟ ଅଧ୍ୟାୟ]

ଶ୍ରୀବସ୍ତ ଜଗନ୍ନାଥ ଦାସ । ପ୍ରଭୁରେ ଅତ୍ୟନ୍ତ ବିଶ୍ୱାସ ॥
[ଚୈ: ଭା:, ୪୭ ଅଧ୍ୟାୟ, ୧୬୨ ପୃ]

ଜଗନ୍ନାଥଙ୍କ ଅତୁଳନୀୟ କବିପ୍ରତିଭା, ଅସାମାନ୍ୟ ଶାସ୍ତ୍ରଦର୍ଶିତା, ଅଲୌକିକ ଭକ୍ତିମତ୍ତା ଏବଂ ସର୍ବୋପରି ତାହାଙ୍କର ବୈଷ୍ଣବ ଜନୋଚିତ ନିରଭିମାନ, ନିରହଙ୍କାର ସ୍ୱଭାବ ଚୈତନ୍ୟଙ୍କୁ ଅତ୍ୟନ୍ତ ମୁଗ୍ଧ କରିଥିଲା ଏବଂ ସେ ତାହାଙ୍କୁ ଅତିବଡ଼ ବୋଲି ସମ୍ବୋଧନ କରୁଥିଲେ । ଏହା ଅତ୍ୟନ୍ତ ସ୍ୱାଭାବିକ । ଏଥିରୁ ଚୈତନ୍ୟଙ୍କର ଉଦାର ହୃଦୟବାନ୍ ଓ ଗୁଣଗ୍ରାହକତାର ପରିଚୟ ମିଳେ । ଏତାଦୃଶ ମହାଜନୋଚିତ ବ୍ୟବହାର ପୃଥିବୀର ସକଳ ଦେଶରେ ଏବଂ ସର୍ବକାଳରେ ଦୃଷ୍ଟହୁଏ । ଜଗନ୍ନାଥ ଦାସଙ୍କଦ୍ୱାରା ଅନୁସୃତ ଉତ୍କଳୀୟ ପରମ୍ପରା ଚୈତନ୍ୟ ପ୍ରବର୍ତ୍ତିତ ଶୃଙ୍ଗାରରାଗାନୁଗା ଭକ୍ତିମାର୍ଗଠାରୁ କିଞ୍ଚିତ୍ ଭିନ୍ନ ଥିଲା । ଆଚାର ଅନୁଷ୍ଠାନ, ଚିରାଚରିତ ଆଦି ବାହ୍ୟ କ୍ରିୟାକଳାପରେ ବିସ୍ତୃତ ଭେଦଥିଲା । ଏ ବିଷୟରେ ଚୈତନ୍ୟ ସଂପୂର୍ଣ୍ଣ ସଚେତନ ଥିଲେ । କିନ୍ତୁ ଚୈତନ୍ୟ ସାଂପ୍ରଦାୟିକ ଆଚାର ଅନୁଷ୍ଠାନଗତ ସକଳ ପ୍ରକାର କୃତ୍ରିମତା ଓ ସଂକୀର୍ଣ୍ଣତାର ଊର୍ଦ୍ଧ୍ୱରେ ଥିଲେ । ତେଣୁ ଜଗନ୍ନାଥ ଦାସଙ୍କୁ ଗ୍ରହଣ କରିବାରେ ଓ ତାଙ୍କୁ ଉପଯୁକ୍ତ ମର୍ଯ୍ୟାଦା ଦେବାରେ ଏସବୁ ତାଙ୍କ ନିକଟରେ କୌଣସି ଅନ୍ତରାୟ ସୃଷ୍ଟି କରି ପାରି ନ ଥିଲା । ଜଗନ୍ନାଥଙ୍କଠାରେ ସେ ଯେଉଁ ଶୁଦ୍ଧ ଅନାବିଲ ଭକ୍ତିମତ୍ତା ଓ ଏକ ଦିଗନ୍ତସ୍ପର୍ଶୀ ବିଶ୍ୱପ୍ରାଣତାର ସ୍ପର୍ଶ ସେ ଅନୁଭବ କରିଥିଲେ, ତାହା ତାଙ୍କୁ ଏକ ଅପୂର୍ବ ଚୁମ୍ବକୀୟ ଶକ୍ତି ବଳରେ ଜଗନ୍ନାଥ ଦାସଙ୍କ ଆଡ଼କୁ ଟାଣିନେଇଥିଲା । ତେଣୁ ଯେଉଁମାନେ ମତ ପ୍ରଦାନ କରନ୍ତି ଯେ, ଜଗନ୍ନାଥ ଦାସଙ୍କର ନାରୀଭାବ ପ୍ରକଟନ ହେତୁ ଚୈତନ୍ୟ ତାଙ୍କୁ ଅତିବଡ଼ ଆଖ୍ୟା ପ୍ରଦାନ କରି ତ୍ୟାଗକରିଥିଲେ ସେମାନେ ଚୈତନ୍ୟଙ୍କ ପ୍ରତି ତଥା ଜଗନ୍ନାଥ ଦାସଙ୍କ ପ୍ରତି ଘୋର ଅନ୍ୟାୟ ଆଚରଣ କରନ୍ତି । (୧)

---

(୧) ଚୈତନ୍ୟ ଚରିତେର ଉପାଦାନ —ବିମାନ ବିହାରୀ ମଜୁମଦାର, ୫୩ ପୃ:

ଦିବାକର ଦାସ ତାହାଙ୍କ 'ଜଗନ୍ନାଥ ଚରିତାମୃତ' ଗ୍ରନ୍ଥରେ ଜଗନ୍ନାଥ-ଦାସଙ୍କ ଅତିବଡ଼ି ଉପାଧି ପ୍ରାପ୍ତି ପ୍ରସଙ୍ଗରେ ଏକ ମନୋହର ଉପାଖ୍ୟାନର ଅବତାରଣା କରିଅଛନ୍ତି । ଜଗନ୍ନାଥ ଦାସଙ୍କ ଭକ୍ତିମତ୍ତା ଓ ସେବାପରାୟଣ-ତାରେ ମୁଗ୍ଧ ହୋଇ ଦିନେ ଚୈତନ୍ୟ ପଚାରିଲେ, "ଦାସେ, ଆପଣଙ୍କ ଗୀତ ଦେଖିଲେ ମନେହୁଏ ଯେ ଆପଣ ସାଧକ ନୁହନ୍ତି ନିତ୍ୟସିଦ୍ଧ । ଆପଣଙ୍କ ପୂର୍ବ ସିଦ୍ଧାଙ୍ଗପ୍ରାପ୍ତି ବୃତ୍ତାନ୍ତ ଆମ୍ଭଙ୍କୁ କହନ୍ତୁ ।" ଜଗନ୍ନାଥ ଦାସ କହିଲେ ଯେ, "ସେ ଯେତେବେଳେ ବ୍ରହ୍ମସଂହିତା ଲିଖିତ ବିଷ୍ଣୁଚକ୍ରର ଉପରିସ୍ଥିତ ବୈକୁଣ୍ଠ-ଧାମର ସୁବର୍ଣ୍ଣପୀଠସ୍ଥିତ ମଣିମଣ୍ଡିତ ମଣ୍ଡପରେ ରାଧାଲିଙ୍ଗିତ କୃଷ୍ଣଙ୍କର ମହାରାସଲୀଳା ବିଷୟ ସ୍ମରଣକରି ଭାବାବିଷ୍ଟ ହେଲେ ସେତେବେଳେ ତାଙ୍କର ବାହ୍ୟଜ୍ଞାନ ଅନ୍ତର୍ହିତ ହେଲା । ସେ ଦେଖିଲେ ବୈକୁଣ୍ଠଧାମରେ ଶ୍ରୀମଦ୍ ରାଧା-କୃଷ୍ଣ ଏକତ୍ରାବସ୍ଥାନ କରୁଅଛନ୍ତି, ପରସ୍ପର ପରସ୍ପରକୁ ଆନନ୍ଦରେ ନିରୀକ୍ଷଣ କରୁଅଛନ୍ତି । ତତ୍ପରେ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କ ମୁଖକୁ ଚାହିଁ ହାସ୍ୟ ପ୍ରକାଶ କଲେ । ସେ ହାସ୍ୟରୁ କୋଟି ବ୍ରହ୍ମାଣ୍ଡ ସମୁଦ୍ଭୂତ ହେଲା । ଶ୍ରୀ ଚୈତନ୍ୟ ସେହି ହାସ୍ୟରୁ ସମୁଦ୍ଭୂତ ହେଲେ ।

ଜଗନ୍ନାଥ ଦାସ ଶ୍ରୀରାଧାଙ୍କ ହାସ୍ୟରୁ ସମୁଦ୍ଭୂତ ହୋଇ ଚୈତନ୍ୟଙ୍କ ନିକଟରେ ଉପସ୍ଥିତ ହେଲେ । ତତ୍ପରେ ପ୍ରଭୁ ଉଭୟଙ୍କୁ ମର୍ତ୍ତ୍ୟରେ ଅବତାର ଗ୍ରହଣ କରି ଲୋକରେ ଭଗବଦ୍‌ଲୀଳା ପ୍ରଚାର କରିବା ନିମିତ୍ତ ଆଦେଶ କଲେ । ଏହା ଶୁଣି ଶ୍ରୀଚୈତନ୍ୟ ଭାବଗଦ୍‌ଗଦ ହୋଇ ସ୍ୱପରିହିତ ଗୈରିକ ଉତ୍ତରୀୟ କାଢ଼ି ଜଗନ୍ନାଥଙ୍କ ମସ୍ତକରେ ବାନ୍ଧି ଦେଲେ ଏବଂ ଅତି ବଡ଼ି ଉପାଧି ପ୍ରଦାନ କଲେ ।

"ଆପଣା ଶ୍ରୀଅଙ୍ଗ ପାଟ୍ଟେଡ଼ି । ପଟ୍ଟବସନ ଅଙ୍ଗୁ କାଢ଼ି ॥
ଦାସଙ୍କ ଶିରେ ବାନ୍ଧିଦେଲେ । ଅତିବଡ଼ି ବୋଲି ବୋଇଲେ ॥"

ଏ ଉପାଖ୍ୟାନ ପୌରାଣିକ ଓ ଭକ୍ତିକ ଅତିଲୌକିକତାରେ ରଞ୍ଜିତ । ପୃଥିବୀର ଏତାଦୃଶ ସାହିତ୍ୟରେ ଏହାର ଭୂରିଭୂରି ଦୃଷ୍ଟାନ୍ତ ରହିଅଛି । ଶ୍ରୀଚୈତନ୍ୟ ଓ ଜଗନ୍ନାଥ ଦାସଙ୍କର ଅଭେଦ ପ୍ରୀତିକୁ ଐଶ୍ୱରିକ ଭିତ୍ତି

ଉପରେ ପ୍ରତିଷ୍ଠିତ କରିବାର ଉଦ୍ଦେଶ୍ୟ ରଖି ବୋଧହୁଏ ଏପରି ଉପାଖ୍ୟାନର ଅବତାରଣା କରାଯାଇଛି । ଜଗନ୍ନାଥ ଦାସଙ୍କର ସ୍ୱରଚିତ ବୋଲି କୁହା-ଯାଉଥିବା "ପରିଚୟବୋଧିନୀ" ନାମକ ଅନ୍ୟ ଏକ ଗ୍ରନ୍ଥରେ ମଧ୍ୟ ଉପରୋକ୍ତ ଉପାଖ୍ୟାନର ପୁନରାବୃତ୍ତି ଦୃଷ୍ଟହୁଏ ।

"ସନ୍ନ୍ୟାସୀ ଯୋଗରେ ଜାଣିଲେ । ସିଦ୍ଧାଙ୍କ ପରିଚୟ ଭୁଲେ ॥
ମୋହର କନ୍ଧେ ଦେଇକର । ଆଘ୍ରାଣ କଲେ ମୋର ଶିର ॥
ମୁଣ୍ଡରୁ ବସନ ଉତାରି । ମୋହରେ ବଢ଼ାଇଲେ ଶିରୀ ॥
କହିଲ ଅତିବଡ଼ ଭାବ । ସେନାମେ କଲ ତୋର ଠାବ ॥"

[ପରିଚୟ ବୋଧିନୀ ।]

## ଗୌଡ଼ୀୟ ବୈଷ୍ଣବଙ୍କ ସଙ୍ଗେ ବିରୋଧ :

ଜଗନ୍ନାଥ ଦାସଙ୍କ ଅତିବଡ଼ ପଦ ପ୍ରାପ୍ତିରେ ଚୈତନ୍ୟଙ୍କର ଅନୁଗାମୀ କେତେକ ବୈଷ୍ଣବ ଅତ୍ୟନ୍ତ କ୍ଷୁଣ୍ଣ ହୋଇ ଚୈତନ୍ୟଙ୍କୁ ନିଜ ହୃଦୟର ବ୍ୟଥା ଜଣାଇଲେ ।

"ଅତିବଡ଼ ବୋଲି ବୋଲନ୍ତେ । ବୈଷ୍ଣବେ ଦୁଃଖ କଲେ ଚିତ୍ତେ ॥
ଓଡ଼ିଆ ବ୍ରାହ୍ମଣକୁ ପାଇ । ବୋଇଲେ ଅତିବଡ଼ ଏହି ॥
ଆଜି ପର୍ଯ୍ୟନ୍ତ ସେବା କଲୁ । ସମସ୍ତେ ସାନ ପଦେ ଗଲୁ ॥"

[ଜ: ଚ:—୩୮ପୃ]

ଚୈତନ୍ୟ ସେମାନଙ୍କର ମନୋଭାବ ହୃଦୟଙ୍ଗମ କରି ସେମାନଙ୍କୁ ବହୁତ ବୁଝାଇଲେ ଏବଂ ନିଜ କାର୍ଯ୍ୟର ଯୁକ୍ତଯୁକ୍ତତା ପ୍ରତିପାଦନପୂର୍ବକ କହିଲେ ଯେ ପୁରୁଷୋତ୍ତମ କ୍ଷେତ୍ର ପରମ ପବିତ୍ର । ମନୁଷ୍ୟ ତ ଦୂରର କଥା । ଶ୍ରୀକ୍ଷେତ୍ରସ୍ଥିତ କୀଟ ପତଙ୍ଗ ଓ କାଷ୍ଠ ପାଷାଣ ମଧ୍ୟ ଦେବତ୍ୱର ଅଧିକାରୀ । ତେଣୁ ମହାତ୍ମାନୀ ଭକ୍ତବର ଜଗନ୍ନାଥ ଦାସଙ୍କ ପକ୍ଷରେ 'ଅତିବଡ଼' ପଦ ଅତି ସାମାନ୍ୟ ।

"ମହାତ୍ମାନୀ ବିପ୍ରବର । ଭକତ ଅଟନ୍ତି ଆବର ॥
ଏହାଙ୍କ ସଙ୍ଗରେ ରହିବ । ଏ କ୍ଷେତ୍ରବର ନ ଛାଡ଼ିବ ॥

ଶ୍ରୀଚୈତନ୍ୟଙ୍କର ଏହି ଦୃଢ଼ ଆଭିମୁଖ୍ୟ ଓ ଅଟଳ ସଂକଳ୍ପ ଫଳରେ ବଙ୍ଗୀୟ ବୈଷ୍ଣବମାନେ ଦୁଇଦଳରେ ବିଭକ୍ତ ହୋଇଗଲେ । ଯେଉଁମାନେ ଜଗନ୍ନାଥ ଦାସଙ୍କ ମହତ୍ତ୍ୱ ବୁଝିପାରିଥିଲେ ସେମାନେ ପୁରୀରେ ରହିଲେ । ଏମାନଙ୍କ ମଧ୍ୟରେ ଭକ୍ତ ହରିଦାସ, ଜଗଦାନନ୍ଦ ଚକ୍ରବର୍ତ୍ତୀ, ମୁକୁନ୍ଦ ଦତ୍ତ, ଦାମୋଦର ଚକ୍ରବର୍ତ୍ତୀ ଓ ଅନ୍ୟାନ୍ୟ ଅନ୍ତରଙ୍ଗ ବଙ୍ଗୀୟ ବୈଷ୍ଣବଗଣ ପ୍ରଧାନ । ରୂପ ସନାତନ ଆଦି ଷଡ଼୍‌ଗୋସ୍ୱାମୀ ଓ ନିତ୍ୟାନନ୍ଦ ଅଦ୍ୱୈତ ଆଦି ବୈଷ୍ଣବଗଣ ମଧ୍ୟ ପ୍ରଭୁଙ୍କ ସହିତ ନୀଳାଚଳରେ ଅବସ୍ଥାନ କରିବାକୁ ଲାଗିଲେ । କିନ୍ତୁ ଅନ୍ୟ ବଙ୍ଗୀୟ ବୈଷ୍ଣବଗଣ ଚୈତନ୍ୟଙ୍କ ଆଚରଣରେ କ୍ଷୁଣ୍ଣ ହୋଇ ଅଭିମାନରେ ନୀଳାଚଳ ତ୍ୟାଗ କରି ଯାଜପୁର ଚାଲିଗଲେ । ଭକ୍ତବତ୍ସଳ ମହାପ୍ରଭୁ ଶ୍ରୀଚୈତନ୍ୟ ସେମାନଙ୍କ ପ୍ରତି କୃପା ପ୍ରଦର୍ଶନ ପୂର୍ବକ ସେମାନଙ୍କୁ ପୁରୁଷୋତ୍ତମ କ୍ଷେତ୍ରକୁ ଫେରାଇଆଣିବା ଉଦ୍ଦେଶ୍ୟରେ ନିଜର ଏକାନ୍ତ ବିଶ୍ୱାସୀ ହରିଦାସ ନାମକ ଜଣେ ବୈଷ୍ଣବଙ୍କୁ ଯାଜପୁର ପଠାଇଲେ । ଏଥିରେ ଆଶ୍ୱସ୍ତ ହୋଇ ବୈଷ୍ଣବଗଣ ପ୍ରସ୍ତାବ କଲେ ଯେ, ପ୍ରଭୁ ନିଜେ ଆସି ସେମାନଙ୍କୁ ସାଙ୍ଗରେ ଘେନିଗଲେ ଶ୍ରୀକ୍ଷେତ୍ରକୁ ଫେରିଯିବା ପାଇଁ ସେମାନଙ୍କର ଆଉ କୌଣସି ଆପତ୍ତି ରହିବ ନାହିଁ । ଶରଣବତ୍ସଳ, ଉଦାରହୃଦୟ ଚୈତନ୍ୟ ଏଥିରେ ସନ୍ତୋଷ ପ୍ରକାଶ କରି ତାହାଙ୍କର ଅନୁଗାମୀ ଗୌଡ଼ୀୟ ବୈଷ୍ଣବଗଣ ଓ ଜଗନ୍ନାଥ ଦାସଙ୍କୁ ସାଙ୍ଗରେ ଧରି ଯାଜପୁର ଅଭିମୁଖରେ ଯାତ୍ରାକଲେ । ମହାପ୍ରଭୁଙ୍କୁ ଦର୍ଶନକରି ବୈଷ୍ଣବମାନଙ୍କର ଆନନ୍ଦର ସୀମା ରହିଲ ନାହିଁ । କିନ୍ତୁ ସେମାନଙ୍କ ସମ୍ମୁଖରେ ଶ୍ରୀଚୈତନ୍ୟ ଜଗନ୍ନାଥ ଦାସଙ୍କୁ ପୁନର୍ବାର ଅତିବଡ଼ ବୋଲି ସମ୍ବୋଧନ କରିବାରୁ ସେମାନେ ନୀଳାଚଳ ପ୍ରତ୍ୟାଗମନର ସଂକଳ୍ପ ପରିତ୍ୟାଗ କଲେ ଏବଂ ବଣବିଷ୍ଣୁପୁର ନାମକ ଏକ ସ୍ଥାନକୁ ଯାଇ ସେଠାରେ କାଳ ଅତିବାହିତ କରିବାକୁ ଲାଗିଲେ । ଶ୍ରୀଚୈତନ୍ୟ ମଧ୍ୟ ଭକ୍ତଗଣଙ୍କ ସହିତ ନୀଳାଚଳଧାମକୁ ଫେରିଆସି ମହାପ୍ରଭୁ ଜଗନ୍ନାଥଙ୍କ ସେବାରେ ମନପ୍ରାଣ ଢାଳିଦେଲେ ।

ଜଗନ୍ନାଥ ଦାସଙ୍କ ବିରୋଧୀ ଗୌଡ଼ୀୟ ବୈଷ୍ଣବମାନେ ଭାବିଲେ ଯେ, ଯେତେଦିନ ପର୍ଯ୍ୟନ୍ତ ଚୈତନ୍ୟ ପୁରୀରେ ଅବସ୍ଥାନ କରୁଥିବେ, ସେତେଦିନ

ପର୍ଯ୍ୟନ୍ତ ଅତିବଡ଼ ଜଗନ୍ନାଥ ଦାସଙ୍କ ପ୍ରଭାବକୁ ଏଡ଼ାଇ ଦେବା ତାଙ୍କ ପକ୍ଷରେ କଦାପି ସମ୍ଭବ ନୁହେଁ । ତେଣୁ ତାଙ୍କର ଏହି ଓଡ଼ିଆସଙ୍ଗ ଛଡ଼ାଇବାକୁ ହେବ । ଏହି ଉଦ୍ଦେଶ୍ୟରେ ସେମାନେ ବଣ ବିଷ୍ଣୁପୁରରୁ ମାଧୋ ଦାସଙ୍କ ଜରିଆରେ ଶ୍ରୀଚୈତନ୍ୟଙ୍କୁ ଖଣ୍ଡିଏ ପତ୍ର ଲେଖି ତହିଁରେ ତାହାଙ୍କୁ ପୁରୁଷୋତ୍ତମ ଛାଡ଼ି ଅନ୍ୟତ୍ର ତୀର୍ଥାଟନରେ ଯିବାପାଇଁ ପ୍ରସ୍ତାବ କଲେ । ଶ୍ରୀଚୈତନ୍ୟ ଆଠଟି ଶ୍ଳୋକରେ ଉକ୍ତ ସମ୍ପ୍ରଦାୟାଭିମାନୀ ବୈଷ୍ଣବମାନଙ୍କ ଚିଠିର ଯେଉଁ ଉତ୍ତର ଦେଇଥିଲେ ତାହା ଯେପରି ରହସ୍ୟପୂର୍ଣ୍ଣ ସେହିପରି ଦୃଢ଼ତାବ୍ୟଞ୍ଜକ । ତହିଁରୁ ଶ୍ରୀଚୈତନ୍ୟଙ୍କର ମହାନୁଭବୂକତାର ପରିଚୟ ମିଳେ । ସେ ଲେଖି-ଥିଲେ, "ହେ, ବୈଷ୍ଣବଗଣ ତୁମ୍ଭେମାନେ ଯେ ମୋତେ ଗୋପ, ବୃନ୍ଦାବନ, ଦ୍ୱାରକା ଆଦି ତୀର୍ଥ ଭ୍ରମଣରେ ଯିବାକୁ କହୁଚ, ତାହା ମୋ ପକ୍ଷରେ ସମ୍ଭବ ନୁହେଁ; କାରଣ କୃଷ୍ଣ ସେ ସବୁ ସ୍ଥାନରେ ବର୍ତ୍ତମାନ ନାହାନ୍ତି । ସେ ସବୁ ତୀର୍ଥ ଛାଡ଼ି ସେ ବର୍ତ୍ତମାନ ନୀଳକନ୍ଦରରେ ଓ ଶ୍ରୀ ଜଗନ୍ନାଥ ରୂପରେ ବିଦ୍ୟମାନ ଅଛନ୍ତି । ତେଣୁ ଏ ଦେହରେ ପ୍ରାଣବାୟୁ ବହୁଥିବା ପର୍ଯ୍ୟନ୍ତ ମୁଁ ପୁରୁଷୋତ୍ତମ କ୍ଷେତ୍ର ଛାଡ଼ିପାରିବ ନାହିଁ । ପୁନଶ୍ଚ, ତୁମ୍ଭମାନଙ୍କର ଅଭିଳାଷ ଯେ ମୁଁ ଅତିବଡ଼ ଜଗନ୍ନାଥ ଦାସଙ୍କ ସଙ୍ଗରେ ନ ରହେ । କିନ୍ତୁ ତାହା ମଧ୍ୟ କେବେ-ହେଲେ ହୋଇପାରିବ ନାହିଁ ।" କାରଣ—

> ଜୀଅଇଁ ଅବା ମୁଁ ମରଇ । ଜଗନ୍ନାଥୁଁ ମୋ ଅନ୍ୟ ନାହିଁ ॥
> ତୁମ୍ଭେ ବା ଦୁଃଖ କର ଚିତ୍ତ । ଏ ଅତିବଡ଼ ଜଗନ୍ନାଥ ॥
> ମୋର ଗୋଚର ଅନ୍ୟ ନୋହି । ଅତିବଡ଼କୁ ଯୋଗ୍ୟ ଏହି ॥"

ଚୈତନ୍ୟଙ୍କ ଉତ୍ତର ଏ ଦୃଢ଼ତାରେ ଘୋର ମର୍ମାହତ ହୋଇ ଉକ୍ତ ଗୌଡ଼ୀୟବୈଷ୍ଣବଗଣ ତାହାଙ୍କ ହୃଦୟ ପରିବର୍ତ୍ତନର ସକଳ ଆଶା ତ୍ୟାଗକରି ବୃନ୍ଦାବନ ଚାଲିଗଲେ ।

ଜଗନ୍ନାଥ ଦାସଙ୍କର ଗୌଡ଼ୀୟବୈଷ୍ଣବମାନଙ୍କ ସଙ୍ଗେ ବିରୋଧର ମୂଳରେ ବ୍ୟକ୍ତିଗତ ଅସୂୟା ବା ବିଜାତୀୟ ଘୃଣାଭାବ ଅପେକ୍ଷା ଉତ୍କଳୀୟ ଓ ଗୌଡ଼ୀୟବୈଷ୍ଣବଧର୍ମ ମଧ୍ୟରେ ଆଦର୍ଶଗତ ଭେଦ କାରଣ ସ୍ୱରୂପ ରହିଥିବା ଅଧିକ ଯୁକ୍ତିଯୁକ୍ତ ମନେହୁଏ । ଗୌଡ଼ୀୟବୈଷ୍ଣବଧର୍ମ ଶୁଦ୍ଧରାଗାନୁଗାପ୍ରେମ

ଉପରେ ପ୍ରତିଷ୍ଠିତ । କିନ୍ତୁ ଉତ୍କଳୀୟ ବୈଷ୍ଣବଧର୍ମରେ ଜ୍ଞାନ, ଭକ୍ତି ଓ ଯୋଗର ସୁମଧୁର ସମନ୍ୱୟ ସଂସାଧିତ ହୋଇଅଛି । ଏଣୁ ଉଭୟ ଧର୍ମର ତତ୍ତ୍ୱ, ମନ୍ତ୍ର, ଉପାସନା, ଆରାଧନା ଓ ଭଜନ ପ୍ରଣାଳୀରେ ପାର୍ଥକ୍ୟ ରହିବା ସ୍ୱାଭାବିକ ଏବଂ ଚୈତନ୍ୟଙ୍କ ନୀଳାଚଳ ରହଣି କାଳରେ ଏ ପାର୍ଥକ୍ୟ କ୍ରମେ ସ୍ପଷ୍ଟରୁ ସ୍ପଷ୍ଟତର ହୋଇଉଠିଥିବା ସୁନିଶ୍ଚିତ । ଦିବାକର ଦାସ ଦୁଇ ଧର୍ମ ମଧ୍ୟରେ ଏହି ପ୍ରଭେଦକୁ ଅତି ମନୋଜ୍ଞଭାବରେ ବର୍ଣ୍ଣନା କରିଛନ୍ତି ।

"ବଇଧ କର୍ମ ଦୂର କଲେ । ରାଗ ମାର୍ଗେ କୃଷ୍ଣ ଭଜିଲେ ॥
ବିସ୍ତର କଲେ ତାଙ୍କ ମନ । ଭକ୍ତିରେ ବଶ ଭଗବାନ ॥
× × × ×
ଛାଡ଼ିଣ ଜଗନ୍ନାଥ ମୂର୍ତ୍ତି । ମଦନ ମୋହନେ ପୀରତି ॥
ହର ମନ୍ଦିର ତ୍ୟାଗ କଲେ । ମାଳା ତିଳକ ଆରାଧିଲେ ॥
ଛାଡ଼ି ପୁରୁଷୋତ୍ତମ ଆଶ । ବୃନ୍ଦାବନରେ କଲେ ବାସ ॥"

ଜଗନ୍ନାଥ ଦାସ ଭାଗବତ ରଚନାରେ ଶ୍ରୀମଦ୍‌ଭାଗବତର ପ୍ରଖ୍ୟାତ ଟୀକାକାର ଉତ୍କଳବାସୀ ଶ୍ରୀଧରସ୍ୱାମୀଙ୍କର 'ଭାବାର୍ଥ ଦୀପିକା'ର ଅନୁସରଣ କରିଛନ୍ତି । ଶ୍ରୀଚୈତନ୍ୟ ସ୍ୱୟଂ ଶ୍ରୀଧରସ୍ୱାମୀକୃତ ଟୀକାକୁ ଶ୍ରୀମଦ୍‌ଭାଗବତର ସର୍ବଶ୍ରେଷ୍ଠ ପ୍ରାମାଣିକ ବ୍ୟାଖ୍ୟାରୂପେ ଗ୍ରହଣ କରିଥିଲେ ହେଁ, ଶ୍ରୀମଦ୍‌ଭାଗବତର ଗୌଡ଼ୀୟ ଭାଷ୍ୟ ସମୂହରେ ଶ୍ରୀଧରସ୍ୱାମୀ କୃତ ଟୀକା ସର୍ବଥା ଗୃହୀତ ହୋଇନାହିଁ । ଏଣୁ ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ଗୌଡ଼ୀୟ ଭକ୍ତ-ମାନଙ୍କର ପୂର୍ଣ୍ଣ ସନ୍ତୋଷବିଧାନ କରିନଥିବା ସ୍ୱାଭାବିକ । ପୃଥିବୀରେ ସର୍ବଥା ଦୃଷ୍ଟ ହୁଏ ଯେ ଧର୍ମ ସଂସ୍ଥାପକ ମହାତ୍ମାଗଣ ଅତି ଚେତନାର ଊର୍ଦ୍ଧ୍ୱଲୋକରେ ରହି ଦିବ୍ୟ ଭଗବତ୍ ଭାବରେ ବିମୁଗ୍ଧ ହୁଅନ୍ତି । ଭଜନ ଆରାଧନାର ପ୍ରଣାଳୀ-ଗତ ସଂକୀର୍ଣ୍ଣ ଭେଦଭାବ ସେମାନଙ୍କର ଅନ୍ତରକୁ ସ୍ପର୍ଶ କରିପାରେ ନାହିଁ । ସ୍ଥିତି ଶରୀରର ସଂକୀର୍ଣ୍ଣତାର ଊର୍ଦ୍ଧ୍ୱକୁ ଉଠି ସେମାନେ ସର୍ବଥା ଭଗବାନଙ୍କର ଦିବ୍ୟ ପ୍ରେମଲୀଳା ସଂଦର୍ଶନ କରନ୍ତି । ଏଣୁ ସେମାନଙ୍କ ନିକଟରେ ମନ୍ତ୍ର, ଯନ୍ତ୍ର, ମାଳା, ତିଳକ ଦଣ୍ଡ-କମଣ୍ଡଳୁର ବାହ୍ୟ ଆଭରଣ ଏକାନ୍ତ ଗୌଣ ପ୍ରତିପାଦିତ ହୁଏ । କିନ୍ତୁ ତାହାଙ୍କ ଅନୁଗାମିଗଣ ସାଧାରଣତଃ ସ୍ୱ ସ୍ୱ ଗୋଷ୍ଠୀ ଅଥବା

ସମ୍ପ୍ରଦାୟର ରୀତି-ନୀତି, କ୍ରିୟା-କଳାପ ଓ ତତ୍ତ୍ୱର ସଂକୀର୍ଣ୍ଣ ଗଣ୍ଡି ମଧ୍ୟରେ ଏପରି ଆବଦ୍ଧ ହୋଇପଡ଼ନ୍ତି ଯେ, ସେମାନଙ୍କ ପକ୍ଷରେ ଅତି-ମାନସର ଊର୍ଦ୍ଧ୍ୱ-ଲୋକକୁ ଉଠି ଲୀଳାମୟ ଭଗବାନଙ୍କ ଦିବ୍ୟ ଚିନ୍ମୟ ସ୍ପର୍ଶଲାଭ ସମ୍ଭବପର ହୁଏ ନାହିଁ । ଏହି ଦୃଷ୍ଟିରୁ ବିଗ୍ଚରକଲେ ଜଗନ୍ନାଥଙ୍କ ସହିତ ଚୈତନ୍ୟଙ୍କ ନିବିଡ଼ ସଖ୍ୟଭାବ ଏବଂ ଗୌଡ଼ୀୟ ବୈଷ୍ଣବମାନଙ୍କ ସହିତ ଜଗନ୍ନାଥ ଦାସଙ୍କ ବିରୋଧ ଅତ୍ୟନ୍ତ ସ୍ୱାଭାବିକ ମନେହୁଏ ।

ଦିବାକର ଦାସଙ୍କ ଦ୍ୱାରା ବର୍ଣ୍ଣିତ ଘଟଣାର ସତ୍ୟତା ସମ୍ବନ୍ଧରେ ନିଜର ମନ୍ତବ୍ୟ ପ୍ରକାଶ କରିବାକୁ ଯାଇ "ଚୈତନ୍ୟ ଚରିତେର ଉପାଦାନ" ଗ୍ରନ୍ଥର ଲେଖକ ବିମାନ ବିହାରୀ ମଜୁମଦାର କହିଅଛନ୍ତି ଯେ, "ଗୌଡ଼ୀୟ ଭକ୍ତମାନଙ୍କ ସହିତ ଓଡ଼ିଆ ଭକ୍ତମାନଙ୍କର ଯେ ବିରୋଧ ଥିଲା ତହିଁରେ ସନ୍ଦେହ ନାହିଁ । କିନ୍ତୁ ଦିବାକର ଦାସ ଜଗନ୍ନାଥ ଦାସଙ୍କର ମାହାତ୍ମ୍ୟ ଘୋଷଣା ନିମିତ୍ତ ଯେଉଁ ଉପାଖ୍ୟାନର ଉଲ୍ଲେଖ କରିଅଛନ୍ତି, ତାହା ସତ୍ୟ ବୋଲି ଗ୍ରହଣ କରାଯାଇ ପାରେନା । କାରଣ ଶ୍ରୀଚୈତନ୍ୟଙ୍କର ଅନୁଯାୟୀଗଣ କଦାପି ଏପରି ନୀଚ ନ ଥିଲେ ଯେ ଜଣକର ପ୍ରାଧାନ୍ୟ ଦେଖି ସେମାନେ ଈର୍ଷାନ୍ୱିତ ହେବେ ।" (୧) ମୁଁ ଆଗରୁ ମତ ପ୍ରକାଶ କରିଅଛି ଯେ ଜଗନ୍ନାଥ ଦାସଙ୍କ ସହିତ ଗୌଡ଼ୀୟବୈଷ୍ଣବମାନଙ୍କର ବିରୋଧ ମୂଳରେ କୌଣସି ବ୍ୟକ୍ତିଗତ ଘୃଣା ବା ବିଦ୍ୱେଷ ନ ଥିଲା, ଏହା ମୁଖ୍ୟତଃ ଥିଲା ଏକ ନୀତିଗତ ଓ ସାମ୍ପ୍ରଦାୟିକ ଆଚାର ଅନୁଷ୍ଠାନଗତ ପ୍ରଶ୍ନ । ସାଂପ୍ରଦାୟିକ ସଂକୀର୍ଣ୍ଣତା ସବୁ ଦେଶରେ ଓ ସବୁ କାଳରେ ଦୃଷ୍ଟ ହୁଏ । ପୃଥିବୀର କୌଣସି ଧର୍ମ ଏଥିରୁ ମୁକ୍ତ ନୁହେଁ । ତେଣୁ ଦିବାକର ଦାସଙ୍କ ଦ୍ୱାରା ବର୍ଣ୍ଣିତ ଘଟଣାର ଐତିହାସିକ ସତ୍ୟତା ସମ୍ବନ୍ଧରେ ସନ୍ଦେହର ଅବକାଶ ନାହିଁ । ଦିବାକର ଦାସଙ୍କ ନିଜ ଉକ୍ତି ଏହାର ସବୁଠାରୁ ବଳିଷ୍ଠ ପ୍ରମାଣ—

"ଖଳ ଲୋକଙ୍କ ଡରେ ମୁହିଁ । ଗ୍ରନ୍ଥରୁ ଅଳପ ଲେଖଇ ॥
କରନ୍ତି ବିଶେଷେ ବର୍ଣ୍ଣନ । ଗ୍ରନ୍ଥେ ରହିଲା ଭାବମାନ ॥"

[ଜ. ଚ. ୩ୟ ଅଧ୍ୟାୟ]

(୧) ଚୈତନ୍ୟ ଚରିତେର ଉପାଦାନ—୫୩୭ ପୃଃ ।

ଏହା ବ୍ୟତୀତ ନିମ୍ନଲିଖିତ କେତେକ ପାରିପାର୍ଶ୍ୱିକ ଘଟନାବଳୀ ଦ୍ୱାରା ଦାସଙ୍କ ଉକ୍ତିର ସତ୍ୟତା ପ୍ରତିପାଦନରେ ସହାୟକ ମନେହୁଏ ।

(୧) ଶ୍ରୀ ଚୈତନ୍ୟଙ୍କର ପୁରୁଷୋତ୍ତମ ଲୀଳା କାଳରେ ଜଗନ୍ନାଥାଦି ଉତ୍କଳୀୟ ବୈଷ୍ଣବଗଣ ଯେ ତାଙ୍କର ଘନିଷ୍ଠ ସଂସ୍ରବରେ ଆସିଥିଲେ ଓ ତାହାଙ୍କର ଅନ୍ତରଙ୍ଗ ସଖା ଓ ଲୀଳାପରିକର ହେବାର ସୁଯୋଗ ଲାଭ କରିଥିଲେ ଏଥିରେ ସନ୍ଦେହ ନାହିଁ । ପଞ୍ଚସଖା 'ତଥା ଅନ୍ୟାନ୍ୟ ଉତ୍କଳୀୟ ବୈଷ୍ଣବମାନଙ୍କଦ୍ୱାରା ରଚିତ ଗ୍ରନ୍ଥମାନଙ୍କରେ ଏହାର ବହୁଳ ବର୍ଣ୍ଣନା ଦୃଷ୍ଟ ହୁଏ । ଅଥଚ ବଙ୍ଗୀୟ ତଥା ଉତ୍କଳବାସୀ ଗୌଡ଼ୀୟ ବୈଷ୍ଣବମାନଙ୍କ ଦ୍ୱାରା ପ୍ରଣିତ ଚୈତନ୍ୟ ଚରିତ ଗ୍ରନ୍ଥମାନଙ୍କରେ ସେମାନଙ୍କର ନାମୋଲ୍ଲେଖ ପର୍ଯ୍ୟନ୍ତ ଦୃଷ୍ଟ ହୁଏନାହିଁ, ଅଥଚ ଏହିପରି ବହୁ ଗୌଡ଼ୀୟ ମତାବଲମ୍ବୀ ଉତ୍କଳୀୟ-ମାନଙ୍କର ନାମୋଲ୍ଲେଖ ଅଛି, ଯେଉଁମାନଙ୍କର ଓଡ଼ିଆ ସାହିତ୍ୟ ବା ସଂସ୍କୃତିକୁ କୌଣସି ଦାନ ନାହିଁ । ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ, ଚୈତନ୍ୟଙ୍କର ଉତ୍କଳୀୟ ତଥା ଗୌଡ଼ୀୟ ଅନୁଗାମୀମାନଙ୍କ ମଧ୍ୟରେ ସାମ୍ପ୍ରଦାୟିକ ସଂକୀର୍ଣ୍ଣତା ପ୍ରବେଶକରିଥିଲା ।

(୨) ଶ୍ରୀଚୈତନ୍ୟ ନୀଳାଚଳକୁ ସ୍ୱୀୟ ସାଧନାର ତପୋଭୂମି ରୂପେ ବାଛିନେଇ ଜୀବନରେ ଦୀର୍ଘ ଅଠର ବର୍ଷ କାଳ ସେଠାରେ ଅତିବାହିତ କରିଥିଲେ ଏବଂ ଅବଶେଷରେ ନୀଳାଚଳର ପୁଣ୍ୟଭୂମିରେ ନିଜର ଇହଲୀଳା ସାଙ୍ଗ କରିଥିଲେ । ଏହା ଯେ ସେ କେବଳ ମାତାଙ୍କ ଅନୁରୋଧରେ କରିଥିଲେ ତାହା ନୁହେଁ, ଜଗନ୍ନାଥ ଧାମ ପ୍ରତି ତାଙ୍କର ଅସୀମ ଶ୍ରଦ୍ଧା ଥିଲା ଏବଂ ଜଗତର ନାଥ ଜଗନ୍ନାଥଙ୍କୁ ସେ ଆପଣା ହୃଦୟର ସ୍ୱାମୀ ରୂପେ ବରଣ କରି ନେଇଥିଲେ । ତାହାଙ୍କ ରଚିତ 'ଜଗନ୍ନାଥାଷ୍ଟକ' ଏହାର ଜ୍ୱଳନ୍ତ ନିଦର୍ଶନ । ଅଥଚ ବୈଷ୍ଣବଧର୍ମର ପ୍ରାମାଣିକ ଗ୍ରନ୍ଥମାନଙ୍କରେ ପୁରୁଷୋତ୍ତମ ଧାମର ପ୍ରାଧାନ୍ୟ ସ୍ୱୀକୃତ ହୋଇନାହିଁ ।

(୩) ଜଗନ୍ନାଥ ଦାସଙ୍କର ଶ୍ରୀଚୈତନ୍ୟଙ୍କ ସହିତ ପ୍ରଗାଢ଼ ବନ୍ଧୁତା ଥିଲେ ମଧ୍ୟ ନିଜର ଧର୍ମବିଶ୍ୱାସ, ପରମ୍ପରା ଓ ଆଗ୍ରହ ବିଷୟରେ ସେ ଅଟଳ ଥିଲେ । ତାହାଙ୍କ ମନ୍ତ୍ର ଗ୍ରହଣ ଘଟଣା ଏହାର ଏକ ଉଜ୍ଜ୍ୱଳ ନିଦର୍ଶନ ।

କିନ୍ତୁ ଚୈତନ୍ୟ ଯଥାର୍ଥ ତତ୍ତ୍ୱର ଗ୍ରାହକ ଥିଲେ । ବାହ୍ୟ ଆଗ୍ରହ, ଅନୁଷ୍ଠାନ ଅପେକ୍ଷା ଅନ୍ତରର ନିଷ୍ଠା ଓ ହୃଦୟର ଭକ୍ତିମତ୍ତା ଉପରେ ସେ ଅଧିକ ଗୁରୁତ୍ୱ ଆରୋପ କରୁଥିଲେ । ଉଭୟ ପରମ ଭକ୍ତ ଓ ଅତ୍ୟଧିକ ଭାବପ୍ରବଣ ଥିଲେ । କିନ୍ତୁ ଚୈତନ୍ୟଙ୍କର ଗୌଡ଼ୀୟ ଅନୁଗାମୀମାନଙ୍କଠାରୁ ଏ ପ୍ରକାର ଉଦାରତା ଆଶା କରିବା ସମ୍ଭବପର ନୁହେଁ । ଏହି ପରିପ୍ରେକ୍ଷୀରେ ବିଗ୍ଭରକଲେ ଜଗନ୍ନାଥ ଦାସଙ୍କ ସହିତ ସେମାନଙ୍କର ବିରୋଧ ସ୍ୱାଭାବିକ ଓ ଯୁକ୍ତିଯୁକ୍ତ ବୋଧହୁଏ ।

(୪) ଶଙ୍କର ମତାବଲମ୍ବୀ ଭକ୍ତବର ଶ୍ରୀଧରସ୍ୱାମୀକୃତ ଶ୍ରୀମଦ୍‌ଭାଗବତର ଟୀକା 'ଭାବାର୍ଥଦୀପିକା'କୁ ଶ୍ରୀଚୈତନ୍ୟ ଭାଗବତର ଏକମାତ୍ର ପ୍ରାମାଣିକ ଟୀକା ରୂପରେ ଗ୍ରହଣ କରୁଥିଲେ ଏବଂ ଶ୍ରୀମଦ୍‌ଭାଗବତର ବ୍ୟାଖ୍ୟାରେ ଏହି ଟୀକାର କୌଣସି ପ୍ରକାର ବ୍ୟତିକ୍ରମ ତାଙ୍କ ପକ୍ଷରେ ଗ୍ରହଣୀୟ ହେଉନଥିଲା । ଜଗନ୍ନାଥ ଦାସଙ୍କ ଭାଗବତ ଶ୍ରୀଧରସ୍ୱାମୀଙ୍କ ଟୀକା ଉପରେ ଆଧାରିତ ହୋଇ-ଥିବାରୁ ଶ୍ରୀଚୈତନ୍ୟ ପରମ ଆଗ୍ରହର ସହିତ ଜଗନ୍ନାଥ ଦାସଙ୍କ କଣ୍ଠନିଃସୃତ ଭାଗବତର ଅମୃତପଦାବଳୀ ଶ୍ରବଣ କରୁଥିଲେ । ଅଥଚ ଚୈତନ୍ୟଙ୍କର ଅନୁଗାମୀ ଗୌଡ଼ୀୟ ବୈଷ୍ଣବଗଣ ଜଗନ୍ନାଥ ଦାସଙ୍କୁ ମାୟାବାଦୀ ବୋଲି ତିରସ୍କାର କରିବାକୁ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ***

# ତୃତୀୟ ଅଧ୍ୟାୟ

## ପ୍ରଭାବ ଓ ପ୍ରତିଷ୍ଠା

**ସମ୍ମାନପ୍ରାପ୍ତି :**

ମହାତ୍ମା ଜଗନ୍ନାଥ ଦାସ ନିଜର ଅସାଧାରଣ ପାଣ୍ଡିତ୍ୟ ଓ କବିତ୍ୱ ଯୋଗୁଁ ଲୋକରେ ପ୍ରତିଷ୍ଠା ଲାଭକରିଥିଲେ । ତାହାଙ୍କଠାରୁ ଭାଗବତର କାନ୍ତକୋମଳ ଅମୃତପଦାବଳୀ ଶ୍ରବଣ କରିବା ନିମିତ୍ତ ସହସ୍ର ସହସ୍ର ନରନାରୀ ପୁରୀ ମନ୍ଦିର ପ୍ରାଙ୍ଗଣସ୍ଥ ବଟଗଣେଶଙ୍କ ନିକଟରେ ସମବେତ ହେଉଥିଲେ । ଚୈତନ୍ୟ ଥିଲେ ଗୁଣର ଚନ୍ଦ୍ରିକା, ଗ୍ରାହକ ଏବଂ ପ୍ରତିଭାର ସୁଯୋଗ୍ୟ ଉପାସକ । ଜଗନ୍ନାଥଙ୍କ ଚରିତ୍ରର ମହନୀୟତା ହୃଦୟଙ୍ଗମ କରି ସେ ତାଙ୍କୁ "ଅତିବଡ଼" ପଦବୀରେ ଭୂଷିତ କଲେ । ଏହି ଘଟଣାରେ ଜଗନ୍ନାଥଙ୍କ ମହିମା ଦିଗ୍‌ଦିଗରେ ବିସ୍ତୃତ ହୋଇଗଲା । ପରମଭକ୍ତ ଉତ୍କଳାଧିପତି ମହାରାଜା ପ୍ରତାପରୁଦ୍ର ଦେବ ମଧ୍ୟ ତାହାଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କଲେ ।

"ଶ୍ରୀ ଅତି ବଡ଼ ଗୋସାଇଁର । କୀର୍ତ୍ତି ବଢ଼ିଲା ସଂସାର ॥
ସର୍ବେ ଜାଣିଲେ ତାଙ୍କ କଥା । ପ୍ରେମ ଭକ୍ତିରେ ସାମରଥା ॥
ପ୍ରଭୁ ଚୈତନ୍ୟ ଆଜ୍ଞା କଲେ । ରାଜା 'ଅତି ବଡ଼' ବୋଇଲେ ॥
ଶ୍ରୀ ଅତି ବଡ଼ ବୋଲି ବାଣୀ । ରାଜ୍ୟେ ସମସ୍ତ ମୁଖୁଁ ଶୁଣି ॥
କୀର୍ତ୍ତି ବଢ଼ିଲା ଦେଶାନ୍ତର । ସିତ ପକ୍ଷେ ଅସିତ କର ॥"

[ଜ. ଚ.—ଦ୍ୱାଦଶ ଅଧ୍ୟାୟ]

ଦିନେ ମହାରାଜା ପ୍ରତାପରୁଦ୍ର ଜଗନ୍ନାଥ ମନ୍ଦିରକୁ ଯାଇଅଛନ୍ତି । ଏହି ସମୟରେ ଚୈତନ୍ୟଙ୍କ ସଙ୍ଗେ ତାଙ୍କର ସାକ୍ଷାତ ହେଲା । ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିରେ ରାଧାକୃଷ୍ଣ ଯୁଗଳମୂର୍ତ୍ତି ବା ବ୍ରଜଭାବର ବ୍ୟାଖ୍ୟା କରିବାପାଇଁ ରାଜା ଅନୁରୋଧ କରନ୍ତେ ଶ୍ରୀଚୈତନ୍ୟ ଭକ୍ତାଗ୍ରଣୀ 'ଅତିବଡ଼' ଜଗନ୍ନାଥ ଦାସଙ୍କୁ

ତାହା ଉତ୍ତମରୂପେ ବୁଝାଇ ଦେବାପାଇଁ ନିର୍ଦ୍ଦେଶ କଲେ । ତଦନୁଯାୟୀ ଜଗନ୍ନାଥ ରାଜାଙ୍କୁ ପୁରୁଷୋତ୍ତମଧାମର ଶ୍ରେଷ୍ଠତା, ଜଗନ୍ନାଥ ମୂର୍ତ୍ତିରେ ମନ୍ତ୍ରରାଜ ମହାମନ୍ତ୍ର ଓ ରାଧାକୃଷ୍ଣ ଯୁଗଳଭାବ ବିଶଦଭାବେ ବୁଝାଇ ଦେଇଥିଲେ । ସେହିଦିନଠାରୁ ମହାରାଜା ପ୍ରତାପରୁଦ୍ରଦେବ ଜଗନ୍ନାଥ ଦାସଙ୍କୁ ଗୁରୁତୁଲ୍ୟ ଗ୍ରହଣ କରି ତାହାଙ୍କ ଯଶ ଗାନ କରିବାକୁ ଲାଗିଲେ ।

"ଏମନ୍ତ ଶୁଣି ନୃପବର । ନମିଲା ସ୍ୱାମୀଙ୍କ ପୟର ॥
ବହୁତ ସ୍ତୁତି ଗାନ କଲା । କୃତାର୍ଥ ହୋଇଲି ବୋଇଲା ॥
କହିଲ ଭକ୍ତି ନିରୂପଣ । ମୋତେ ହେଁ ପ୍ରେମେ କଲପୂର୍ଣ୍ଣ ॥"

[ଜ. ଚ. ଦ୍ୱାଦଶ ଅଧ୍ୟାୟ]

ଏହି ଘଟଣାରେ ମହାରାଜା ପ୍ରତାପରୁଦ୍ରଦେବ ପରମସନ୍ତୋଷ ଲାଭ କରି ତାହାଙ୍କ ପଞ୍ଚମହର୍ଷୀଙ୍କ ସାମୟିକ ଅବସ୍ଥାନ ନିମିତ୍ତ ପୁରୀ ବଡ଼ଦେଉଳର ପଶ୍ଚାଦ୍‌ଭାଗରେ ଯେଉଁ ଆବାସ ନିର୍ମିତ ହୋଇଥିଲା ସେଥିରେ ରହିବାପାଇଁ ଦାସଙ୍କୁ ଅନୁରୋଧ କଲେ । ଦାସେ ମହାରାଜାଙ୍କ ଅନୁରୋଧ ରକ୍ଷାକରି ସେଠାରେ କିଛୁକାଳ ଅବସ୍ଥାନ କରିଥିଲେ । ବର୍ତ୍ତମାନ ସେହି ସ୍ଥାନଟି ଓଡ଼ିଆ ମଠ ବା ସ୍ୱାମୀ ମଠ ନାମରେ ପରିଚିତ । କିନ୍ତୁ ସେହି ସ୍ଥାନଟି ଲୋକାରଣ୍ୟ ଥିବାରୁ ତାଙ୍କର ଧ୍ୟାନ ଓ ଦେବାରାଧନାରେ ବ୍ୟାଘାତ ଘଟିଲା । ତେଣୁ ସେ ସମୁଦ୍ର ତୀରବର୍ତ୍ତୀ ଏକ ନିରୋଳା ସ୍ଥାନରେ ଭଜନ କୁଟୀର ସ୍ଥାପନକରି ସେଠାରେ ବାସ କରିବାକୁ ଲାଗିଲେ । ବର୍ତ୍ତମାନ ସେହି ମଠ ସାତଲହଡ଼ିମଠ ନାମରେ ପରିଚିତ । କଥିତ ଅଛି ସମୁଦ୍ର ଲହଡ଼ିର ଘୋର ଗର୍ଜନରେ ଅତିବଡ଼ି ସ୍ୱାମୀଙ୍କ ଭଜନ-ଆରାଧନାରେ ବ୍ୟାଘାତ ଘଟିବାରୁ ସେ ଜଗନ୍ନାଥ ମହାପ୍ରଭୁଙ୍କୁ ପ୍ରାର୍ଥନା କରିଥିଲେ । ପ୍ରଭୁଙ୍କ ଆଜ୍ଞାରେ ସମୁଦ୍ର ସାତଲହଡ଼ି ପଛକୁ ଘୁଞ୍ଚି ଯାଇଥିଲା, ତେଣୁ ଉକ୍ତ ମଠର ନାମକରଣ ଏପରି ହୋଇଅଛି ।

'ନିତ୍ୟଗୁପ୍ତ ମଣି'ରେ ବର୍ଣ୍ଣିତ ହୋଇଅଛି ଯେ, ମହାରାଜା ପ୍ରତାପରୁଦ୍ରଦେବ ତାହାଙ୍କ ପଞ୍ଚମହର୍ଷୀ ଗୌରୀ ଦେଈଙ୍କୁ ଦୀକ୍ଷା ପ୍ରଦାନ କରିବା ନିମିତ୍ତ ଶ୍ରୀଚୈତନ୍ୟଙ୍କୁ ଅନୁରୋଧ କରିଥିଲେ । ଶ୍ରୀଚୈତନ୍ୟ ଏଥିପାଇଁ ଜଗନ୍ନାଥଙ୍କୁ ଏକମାତ୍ର ଉପଯୁକ୍ତ ବ୍ୟକ୍ତି ବୋଲି ବିଚାରି ମହାରାଣୀଙ୍କୁ ଦୀକ୍ଷା ପ୍ରଦାନ କରିବା

ପାଇଁ ତାହାଙ୍କୁ ଆଦେଶ ଦେଲେ । ତଦନୁଯାୟୀ ପାଟରାଣୀ ଗୌରୀ ଦେବୀ ଜଗନ୍ନାଥ ଦାସଙ୍କଠାରୁ ଦୀକ୍ଷା ଗ୍ରହଣକଲେ । ଗୌରୀ ଦେବୀ ଜଗନ୍ନାଥ ଦାସଙ୍କ ଷୋଡ଼ଶ ଶିଷ୍ୟମାନଙ୍କ ମଧ୍ୟରେ ଅନ୍ୟତମା ଅଟନ୍ତି । ଈଶ୍ୱର ଦାସଙ୍କ ଚୈତନ୍ୟ ଭାଗବତରେ ଏହି ବିଷୟ କିଞ୍ଚିତ ଭିନ୍ନଭାବରେ ବର୍ଣ୍ଣିତ ହୋଇଅଛି । ସେଥିରେ ବର୍ଣ୍ଣିତ ଅଛି ଯେ ପରମ ବୈଷ୍ଣବୀ ସୀତା ଠାକୁରାଣୀଙ୍କ ନିର୍ଦ୍ଦେଶରେ ଶ୍ରୀଚୈତନ୍ୟଙ୍କ ସମର୍ଥନ କ୍ରମେ ଜଗନ୍ନାଥ ଦାସ ପ୍ରତାପରୁଦ୍ର ଦେବଙ୍କ ମହାରାଣୀ ଭାନୁମତୀ ଓ ଅନ୍ୟ ବତିଶ ଜଣ ରାଣୀଙ୍କୁ ଦୀକ୍ଷାପ୍ରଦାନ କରିଥିଲେ । ପ୍ରତାପରୁଦ୍ର ଦେବଙ୍କ ଏକାଧିକ ପତ୍ନୀ ଥିବା ବିଷୟ ଇତିହାସରୁ ଜଣାଯାଏ । ତେଣୁ 'ନିତ୍ୟଗୁପ୍ତମଣି' ଓ 'ଚୈତନ୍ୟ ଭାଗବତ'ରେ ବର୍ଣ୍ଣିତ ଉଭୟ ଘଟଣା ସତ୍ୟ ଉପରେ ପ୍ରତିଷ୍ଠିତ ହୋଇଥିବା ସମ୍ଭବପର ।

"ଶୁଣିଣ ଜଗନ୍ନାଥ ଦାସ । ଭାନୁମତୀଙ୍କ ଉପଦେଶ ॥
ହେଥୁ ଚଳିଲେ ମହାରାଣୀ । କର୍ଣ୍ଣେଣ ମହାମନ୍ତ୍ର ଶୁଣି ॥"
[ଚୈ. ଭା.]

ପ୍ରାଚୀନ କାଳରେ ପୁରୀ ଭାରତୀୟ ସଂସ୍କୃତି ଓ ବିଦ୍ୟାଚର୍ଚ୍ଚାର କେନ୍ଦ୍ରରୂପେ ବିଶେଷ ପ୍ରତିଷ୍ଠା ଲାଭକରିଥିଲା । ତେଣୁ ଦେଶଦେଶାନ୍ତରରୁ ବହୁ ସନ୍ନ୍ୟାସୀ, ଧର୍ମପ୍ରଚାରକ, ପଣ୍ଡିତ ଓ ଦାର୍ଶନିକ ସ୍ୱ ସ୍ୱ ପାଣ୍ଡିତ୍ୟ ଓ ବିଦ୍ୱତ୍ତାର ପରାକାଷ୍ଠା ପ୍ରଦର୍ଶନ ନିମିତ୍ତ ପୁରୀଧାମକୁ ଆଗମନ କରୁଥିଲେ । ଥରେ ବ୍ରହ୍ମାନନ୍ଦ ନାମକ ଜଣେ ଦିଗ୍ବିଜୟୀ ପଣ୍ଡିତ ଶତଶିଷ୍ୟ-ପରିବେଷ୍ଟିତ ହୋଇ ଶ୍ରୀକ୍ଷେତ୍ରରେ ପହଞ୍ଚିଲେ । ତାଙ୍କ ହସ୍ତରେ ଗୋଟିଏ ତ୍ରିକୋଣାକାର ଛତ୍ର ଥାଏ । ବ୍ରହ୍ମାନନ୍ଦ ବ୍ରହ୍ମତତ୍ତ୍ୱରେ ମହାନ ପଣ୍ଡିତ । ସେ ରାଜାଙ୍କ ଦରବାରରେ ଉପସ୍ଥିତ ହୋଇ କହିଲେ, "ମହାରାଜ, ଆପଣ ପଣ୍ଡିତମାନଙ୍କୁ ଆଦେଶ କରନ୍ତୁ, ସେମାନେ ମୋ ସଙ୍ଗେ ତର୍କ କରିବେ । ମୋତେ ସେମାନେ ବ୍ରହ୍ମତତ୍ତ୍ୱର ଆଲୋଚନାରେ ପରାସ୍ତ କରିପାରିଲେ ମୁଁ ଆପଣଙ୍କଠାରୁ ଭିକ୍ଷା ଗ୍ରହଣକରିବି । ନୋହିଲେ ଚତୁଷ୍କୋଣ ଛତ୍ର ଦେଇ ଦେଶାନ୍ତର ଗମନ କରିବି ।" କିନ୍ତୁ ବ୍ରହ୍ମାନନ୍ଦଙ୍କ ପାଣ୍ଡିତ୍ୟରେ ଭୀତ ଚକିତହୋଇ ପୁରୀର ପଣ୍ଡିତଗଣ ତାଙ୍କର ସମ୍ମୁଖୀନ ହେବାକୁ ଆଗଭର ହେଲେନାହିଁ । ରାଜାଙ୍କର

ଖେଳେଣି ପଡ଼ିଲା । ଏତିକି ବେଳେ ମହାତ୍ମା ଜଗନ୍ନାଥ ଦାସ ପଣ୍ଡିତଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ତାହାଙ୍କୁ ତର୍କରେ ପ୍ରବୃତ୍ତ ହେବାପାଇଁ ଆହ୍ୱାନ କଲେ । ସନ୍ନ୍ୟାସୀ ଜଗନ୍ନାଥ ଦାସଙ୍କୁ ବ୍ରହ୍ମର ସ୍ୱରୂପ ସମ୍ବନ୍ଧରେ ବହୁ ଜଟିଳ ପ୍ରଶ୍ନ କଲେ । ଜଗନ୍ନାଥ ଦାସ ପ୍ରଶ୍ନମାନ ଶୁଣି ଯଥାଯଥ ଉତ୍ତର ପ୍ରଦାନ କରି ନିରୁପିତା ଅଦ୍ୱୈତବାଦ ଖଣ୍ଡନ ପୂର୍ବକ ଜ୍ଞାନମିଶ୍ରା ଭକ୍ତିବାଦର ଶ୍ରେଷ୍ଠତା ପ୍ରତିପାଦନ କଲେ । ସନ୍ନ୍ୟାସୀ ଜଗନ୍ନାଥ ଦାସଙ୍କର ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତାଙ୍କ ମସ୍ତକରେ ଗୋଟିଏ ଦିବ୍ୟ ପତନ ବାନ୍ଧି ଦେଲେ ।

"ଦିବ୍ୟ ପତନ ଯେନ କରେ । ବାନ୍ଧିଲେ ସ୍ୱାମୀଙ୍କର ଶିରେ ॥
ତୁ ଅତିବଡ଼ ଜଗନ୍ନାଥ । ଦାସଯୋଗ୍ୟ ବଡ଼ ପଣ୍ଡିତ ॥
ଗୃହିଁଣ ରାଜାର ବଚନ । ବୋଇଲେ ରାଜା ତୁହେ ଧନ୍ୟ ॥
ସନ୍ନ୍ୟାଳକୁ ଦିବ୍ୟ ବୈଷ୍ଣବ । ପଣ୍ଡିତ ପ[illegible]ଣ ଭକ୍ତିଭାବ ॥
ଭିକ୍ଷା କରିଣ ରହିଲେ । ସନ୍ତୋଷେ ଜମ୍ବେଶ୍ୱର ଗଲେ ॥"

[ଜ· ଚ.]

ଏହି ଘଟଣା ଫଳରେ ଅତିବଡ଼ ସ୍ୱାମୀଙ୍କର ଖ୍ୟାତି ଦୂରଦୂରାନ୍ତକୁ ବ୍ୟାପିଗଲା ଏବଂ ବହୁତ ଲୋକ ତାଙ୍କଠାରୁ ଦୀକ୍ଷା ଗ୍ରହଣ କରିବା ପାଇଁ ମନ-ବଳାଇଲେ ।

**ସଂଘର୍ଷ ଓ ଶତ୍ରୁତା**—ସାଧନାର ପଥ ଚିରକଣ୍ଟକିତ । ଯେଉଁ ପ୍ରତିଭାଶାଳୀ ମହାତ୍ମାଗଣ ଜୀବନ ପଣ କରି ଜଗତର ଅଶେଷ କଲ୍ୟାଣ ସାଧନ କରନ୍ତି ସେମାନେ ହୁଅନ୍ତି କଷ୍ଟ ଭର୍ତ୍ସନା ଓ ସୁତୀକ୍ଷ୍ଣ ସମାଲୋଚନାର ଶରବ୍ୟ ଇତିହାସରେ ଏହାର ବହୁଳ ଦୃଷ୍ଟାନ୍ତ ବିଦ୍ୟମାନ । ବୁଦ୍ଧ, ଯୀଶୁ, ମହମ୍ମଦ, ଶଙ୍କର ଆଦି ମହାପୁରୁଷମାନଙ୍କର ଜୀବନର ଘଟଣାବଳୀ ଏହାର ଜ୍ୱଳନ୍ତ ନିଦର୍ଶନ । ମହାତ୍ମା ଜଗନ୍ନାଥ ଦାସଙ୍କର ଜୀବନରେ ଏହାର ବ୍ୟତିକ୍ରମ ହୋଇନଥିଲା । ଜନସମାଜରେ ତାହାଙ୍କର କ୍ରମବର୍ଦ୍ଧମାନ ପ୍ରତିପତ୍ତି ଓ ପ୍ରତିଷ୍ଠା ହେତୁ ସେ କେତେକ ନୀଚମନା ଓ ସ୍ୱାର୍ଥପରାୟଣ ଲୋକଙ୍କର ଚକ୍ଷୁଶୂଳ ହୋଇଥିଲେ । ପ୍ରଥମତଃ ଜଗନ୍ନାଥ ମନ୍ଦିରରେ ପୁରାଣପାଠ ହେତୁ ସେ ଅନ୍ୟାନ୍ୟ ପୁରାଣପଣ୍ଡାମାନଙ୍କର ବିରାଗଭାଜନ ହୋଇଥିଲେ । ତାଙ୍କର

ପୁରାଣପାଠ ଗୀତ ଅତ୍ୟନ୍ତ ମଧୁର ଓ ମନୋଜ୍ଞ ଥିଲା । ପୁନଶ୍ଚ ଦକ୍ଷିଣା ପାଇବା ଲାଗି ଶ୍ରୋତାମାନଙ୍କଠାରେ ତାଙ୍କର କୌଣସି ଆଶା ବା ଆକାଂକ୍ଷା ନଥିଲା । ତେଣୁ ପୁରାଣ ଶୁଣିବାପାଇଁ ଧର୍ମପ୍ରାଣ ସହସ୍ର ସହସ୍ର ନରନାରୀ ସ୍ୱେଚ୍ଛାରେ ତାଙ୍କ ନିକଟରେ ଉପସ୍ଥିତ ହେଉଥିଲେ । ଏଥିରେ ପୁରାଣପଣ୍ଡାମାନଙ୍କର କୌଳିକ ବୃତ୍ତିରେ ବାଧାପଡ଼ିବାରୁ ସେମାନେ ଜଗନ୍ନାଥ ଦାସଙ୍କ ପ୍ରତି ଘୋର ଈର୍ଷାନ୍ୱିତ ହୋଇଥିଲେ ।

ଦ୍ୱିତୀୟରେ ପ୍ରାକୃତ ଭାଷାରେ ଭାଗବତ ରଚନା କରି ସେ ସଂସ୍କୃତଜ୍ଞ ପଣ୍ଡିତମାନଙ୍କର ଅସୂୟା ଓ ଅଶ୍ରଦ୍ଧାର କାରଣ ହୋଇଥିଲେ । ଏକେତ ସେ କାଳରେ ସଂସ୍କୃତଜ୍ଞ ପଣ୍ଡିତମାନଙ୍କର ପ୍ରାକୃତ ଓ ଦେଶୀୟ ଭାଷା ପ୍ରତି ଏକ ପ୍ରକାର ବିଦ୍ୱେଷ ଓ ଘୃଣାଭାବ ଥିଲା ଏବଂ ପ୍ରତିଷ୍ଠିତ ପରମ୍ପରା ବିରୁଦ୍ଧରେ ସଂଗ୍ରାମ କରି ଯେଉଁମାନେ ପ୍ରାକୃତ ଭାଷାରେ ରଚନା କରୁଥିଲେ ସେମାନଙ୍କୁ କଠୋର ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ୁଥିଲା । ସାରଳା ଦାସ, ବଳରାମ ଦାସ ପ୍ରଭୃତି ମହାତ୍ମାଗଣ ଏହି କାରଣରୁ ସଂସ୍କୃତଜ୍ଞ ପଣ୍ଡିତମାନଙ୍କର କୁଦୃଷ୍ଟିରେ ପଡ଼ିଥିଲେ । ମହାତ୍ମା ତୁଳସୀ ଦାସଙ୍କର କାହାଣୀତ ସର୍ବଜନ ବିଦିତ । ଜଗନ୍ନାଥ ଦାସଙ୍କ ରଚିତ ଶ୍ରୀମଦ୍‌ଭାଗବତର କ୍ରମବର୍ଦ୍ଧିଷ୍ଣୁ ଜନପ୍ରିୟତା ପଣ୍ଡିତମାନଙ୍କର ଈର୍ଷାନଳରେ ଇନ୍ଧନ ଯୋଗକରିଥିଲା । ସେମାନେ ଜଗନ୍ନାଥ ଦାସଙ୍କର ଖ୍ୟାତି ଓ ପ୍ରତିପତ୍ତିରେ ଅତ୍ୟନ୍ତ ଉତ୍‌କ୍ଷିପ୍ତ ହୋଇ ପ୍ରତିଶୋଧର ପ୍ରତୀକ୍ଷାରେ ରହିଥିଲେ ।

ଓଡ଼ିଆ ଭଗବତର ରଚନା ତତ୍‌କାଳୀନ ସମାଜରେ କିପରି ଚମତ୍କାରପ୍ରଦ ପ୍ରଭାବ ବିସ୍ତାର କରିବାରେ ସମର୍ଥ ହୋଇଥିଲା ଏବଂ କିପରି ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଆବାଳବୃଦ୍ଧବନିତା ପ୍ରତ୍ୟେକ ବ୍ୟକ୍ତି ସମକ୍ଷରେ ଚିରଆକାଂକ୍ଷିତ ମୋକ୍ଷର ଦ୍ୱାର ଉନ୍ମୁକ୍ତ କରିଦେଇଥିଲା, ତାହା ରାମଦାସଙ୍କ ରଚିତ "ଦାର୍ଢ୍ୟତାଭକ୍ତି ରସାମୃତ" ଗ୍ରନ୍ଥରୁ ଉଦ୍ଧୃତ ନିମ୍ନୋକ୍ତ ପଂକ୍ତିସମୂହରୁ ସ୍ପଷ୍ଟ ସୂଚିତ ହୁଏ ।

"ଶ୍ରୀଭାଗବତ ଯେ ପୁରାଣ । ଯେ ଅଟଇ କଠିନୁ କଠିନ ॥
ପ୍ରାକୃତବନ୍ଧେ କଲେ ଗୀତ । ଯେ ପୁଣ୍ୟମୟ ଭାଗବତ ॥

ପ୍ରାଣୀଙ୍କ ଚିତ୍ତ କରି ଚୋରି । ବାଢ଼ିଲେ ମୁକତି ପସରି ॥
ଗମ୍ଭୀର ମଧୁର କୋମଳ । ସାଧୁଙ୍କ ଶ୍ରବଣ ମଙ୍ଗଳ ॥
ତାହା ଶୁଣିଣ ପ୍ରାଣୀମାନେ । ଅତି ଆନନ୍ଦ ହୋଇ ମନେ ॥
ସ୍ତ୍ରୀଯେ ପୁରୁଷ ବାଳ ବୃଦ୍ଧ । ସମସ୍ତେ ଶୁଣି ହେଲେ ଶୁଦ୍ଧ ॥"

[ଦା.ଭ.ର]

ଏହି ଘଟନାରେ କେତେକ ଖଳଲୋକ ଅସନ୍ତୁଷ୍ଟ ହୋଇଉଠିଲେ । ସେମାନେ ପ୍ରତିତପ୍ରଜ୍ଞ, ଆଜନ୍ମ ବ୍ରହ୍ମଚାରୀ ଜଗନ୍ନାଥଙ୍କ ଚରିତ୍ରରେ ମିଥ୍ୟା କଳଙ୍କ ଆରୋପ କରିବାପାଇଁ ପଶ୍ଚାଦ୍‌ପଦ ହେଲେନାହିଁ । ସେମାନଙ୍କ ଅଭିଯୋଗ କ୍ରମେ ରାଜା ଜଗନ୍ନାଥ ଦାସଙ୍କୁ ବାନ୍ଧିନେଇ କାରାଗାରରେ ନିକ୍ଷେପକଲେ । କିନ୍ତୁ ଅବଶେଷରେ ସତ୍ୟର ଜୟହେଲା । ରାଜା, ଜଗନ୍ନାଥ ଦାସଙ୍କ ଅସାମାନ୍ୟ ଧର୍ମପ୍ରାଣତା ଓ ଶୁଦ୍ଧ ଚରିତ୍ରବତ୍ତାର ଚାକ୍ଷୁଷ ପ୍ରମାଣ ପାଇ ସ୍ୱକୃତ ଅପରାଧ ନିମିତ୍ତ ଘୋର ପଶ୍ଚାତ୍ତାପ କଲେ । ସେ ଅବିଳମ୍ବେ ମହାତ୍ମା ଜଗନ୍ନାଥ ଦାସଙ୍କୁ ମୁକ୍ତି ପ୍ରଦାନକରି ତାହାଙ୍କଠାରେ କ୍ଷମାଭିକ୍ଷା କରିଥିଲେ । "ଦାର୍ଢ଼୍ୟତାଭକ୍ତି ରସାମୃତ"ର ରଚୟିତା ରାମଦାସ ଏହି ପ୍ରସଙ୍ଗଟିକୁ ଅତ୍ୟନ୍ତ ମନୋଜ୍ଞଭାବରେ ବର୍ଣ୍ଣନା କରିଛନ୍ତି ।

"ପ୍ରତି ଦିନରେ ଏହି ମତେ । ଗାୟନ କରୁଥାନ୍ତି ନିତ୍ୟେ ॥
ତାହା ଦେଖିଣ ଖଳଜନେ । ସହି ନପାରୁ ଥାନ୍ତି ମନେ ॥
କାକ ଚଣ୍ଡାଳ ଯେଉଁପରି । ଉତ୍ତମ ଦ୍ରବ୍ୟ ନଷ୍ଟ କରି ॥
ଶ୍ୱାନ ଚଣ୍ଡାଳ ଯେହ୍ନେ ଦାଣ୍ଡେ । ଧାଇଁଣ ଖାଉ ଥାନ୍ତି ଗଣ୍ଡେ ॥
ଦେଖିଣ ତୁଳସୀ ବୃକ୍ଷରେ । ଚରଣ ଟେକି ମୂତ୍ରକରେ ॥
ମୂଷିକ ଯେହ୍ନେ ଦିବ୍ୟବାସ । ଦନ୍ତେ କାଟିଣ କରେ ନାଶ ॥
କଣ୍ଟିତେ ନକରେ ଆହାର । ଗଙ୍ଗା ବାରିକୁ ଯେ ଶୂକର ॥
× × × ×
ଏଣ୍ଡିକି ନପାରିଲେ ସହି । ସେ ରାଜ୍ୟ ରାଜା ଆଗେ କହି ॥
ବୋଲନ୍ତି ଶୁଣ ନୃପରାଣ । ଯେ ପୁଣ୍ୟ କ୍ଷେତ୍ରର ପ୍ରଧାନ ॥
ବ୍ରାହ୍ମଣ ଜଗନ୍ନାଥ ଦାସ । ହେବା ପ୍ରତି ରାଜକ କଲ ନାଶ ॥"

[ଦାର୍ଢ଼୍ୟତାଭକ୍ତି ରସାମୃତ-୧୦୬ ପୃ]

କିନ୍ତୁ ଏତିକରେ ମହାତ୍ମା ଜଗନ୍ନାଥ ଦାସଙ୍କର ଲାଞ୍ଛନା ଶେଷ ହୋଇ ନାହିଁ । ଦିନେ ରାଜା ପ୍ରତାପରୁଦ୍ରଦେବ ଜଗନ୍ନାଥ ଦାସଙ୍କର ଚରିତ୍ରର ଶୁଦ୍ଧତା ପରୀକ୍ଷା କରିବା ଉଦ୍ଦେଶ୍ୟରେ ସେବକମାନଙ୍କୁ ତାଙ୍କର ଗତିବିଧି ଚାଲିଚଳନ ଓ ଗତି-ବିଧି ପର୍ଯ୍ୟବେକ୍ଷଣ କରିବାପାଇଁ ଆଦେଶକଲେ ।

ରାଜାଙ୍କ ନିର୍ଦ୍ଦେଶ କ୍ରମେ ସେହି ଦିନଠାରୁ ରାଜାନୁଚରଗଣ ଅତିବଡ଼ି ସ୍ୱାମୀଙ୍କ ମଠ ପାଖରେ ଲୁଚିରହି ତାଙ୍କ ଗତିବିଧି ନିରୀକ୍ଷଣ କରିବାକୁ ଲାଗିଲେ । ଦିନେ ଅର୍ଦ୍ଧରାତ୍ରରେ ସେମାନେ ଦେଖିଲେ ଯେ ଦୁଇଟି ସୁନ୍ଦରୀ ତରୁଣୀ ଦାସଙ୍କର ପରିଚର୍ଯ୍ୟା କରୁଛନ୍ତି । ସେମାନେ ସ୍ୱାମୀଙ୍କ ମଠରେ ଏହି ରୂପବତୀ ଯୁବତୀଦ୍ୱୟଙ୍କୁ ଦେଖି ଘୋର ସନ୍ଦିଗ୍ଧ ହୃଦୟରେ ନଗରକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ ରାଜାଙ୍କ ସମକ୍ଷରେ ଉକ୍ତ ବିଷୟ ଯଥାରୀତି ଜ୍ଞାପନକଲେ । ରାଜା ବିଷୟଟିର ସତ୍ୟାସତ୍ୟ ପରୀକ୍ଷା କରିବା ଉଦ୍ଦେଶ୍ୟରେ ପରଦିନ ଅର୍ଦ୍ଧରାତ୍ର ସମୟରେ ସ୍ୱାମୀଙ୍କ ମଠର ଅଦୂରରେ ଆତ୍ମଗୋପନପୂର୍ବକ ପ୍ରତ୍ୟେକ ବିଷୟ ସ୍ୱୟଂ ନିରୀକ୍ଷଣ କରିବାକୁ ଲାଗିଲେ । ଏହି ସମୟରେ ମଠ ମଧ୍ୟରେ ପୂର୍ବୋକ୍ତ ରମଣୀଦ୍ୱୟଙ୍କର ଆକସ୍ମିକ ଆବିର୍ଭାବ ଦେଖି ରାଜାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲନାହିଁ । ସିଦ୍ଧପୁରୁଷ ଜଗନ୍ନାଥ ରାଜାଙ୍କର ଆତ୍ମଗୋପନର ଅଭିପ୍ରାୟ ଅବଗତ ହୋଇ ଆଦେଶକଲେ –"ମୁଁ ସ୍ୱୟଂ ଜଗନ୍ନାଥ ପ୍ରଭୁଙ୍କ ସେବାଦାସୀ । ସେହିହେତୁ ମୁଁ ସ୍ତ୍ରୀଭାବାପନ୍ନ । ମୋର ସେବା ସ୍ତ୍ରୀ ବିନା ଆଉ କିଏ କରିବ ? ତୁମ୍ଭର ମନର ସନ୍ଦେହ ଥିଲେ ଏହି କନ୍ୟାଦୁହିଁଙ୍କୁ ସ୍ୱଚ୍ଛନ୍ଦରେ ଧରିଇ ନେଇପାର ।" ଅତିବଡ଼ି ସ୍ୱାମୀଙ୍କ କଥା ଶୁଣି ରାଜକନ୍ୟା ଦୁହିଁଙ୍କୁ ଧରିବାପାଇଁ ଅନୁଚରମାନଙ୍କୁ ଆଦେଶ କଲେ । କିନ୍ତୁ କନ୍ୟାଦ୍ୱୟ ବିଜୁଳିପରି ଚକ୍ଷୁର ପଲକରେ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ । ଏହି ଅଭୂତପୂର୍ବ ବିସ୍ମୟକର ଘଟଣାରେ ସ୍ତମ୍ଭୀଭୂତ ହୋଇ ରାଜା ଜଗନ୍ନାଥ ଦାସଙ୍କୁ ସ୍ତୁତି କଲେ । ତତ୍ପରେ ରାଜାଙ୍କ ପ୍ରତି କୃପାପରବଶ ହୋଇ ଜଗନ୍ନାଥ ଦାସ ନିଜର ସ୍ତ୍ରୀଭାବ ଧାରଣର ରହସ୍ୟ ଉଦ୍‌ଘାଟନ ପୂର୍ବକ ତାଙ୍କର ସକଳ ସଂଶୟ ମୋଚନ କରିଥିଲେ ।

"ପୂର୍ବେ ପୁରୁଷ ଅଙ୍ଗେ ଥିଲି । ପ୍ରେମ ଭାବରେ ସ୍ତ୍ରୀ ହେଲି" ॥
[ଜ.ଚ. ଏକାଦଶ ଅଧ୍ୟାୟ]

ଉପରୋକ୍ତ ଦୁଇଟି ଘଟଣା ମଧ୍ୟରୁ ପ୍ରଥମଟି ରାମଦାସଙ୍କ "ଦାର୍ଢ୍ୟତାଭକ୍ତି ରସାମୃତ" ଓ ଦ୍ୱିତୀୟଟି ଦିବାକର ଦାସଙ୍କ "ଜଗନ୍ନାଥ ଚରିତାମୃତ"ରେ ବର୍ଣ୍ଣିତ ହୋଇଛି । ଏଗୁଡ଼ିକର ସତ୍ୟାସତ୍ୟ ନିର୍ଦ୍ଧାରଣ କରିବା ସହଜସାଧ୍ୟ ନୁହେଁ । କିନ୍ତୁ ଜଗନ୍ନାଥ ଓ ପଞ୍ଚସଖା ଗୋଷ୍ଠୀର ଅନ୍ୟ ସଖାବୃନ୍ଦ ସେମାନଙ୍କର ଉଦାର ଧର୍ମଭାବ ଓ ଜନପ୍ରିୟତା ହେତୁ ତତ୍‌କାଳୀନ ଶାସକବୃନ୍ଦଙ୍କ କୋପ ଦୃଷ୍ଟିରେ ପଡ଼ିଥିବା ଓ ବାରମ୍ବାର ଲାଞ୍ଛିତ ହୋଇଥିବା ବିଷୟ ବଳରାମ ଦାସଙ୍କ ବେଦାନ୍ତସାର ଗୁପ୍ତଗୀତା ଓ ଅଚ୍ୟୁତାନନ୍ଦ ଦାସଙ୍କ "ଶୂନ୍ୟସଂହିତା" ଆଦି ଗ୍ରନ୍ଥର ପାଠରୁ ସୂଚିତହୁଏ ।

"ଏମନ୍ତ ପ୍ରକାର ପାଞ୍ଚଜଣଙ୍କୁ । କଟାଳ କରିଲେ ଆମ୍ଭମାନଙ୍କୁ ॥
ପ୍ରଚ୍ଛନେ ପରମସ୍ଥାନ ପାଇଲୁ । ନିରାଳମ୍ବସ୍ଥାନେ ନିମଗ୍ନ ହେଲୁ ॥"
[ଶୂ. ସଂ. ୫୭ ପୃଷ୍ଠା]

"ଦସ୍ୟୁଙ୍କୁ ସେ ଦାରୁବ୍ରହ୍ମ ଦିବ୍ୟମୂର୍ତ୍ତି ରୂପ ।
ଯାବନଜନେ ଦସ୍ୟୁକର ନାଶନ୍ତି ଦୂରିତ ॥
ଆମ୍ଭ ପାଞ୍ଚଜଣଙ୍କୁ ବିପଦ ବେଳେ ବେଳେ ।
ପଡ଼ିଲେ ସାହା ହୁଅନ୍ତି ଆତଙ୍କର କାଳେ ॥"
[ଶୂ. ସଂ. ୭୪ ପୃ]

"ଶୂନ୍ୟସଂହିତା"ରେ ଅଚ୍ୟୁତାନନ୍ଦ ତାହାଙ୍କ ବିଦ୍ୟା ପରୀକ୍ଷା ବିଷୟ ବର୍ଣ୍ଣନା କରିଛନ୍ତି । ବ୍ରାହ୍ମଣମାନଙ୍କ ପ୍ରସ୍ତାବକ୍ରମେ ରାଜାଙ୍କ ଆଦେଶରେ ସେ ବାଙ୍କି ମୁହାଣଠାରେ ଶୂନ୍ୟ ନିରାକାର ଭଜନରେ ପରୀକ୍ଷା ଦେଇଥିଲେ । ସେହିପରି "ବେଦାନ୍ତସାର ଗୁପ୍ତ ଗୀତା"ରେ ବଳରାମ ଦାସଙ୍କ ବ୍ରାହ୍ମଣମାନଙ୍କ ସମୀପରେ ବେଦାନ୍ତ ତତ୍ତ୍ୱରେ ପରୀକ୍ଷାଦେବା ବିଷୟ ମଧ୍ୟ ବର୍ଣ୍ଣିତ ହୋଇଅଛି । ପୁନଶ୍ଚ ଯଶୋବନ୍ତଙ୍କୁ ଶ୍ରୀ ଚୈତନ୍ୟଙ୍କ ଉପସ୍ଥିତିରେ ଯୋଗ ପରୀକ୍ଷା ଦେବାକୁ ହୋଇଥିଲା । ଜଗନ୍ନାଥ ଦାସ ସେହିପରି ପ୍ରେମଭକ୍ତିରେ ପରୀକ୍ଷା ଦେଇଥିବା ସଂପୂର୍ଣ୍ଣ ପ୍ରାମାଣିକ ଓ ଐତିହାସିକ ବିଷୟ । ଉତ୍କଳର ଆର୍ତ୍ତିବଲ୍ଲଭ

ମହାନ୍ତ "ବ୍ରହ୍ମଶାଙ୍କୁଳ ଓ ଅଣାକାର ସଂହିତା"ର ମୁଖବନ୍ଧରେ ଉଲ୍ଲେଖ କରିଛନ୍ତି ଯେ, ମହାତ୍ମା ଜଗନ୍ନାଥ ଦାସଙ୍କ ଏହି ପରୀକ୍ଷା ଖ୍ରୀ: ୧୫୩୨ ବା ୧୫୩୩ରେ ଅନୁଷ୍ଠିତ ହୋଇଥିଲା ।

**ଅଲୌକିକତା**—ଜଗତରେ ସାଧୁ, ସନ୍ଥ ଓ ମହାପୁରୁଷମାନଙ୍କ ସମ୍ବନ୍ଧରେ ସବୁ ଯୁଗରେ ବହୁ ଅଲୌକିକ ଉପାଖ୍ୟାନ ଶୁଣାଯାଇଥାଏ । ଆମ ଦେଶର ଶାସ୍ତ୍ର, ପୁରାଣ ଓ ପ୍ରାଚୀନ ଧର୍ମଗ୍ରନ୍ଥମାନଙ୍କରେ ମହାପୁରୁଷମାନଙ୍କର ଜୀବନର ବହୁ ଅଲୌକିକ ଘଟଣା ଲିପିବଦ୍ଧ ହୋଇଅଛି । ଗଣଚେତନା ଉପରେ ଏଗୁଡ଼ିକର ଏକ ପ୍ରକାର ଯାଦୁକରୀ ପ୍ରଭାବ ରହିଅଛି । ସରଳ, ସ୍ୱଳ୍ପ ପରାଙ୍ମୁଖ ଓ ବିଶ୍ୱାସପରାୟଣ ଜନସାଧାରଣଙ୍କୁ ପ୍ରଭାବିତ କରାଇବା ପାଇଁ ଏହାଠାରୁ ବଳ ଶକ୍ତିଶାଳୀ ସାଧନ ଆଉ ନାହିଁ । ତେଣୁ ମହାପୁରୁଷମାନଙ୍କ ମହିମା ପ୍ରଖ୍ୟାପନ ଉଦ୍ଦେଶ୍ୟରେ ସେମାନଙ୍କର ସମସାମୟିକ ଅଥବା ପରବର୍ତ୍ତୀ ଭକ୍ତଗଣ ସେମାନଙ୍କର ଜୀବନ ଓ କ୍ରିୟା-କଳାପ ସମ୍ବନ୍ଧରେ ବହୁ କାଳ୍ପନିକ ଓ ଅତିରଞ୍ଜିତ କାହାଣୀ ସୃଷ୍ଟିକରି ପ୍ରଚାରିତ କରିବା ଦେଖାଯାଏ । ମହାତ୍ମା ଜଗନ୍ନାଥ ଦାସଙ୍କ ସମ୍ବନ୍ଧରେ ଏହିପରି କେତେକ ଅଲୌକିକ ଉପାଖ୍ୟାନ ଅଛି ।

(୧) ଥରେ କାଶୀର ଜଣେ ବୋଇତ ବ୍ୟବସାୟୀ ମହାରାଜା ପ୍ରତାପରୁଦ୍ରଙ୍କୁ ଗନ୍ଧରାଜ ନାମକ ଅତି ମୂଲ୍ୟବାନ ଚନ୍ଦନକାଷ୍ଠ ଉପହାର ଦେଇଥିଲେ । ରାଜା ତାହାକୁ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଅଙ୍ଗରେ ଲାଗି କରାଇବା ନିମିତ୍ତ ଅତିବଡ଼ ସ୍ୱାମୀଙ୍କ ହସ୍ତରେ ଅର୍ପଣ କରିଥିଲେ । ମାତ୍ର ଦାସେ ଚନ୍ଦନ କାଠ ଖଣ୍ଡିକ ଘୋରି ନିଜ ମଠ କାନ୍ଥରେ ବୋଳିଦେଲେ । ଏ ସମ୍ବାଦ ରାଜାଙ୍କ କର୍ଣ୍ଣଗୋଚର ହେବାରୁ ରାଜା ଅତିବଡ଼ ସ୍ୱାମୀଙ୍କ ଏତାଦୃଶ ବ୍ୟବହାରରେ ଘୋର ବିରକ୍ତି ପ୍ରକାଶପୂର୍ବକ ତାଙ୍କୁ ଡକାଇ ପଚାରିଲେ ଯେ ସେ କାହିଁକି ଜଗନ୍ନାଥଙ୍କ ଶ୍ରୀଅଙ୍ଗରେ ଚନ୍ଦନ ଲାଗି ନକରି ମଠ କାନ୍ଥରେ ବୋଳିଦେଲେ । ଜଗନ୍ନାଥ ଦାସ ଉତ୍ତର କଲେ ଯେ ସେ ମହାପ୍ରଭୁ ଜଗନ୍ନାଥଙ୍କ ଶ୍ରୀଅଙ୍ଗରେ ଯଥାରୀତି ଚନ୍ଦନ ଲାଗିକରିଛନ୍ତି । ଏଥିରେ ଘୋର ବିସ୍ମିତ ହୋଇ ରାଜା ସେବକ ଓ ବ୍ରାହ୍ମଣମାନଙ୍କୁ ସ୍ୱାମୀଙ୍କ ଉକ୍ତିର ସତ୍ୟାସତ୍ୟ ପରୀକ୍ଷା କରିବା ନିମିତ୍ତ ଆଦେଶକଲେ । ତଦନୁଯାୟୀ ସେବକଗଣ

ଶ୍ରୀମନ୍ଦିରକୁ ଯାଇ ଦେଖିଲେ ଯେ ସ୍ୱାମୀଙ୍କ ଉକ୍ତି ଅନୁଯାୟୀ ଚନ୍ଦନ ମହାପ୍ରଭୁଙ୍କୁ ଯଥାସ୍ଥିତ ଲାଗିକରାଯାଇଛି । ଏହି ଅଭୂତପୂର୍ବ ଘଟଣାରେ ଘୋର ଲଜ୍ଜିତ ଓ ବିସ୍ମିତ ହୋଇ ରାଜା ମହାଯୋଗୀ ଜଗନ୍ନାଥ ଦାସଙ୍କର ଚରଣ ବନ୍ଦନା କରିଥିଲେ ।

(୨) ପୂର୍ବରୁ ସୂଚିତ 'ଜଗନ୍ନାଥ ସୁଧାର୍ଣ୍ଣବ' ନାମକ ସଂସ୍କୃତ ଭାଷାରେ ରଚିତ ଗ୍ରନ୍ଥରେ ବର୍ଣ୍ଣିତ ହୋଇଅଛି ଯେ, ଦିନେ ମହାରାଜା ପ୍ରତାପରୁଦ୍ର ଦେବ ମନ୍ଦିରରେ ଶ୍ରୀମୂର୍ତ୍ତିଙ୍କ ଦର୍ଶନ ସାରି ନବରକୁ ପ୍ରତ୍ୟାବର୍ତ୍ତନ କରିବା ବାଟରେ ବଟଗଣେଶଙ୍କ ନିକଟରେ ଉପସ୍ଥିତ ହେଲେ । ତେତେବେଳେ ଅତିବଡ଼ି ସ୍ୱାମୀ ବଟମୂଳରେ ବସି ପୁରାଣ ପାଠକରୁଥାନ୍ତି । ବ୍ରାହ୍ମଣମାନଙ୍କଠାରୁ ସ୍ୱାମୀଙ୍କର ମହିମା ଅବଗତ ହୋଇ ଓ ତାଙ୍କର ପୁରାଣ ପାଠ ସୁଧିରେ ମୁଗ୍ଧ ହୋଇ ରାଜା ଭକ୍ତିପୂର୍ଣ୍ଣ ହୃଦୟରେ ସ୍ୱାମୀଙ୍କର ପଦବନ୍ଦନା କରିବାକୁ ଲାଗିଲେ । ଏହି ସମୟରେ ରାଜାଙ୍କର ଭାବାବେଶ ଉପସ୍ଥିତ ହେଲା ଏବଂ ସେ ଦେଖିଲେ ଯେ ଜଗନ୍ନାଥ ଦାସ ଅଷ୍ଟଭୁଜ ହୋଇଅଛନ୍ତି । ସେ ଚାରିଗୋଟି ହସ୍ତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ, ଦୁଇଗୋଟି ହସ୍ତରେ ଧନୁ, ଶର ଏବଂ ଅପର ଦୁଇଗୋଟି ହସ୍ତରେ ବଂଶୀ ଧାରଣ ପୂର୍ବକ ଅବିଚିନ୍ତ୍ୟ ଶ୍ୟାମ ବିଗ୍ରହରୂପେ ବିରାଜମାନ କରୁଅଛନ୍ତି ।

"ଅଷ୍ଟ ବାହୁ ଜଗନ୍ନାଥ
ଦାସୋ ବଂଶୀଧନୁଃଶରାନ୍
ଶଙ୍ଖ ଚକ୍ର ଗଦା ପଦ୍ମଂ
ବିଭ୍ରଚ୍ଛ୍ୟା ମୋଽଭବଦ୍ଦା ।"

[ଜ. ସୁ. ସ.]

ଉପରୋକ୍ତ ଘଟଣାଟି ଶ୍ରୀ ଚୈତନ୍ୟଙ୍କ ଷଡ଼ଭୁଜ ଧାରଣ ଉପାଖ୍ୟାନର ଅନୁରୂପ ବୋଲି ମନେହୁଏ ।

(୩) **ସ୍ତ୍ରୀଭାବ ପ୍ରକଟନ—**

ଈଶ୍ୱର ଦାସଙ୍କର ଚୈତନ୍ୟ ଭାଗବତରେ ବର୍ଣ୍ଣିତ ଅଛି ଯେ ଏକଦା ଜଗନ୍ନାଥ ମହାପ୍ରଭୁ ଲକ୍ଷ୍ମୀଙ୍କ ସହିତ ନୀଳଗିରିରେ କ୍ରୀଡ଼ାରେ ରତଥିବା ସମୟରେ ଭକ୍ତାଗ୍ରଣୀ ଜଗନ୍ନାଥ ଦାସ ସେଠାରେ ଉପସ୍ଥିତ ହେଲେ । ଲକ୍ଷ୍ମୀଙ୍କ

ପ୍ରେମକଳା ସଂଦର୍ଶନରେ ନାରୀ-ଭାବରେ ଭଗବାନଙ୍କ ପାଦପଦ୍ମ ସେବା କରିବା ବାଞ୍ଛା ତାହାଙ୍କ ହୃଦୟରେ ଜାଗ୍ରତ ହେଲା । ଏହା ଜାଣିପାରି ଭକ୍ତବତ୍ସଳ ଭଗବାନ ତାହାଙ୍କ ପ୍ରତି କୃପା ପ୍ରକାଶ କଲେ ଏବଂ ସେହି ଦିନଠାରୁ ସେ ସଖୀଙ୍କ ପ୍ରାପ୍ତ ହେଲେ ।

"ଶ୍ରୀ ଜଗନ୍ନାଥ ଅନ୍ତର୍ଯାମୀ । ଜାଣିଲେ ବୈକୁଣ୍ଠ ସ୍ୱାମୀ ।
ବାଞ୍ଛା ତୋହର ସିଦ୍ଧହେଉ । କରୁଣା କଲେ ମହାବାହୁ ॥
ସେଠାରୁ ଜଗନ୍ନାଥ ଦାସ । ସଖି ଅଙ୍ଗରେଣ ପ୍ରକାଶ ॥"

ଚୈତନ୍ୟ ଭାଗବତରେ ଏହିପରି ବହୁ କାଳ୍ପନିକ ଉପାଖ୍ୟାନ ସଂଯୋଜିତ ହୋଇଥିବାରୁ ଚୈତନ୍ୟ ଭାଗବତରେ ବର୍ଣ୍ଣିତ ଅନ୍ୟାନ୍ୟ ଉପାଖ୍ୟାନ ସଦୃଶ ଉପରୋକ୍ତ ଉପାଖ୍ୟାନଟି ଏକାନ୍ତ କାଳ୍ପନିକ ବୋଲି ବୋଧହୁଏ ।

(୪) ଚୈତନ୍ୟ ଭାଗବତ ବ୍ୟତୀତ ନିତ୍ୟଗୁପ୍ତମଣି, ଜଗନ୍ନାଥ ଚରିତାମୃତ ଏବ ଦାର୍ଢ୍ୟତାଭକ୍ତି ରସାମୃତରେ ମଧ୍ୟ ଜଗନ୍ନାଥ ଦାସଙ୍କ ସ୍ତ୍ରୀଭାବ ପ୍ରକଟନ ବିଷୟ ବର୍ଣ୍ଣିତ ହୋଇଅଛି । ନିତ୍ୟଗୁପ୍ତମଣିରେ ପାଟମହାରାଣୀ ଗୌରୀଦେବୀଙ୍କୁ ଦୀକ୍ଷା ପ୍ରଦାନ କରିବା ନିମିତ୍ତ ଚୈତନ୍ୟଙ୍କ ନିର୍ଦ୍ଦେଶରେ ଜଗନ୍ନାଥ ଦାସ ସ୍ତ୍ରୀ-ଭାବ ଧାରଣ କରିଥିବା ବିଷୟର ଉଲ୍ଲେଖଅଛି ।"ଜଗନ୍ନାଥ ଚରିତାମୃତ" ଓ "ଦାର୍ଢ୍ୟତାଭକ୍ତି ରସାମୃତ"ରେ ବର୍ଣ୍ଣନା ଏହାଠାରୁ ଭିନ୍ନ । ଜଗନ୍ନାଥ ଚରିତାମୃତରେ ଏକାଦଶ ଅଧ୍ୟାୟରେ, ମହାରାଜା ପ୍ରତାପରୁଦ୍ରଙ୍କ ଦ୍ୱାରା ଜଗନ୍ନାଥ ଦାସଙ୍କ ପ୍ରେମଭକ୍ତି ପରୀକ୍ଷା ବର୍ଣ୍ଣନା ପ୍ରସଙ୍ଗରେ ତାହାଙ୍କ ସ୍ତ୍ରୀଭାବ ପ୍ରକଟନ ବିଷୟ ଉଲ୍ଲିଖିତ ହୋଇଅଛି ।

'ବୋଇଲେ ରାଜା ମୁଖ ଚାହିଁ । ଜଗନ୍ନାଥଙ୍କ ଦାସୀ ମୁହିଁ ॥
ପୂର୍ବେ ପୁରୁଷ ଅଙ୍ଗେ ଥିଲି । ପ୍ରେମ ଭାବରେ ସ୍ତ୍ରୀ ହେଲି ॥
ଶ୍ରୀରାଧା ଭାବ ହୃଦୟର । ପୁରୁଷ ଭାବ କଲି ଦୂର ॥
ପୁରୁଷ ଅଙ୍ଗେ ସ୍ତ୍ରୀ ହୋଇ । ଏକଥା ଦେଖା ଶୁଣା ନାହିଁ ॥
ସତାଇଶ ଦିନ ପୁରୁଷ । ତଦନ୍ତେ ସ୍ତ୍ରୀଙ୍କ ବେଶ ॥
ପୂର୍ବେ ମହାତ୍ମାମାନେ ଥିଲେ । ଏ ଗତି କେହି ନ ଲଭିଲେ ॥"

'ଦାର୍ଢ୍ୟତାଭକ୍ତି ରସାମୃତ' ବର୍ଣ୍ଣିତ ପ୍ରସଙ୍ଗ ଉପରୋକ୍ତ ପୁସ୍ତକ ଦ୍ୱୟର ବର୍ଣ୍ଣନାଠାରୁ ସ୍ୱତନ୍ତ୍ର । ରାଜାଙ୍କ ନିର୍ଦ୍ଦେଶରେ କାରାଗାରରେ ବନ୍ଦୀ ଥିବା ଅବସ୍ଥାରେ ସ୍ୱପ୍ରାର୍ଥନାନୁସାରୀ ପ୍ରଭୁ ଜଗନ୍ନାଥଙ୍କ ପଦାବ୍ଜ ସ୍ପର୍ଶରେ ଜଗନ୍ନାଥ ଦାସ ସ୍ତ୍ରୀତ୍ୱ ପ୍ରାପ୍ତ ହୋଇଥିବା ବିଷୟ ସେଥିରେ ଉଲ୍ଲିଖିତ ହୋଇଅଛି ।

ଘଟଣାଟି ବିଭିନ୍ନ ପୁସ୍ତକରେ ଭିନ୍ନ ଭିନ୍ନ ଭାବରେ ବର୍ଣ୍ଣିତ ହୋଇଥିଲେ ହେଁ ଏଗୁଡ଼ିକର ମୂଳ ଉତ୍ସ ଏକ ବୋଲି ମନେହୁଏ । ଆକ୍ଷରିକ ଅର୍ଥରେ ଗ୍ରହଣକଲେ ଏ ଘଟଣାଟି ଯେ ଏକାନ୍ତ ଅବାସ୍ତବ ଓ ଅନୈତିହାସିକ ଏଥିରେ ସନ୍ଦେହର ଅବକାଶ ନାହିଁ । ସାହିତ୍ୟିକ ମୂଲ୍ୟବୋଧ ଦୃଷ୍ଟିରୁ ବିଚାର କଲେ ଏହା ଯେ ରୁଚିବିଗର୍ହିତ ଓ ଜୁଗୁପ୍ସାପବ୍ୟଞ୍ଜକ ଏହା କହିବା ବାହୁଲ୍ୟ ମାତ୍ର । କିନ୍ତୁ ଏ ଦୁଇଟି ଦିଗ ଛାଡ଼ିଦେଲେ ଅନ୍ୟ ଏକ ଦୃଷ୍ଟିଭଙ୍ଗୀ ଅଛି, ଯହିଁରୁ ଏ ବିଷୟଟିର ଆଲୋଚନା କରାଯାଇପାରେ । ତାହା ହେଉଛି ଆଧ୍ୟାତ୍ମିକ ଓ ମନସ୍ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ । ପୁରୁଷତ୍ୱ ନାରୀତ୍ୱ ମାନବିକ ଚେତନାର ଦୁଇଗୋଟି ବିଭାବ । ଗୋଟିକରେ ପ୍ରତିଫଳିତ ହୋଇଥାଏ ମନୁଷ୍ୟର ବଳ, ବୀର୍ଯ୍ୟ, ଶକ୍ତି, ସାମର୍ଥ୍ୟ, ଗର୍ବ, ଦମ୍ଭ, ଅସ୍ମିତାଭିମାନ ଓ ବଳିଷ୍ଠ ପୌରୁଷବୋଧ । କିନ୍ତୁ ଅନ୍ୟଟିରେ ଅଭିବ୍ୟକ୍ତ ହୋଇଥାଏ ତାର ସେବା, ତ୍ୟାଗ, ତିତିକ୍ଷା, ବିଶ୍ୱାସ, ପ୍ରେମ, ଅନୁରାଗ ଓ ଗଭୀର ଆତ୍ମସମର୍ପଣ । ଏହି ଦୃଷ୍ଟିରୁ ବିଚାରକଲେ ନାରୀତ୍ୱ କେବଳ ଦେହର କଥା ନୁହେଁ, ମନ, ପ୍ରାଣ ଓ ହୃଦୟର ବିଷୟ ଅଟେ । ତେଣୁ ଆଧ୍ୟାତ୍ମ ଓ ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ଦେଖିଲେ ଜଗନ୍ନାଥ ଦାସଙ୍କ ସାଧକଜୀବନର ନିଗୂଢ଼ ତତ୍ତ୍ୱ ଉପରୋକ୍ତ ଉପାଖ୍ୟାନରେ ନିହିତଥିବା ସୂଚିତ ହୁଏ ।

ସାଧକ ଭକ୍ତ ଯେତେବେଳେ ତାର ସକଳ କାମନା, ବାସନା, ଆଶା ଆକାଙ୍କ୍ଷା, ଅଭିଳାଷ ସହିତ ତାର ଦେହ, ମନ, ପ୍ରାଣ ଏବଂ ତାର ପୌରୁଷକୁ ଭଗବାନଙ୍କ ପାଦପଦ୍ମରେ ସମର୍ପଣ କରିଦେଇ ତାହାଙ୍କ ହସ୍ତର ସାଧନ ଏବଂ ଇଚ୍ଛାର କ୍ରୀଡ଼ନକ ହେବାର ସାମର୍ଥ୍ୟ ଓ ଗୌରବ ଅର୍ଜନ କରେ, ସେତେବେଳେ ସେ ଯଥାର୍ଥରେ ହୁଏ ନାରୀ । ଏଥିରେ ଭୌତିକ ସ୍ଥୂଳ ଶରୀରର ପରିବର୍ତ୍ତନ ହୁଏ ନାହିଁ ସତ୍ୟ; କିନ୍ତୁ ଆତ୍ମାର ରୂପାନ୍ତର ପ୍ରାପ୍ତି ହୁଏ ।

ଏହି ରୂପାନ୍ତରପ୍ରାପ୍ତି ବିଷୟକୁ ଲକ୍ଷ୍ୟ କରି ଭକ୍ତକବି ବଳରାମ ଦାସ କହିଅଛନ୍ତି—

"ଆମ୍ଭାକୁ ସ୍ତ୍ରୀ ବେଶକରି । ଶ୍ରୀରାଧା ଅଙ୍ଗରେ ବହିରି ॥
କୃଷ୍ଣେ ଆସ୍ୱାଦ ରସ ଦେଇ । ଏହାକୁ ପ୍ରେମଭକ୍ତି କହି ॥
ତେବେ ପାଇବୁ ଭାବଗ୍ରାହୀ । ନୋହିଲେ ପଶି ନ ପାରଇ ॥
ପୁରୁଷ ଅଙ୍ଗେ ନ ଲଭନ୍ତି । ଏମନ୍ତ ବେଦ ତନ୍ତ୍ରୀ ସ୍ଥିତି ॥"

[ବେଦାନ୍ତସାର ଗୁପ୍ତଗୀତା—୧୪ ଅଧ୍ୟାୟ]

ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ ସଖା ଯଶୋବନ୍ତ ଦାସ ତାହାଙ୍କ "ପ୍ରେମଭକ୍ତି ବ୍ରହ୍ମଗୀତା"ରେ ଲେଖିଛନ୍ତି—

"ଯାହାର ପୂର୍ବ ଭାଗ୍ୟବଳେ । ସେବଇ ଗୋପୀଗଣ ମେଳେ ॥
ଅଷ୍ଟ ନାୟିକା ମଧ୍ୟ କରି । ଯେତେକ ଗୋପିନୀ ଅଙ୍ଗ ଧରି ॥
ସେ ଗୋପୀ ପ୍ରାୟେ ବେଶ କରି । ବସ୍ତ୍ର ଆଳଟ କରେ ଧରି ॥
ସେବିବ ଶ୍ରୀକୃଷ୍ଣ ପୟର । ମନ ନ ଥିବ ଅନ୍ୟଠାର ॥
ବୋଲିବ ଦେବ ଜଗନ୍ନାଥ । ଗୋପୀଙ୍କ ପତି ଗୋପୀନାଥ ॥
ମୁହିଁ ଗୋପୀ ଜନଙ୍କ ଦାସୀ । ଶରଣ ରଖ ବ୍ରହ୍ମରାଶି ॥

କବି ଦେବଦୁର୍ଲଭଙ୍କ "ରହସ୍ୟମଞ୍ଜରୀ"ରେ ଉଲ୍ଲେଖ ଅଛି —

"ପୁରୁଷ ଅଙ୍ଗରେ କେହୁ ଦର୍ଶନ କରିବ ।
ମୁଣ୍ଡର ଉପରେ କେହୁ ମୁଣ୍ଡେକ ବହିବ ॥
ସ୍ତ୍ରୀବୃନ୍ଦ ମଧ୍ୟରେ ପୁରୁଷ-ବର ମୁହିଁ,
ସେ ପୁରେ ବସିବ କେ ପୁରୁଷ ଲିଙ୍ଗ ବହି ॥
ମୋହ ବିନୁ ନାହିଁ ତହିଁ ଦୋସର ପୁରୁଷ,
ସ୍ତ୍ରୀବୃନ୍ଦ ବେଢ଼ି ମୋର ସେବନ୍ତି ପାରୁଶ ॥"

[ରହସ୍ୟମଞ୍ଜରୀର ୬୭ଶ ଛାନ୍ଦ]

ସନ୍ଥକବି କବୀର ଓ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଲେଖାସମୂହରେ ମଧ୍ୟ ଭକ୍ତକୁ ବିରହବିଧୁରା ନାୟିକା ଓ ଭଗବାନଙ୍କୁ ତାର ମନୋହାରୀ ପ୍ରିୟତମ ରୂପେ ବର୍ଣ୍ଣନା କରାଯାଇଛି ।

ଜାତି-ଧର୍ମ-ନିର୍ବିଶେଷରେ ବିଶ୍ୱର ବହୁ ଭାବୁକ ଭକ୍ତ ମାନବ ଜୀବନର ଏହି ନିଗୂଢ଼ ଅଧ୍ୟାତ୍ମ ତତ୍ତ୍ୱକୁ ବିଭିନ୍ନ ଭାବରେ ରୂପାୟିତ କରିଛନ୍ତି । ପାଶ୍ଚାତ୍ୟ ଦାର୍ଶନିକବର Newman କହିଛନ୍ତି—

"If thy soul is to go on into higher spiritual blessedness, it must become a woman, yes, however manly thou may be among men."

"ପୁରୁଷମାନଙ୍କ ମଧ୍ୟରେ ଯେତେ ପୌରୁଷବାନ୍ ହୁଅ ପଛକେ ଆତ୍ମାର ଉଚ୍ଚତର ଆଧ୍ୟାତ୍ମିକ କଲ୍ୟାଣସାଧନ ନିମିତ୍ତ ତୁମକୁ ନାରୀତ୍ୱ ବରଣ କରିବାକୁ ପଡ଼ିବ ।"

ଏହିପରି ଭାବରେ ନୀଳାଚଳଧାମ ତଥା ଉତ୍କଳର ସର୍ବତ୍ର ଭକ୍ତକବି ଜଗନ୍ନାଥ ଦାସଙ୍କର ଅଲୌକିକ ମହିମା ଓ ଯାଦୁକରୀ ପ୍ରଭାବ ବିସ୍ତାର ଲାଭ କରିଥିଲା । □□□

# ଚତୁର୍ଥ ଅଧ୍ୟାୟ

## ସାଧନା ଓ ସିଦ୍ଧି

ଜଗନ୍ନାଥ ଦାସଙ୍କ ଜୀବନଚରିତ ଅନୁଧାନ କଲେ ଜଣାଯାଏ ଯେ ତାହା ଘଟଣାବଳୀର ବିଚିତ୍ର ସମାବେଶରେ ଚଳଚଞ୍ଚଳିତ ନୁହେଁ । ସେ ଥିଲେ ଜଣେ ସାଧକ । ତାଙ୍କ ଜୀବନଚରିତ ଅଖଣ୍ଡ ଓ ଅବିଚ୍ଛିନ୍ନ ସାଧନାର ଏକ ମହାନ୍ ଇତିହାସ । ଏହି ସାଧନା-ସୌଧର ଭିତ୍ତି ସ୍ଥାପିତ ହୋଇଥିଲା— ସେହିଦିନ, ଯେଉଁଦିନ ଜଗନ୍ନାଥ ଦାସ ସାଂସାରିକ ମାୟା-ମୋହର ପାଶ ଛିନ୍ନ କରି ନୀଳାଚଳଧାମକୁ ଚାଲିଆସିଥିଲେ ଏବଂ ନୀଳାଚଳପତି ଜଗନ୍ନାଥଙ୍କର ସେବା ଓ ଆରାଧନାରେ ନିଜର ଜୀବନକୁ ନିୟୋଜିତ ଓ ଉତ୍ସର୍ଗ କରିଥିଲେ । ସେହିଦିନଠାରୁ ତାଙ୍କ ଜୀବନର ପ୍ରତି ମୁହୂର୍ତ୍ତ ଓ ପ୍ରାଣଶକ୍ତିର ପ୍ରତି ବିନ୍ଦୁ ମହାପ୍ରଭୁ ଜଗନ୍ନାଥଙ୍କ ପରିଚର୍ଯ୍ୟା ଓ ଉପାସନାରେ ବ୍ୟୟିତ ହୋଇଥିଲା । ସାଧକଜୀବନର ଏହି ଅଗ୍ରଗତି ଓ କ୍ରମବିକାଶ ହୃଦୟଙ୍ଗମ କରିବା ସାଂସାରିକ ମୋହଚ୍ଛନ୍ନ ସାଧାରଣ ମନୁଷ୍ୟ ପକ୍ଷରେ ଅସମ୍ଭବ । ଭକ୍ତବର ଦିବାକର ଦାସ ସାଧକଶିରୋମଣି ଜଗନ୍ନାଥଙ୍କ ଦିବ୍ୟ ସାଧନାର ଚିତ୍ର ଅତ୍ୟନ୍ତ ମନୋଜ୍ଞ ଭାଷାରେ ବର୍ଣ୍ଣନା କରିଛନ୍ତି—

‘‘ସନ୍ତ ପ୍ରବନ୍ତ ପରି ହେଲେ । ତୀର୍ଥ କ୍ଷେତ୍ର ସେ ନ ବାଞ୍ଛିଲେ ॥
ଦେବ, ତୀର୍ଥ, କ୍ଷେତ୍ର ଏ ବ୍ରତ । ଏ ବାଞ୍ଛା ନ କରନ୍ତି ଚିତ୍ତ ॥
ରାତ୍ର ଦିବସ ନିରନ୍ତର । ଶ୍ରୀଜଗନ୍ନାଥଙ୍କ ପୟର ॥
ଯେମନ୍ତେ ଜନକଦୁଲଣୀ । ରାମହିଁ ଅନ୍ୟକୁ ନ ମାନି ॥
ଯେମନ୍ତ ପର୍ବତଦୁହିତା । ନିତ୍ୟ ଭଜନ୍ତି ପଞ୍ଚମଥା ॥
ଯେମନ୍ତ ରାଧା-ବୃନ୍ଦାବନ । ହୃଦେ ଭାବ ନନ୍ଦ ନନ୍ଦନ ॥
ଯେମନ୍ତେ ଭୀଷ୍ମଙ୍କ ନନ୍ଦିନୀ । କୃଷ୍ଣହିଁ ଆନକୁ ନ ମାନି ॥

ତେମନ୍ତେ ଦାସ ଜଗନ୍ନାଥ । ହୃଦେ ଭାବନ୍ତ ଜଗନ୍ନାଥ ॥
ମନ ବଚନ କର୍ତ୍ତବ୍ୟରେ । ବୃତ୍ତି ଇନ୍ଦ୍ରିୟ ଆତ୍ମାଠାରେ ॥"
[ଜ. ଚ.]

ଭକ୍ତ ଓ ଭଗବାନ୍, ଜୀବାତ୍ମା ଓ ପରମାତ୍ମାର ଏହି ପ୍ରେମାଭିସାର ଚିର ପୁରାତନ ହେଲେହେଁ ନିତ୍ୟ-ନୂତନ । ଭାବୁକ ବିଶ୍ୱକବି ରବୀନ୍ଦ୍ରନାଥ ତାହାଙ୍କର ଏକ କବିତାରେ ଲେଖିଅଛନ୍ତି—

"ବେଦନା ଦୂତୀ ଗାହୁଛେ ଓରେ ପ୍ରାଣ,
ତୋମାର ଲାଗି ଜାଗେନ୍ ଭଗବାନ !
ନିଶିଥେ ଘନ ଅନ୍ଧକାରେ
ଡାକେନ୍ ତୋରେ ପ୍ରେମାଭିସାରେ ।
ଦୁଃଖ ଦିୟେ ରାଖେନ୍ ତୋର୍ ମାନ
ତୋମାର ଲାଗି ଜାଗେନ୍ ଭଗବାନ ।"
[ଗୀତାଞ୍ଜଳି—୧୭]

× × ×

"ଆକାଶ କାନ୍ଦେ ହାତାଶ ସମ,
ନାଇ ଯେ ଘୁମ ନୟନେ ମମ
ଦୁୟାର ଖୁଲି ହେ ପ୍ରିୟତମ
ଚାଇ ଯେ ବାରେ ବାରେ
ପରାଣସଖା ବନ୍ଧୁହେ ଆମାର ।"
[ଗୀତାଞ୍ଜଳି—୨୦]

ପ୍ରେମଭକ୍ତିସାଧନ ଦ୍ୱିବିଧ; ଯଥା : ସ୍ୱକୀୟା ଓ ପରକୀୟା ।

"ଦୁଇମତ ସେହି
ସ୍ୱକୀୟ ପରକୀୟା ଭେଦ ତହିଁ ।
ବିଷୟ ସମ୍ବନ୍ଧ ପୀରତି ରତି
ସ୍ୱକୀୟ ସମଞ୍ଜସ ସେ ବୋଲନ୍ତି ।

ଏଣୁ ସେ ଉଣା ପରକୀୟ ସାର
ସେ ପୁଣି ହୁଅଇ ବେନ ପ୍ରକାର
ପ୍ରୟୋଜନାର୍ଥିନୀ—
ସାଧାରଣୀ ଘୃତ ତାହାକୁ ଚହ୍ନି ।''

[ବିଦଗ୍ଧ ଚିନ୍ତାମଣି, ୪୬ ଛାନ୍ଦ]

କିନ୍ତୁ ଦିବାକର ଦାସ ସ୍ୱକୀୟା ସାଧନାକୁ ଉଚ୍ଚତର ସ୍ଥାନ ପ୍ରଦାନ କରି ଜଗନ୍ନାଥ ଦାସଙ୍କ ଭଗବତ୍ତଭକ୍ତିକୁ ସତୀ ନାରୀର ପତିପ୍ରେମ ସହିତ ତୁଳନା କରିଛନ୍ତି । ଯଥାର୍ଥରେ ଦେଖିବାକୁ ଗଲେ ପରକୀୟା ପ୍ରେମ ସଦୃଶ ଆବେଗ, ଉନ୍ମାଦନା ଓ ବିହ୍ୱଳତାର ପ୍ରାଚୁର୍ଯ୍ୟ ଏଥିରେ ନାହିଁ ସତ୍ୟ, ହେଲେହେଁ ସ୍ନିଗ୍ଧତା, ମଧୁରତା ଓ ଗାମ୍ଭୀର୍ଯ୍ୟରେ ଏହା ଅତୁଳନୀୟ । ଆତ୍ମଦାନ ଓ ଆତ୍ମାହୁତିର ମହିମାରେ ଏହା ମହିମାମୟ । ରବୀନ୍ଦ୍ରନାଥଙ୍କ ଭାଷାରେ—

"ଯେ ଭକ୍ତି ତୋମାରେ ଲୟେ ଧୈର୍ଯ୍ୟ ନାହି ମାନେ,
ମୁହୂର୍ତ୍ତେ ବିହ୍ୱଳ ହୟ ନୃତ୍ୟ-ଗୀତ ଗାନେ ।
ଭାବୋନ୍ମାଦ ମତ୍ତତାୟ, ସେଇ ଜ୍ଞାନହାରା,
ଉଦ୍‌ଭ୍ରାନ୍ତ ଉଚ୍ଛଳ ଫେନ ଭକ୍ତି-ମଦ-ଧାରା ।
ନାହି ଚାହି ନାଥ ! ଦାଓ ଶାନ୍ତ ଭକ୍ତି ଶାନ୍ତରସ,
ସ୍ନିଗ୍ଧ-ସୁଧାପୂର୍ଣ୍ଣ କରି ମଙ୍ଗଳ କଳସ ।।"

—ନୈବେଦ୍ୟ

ଭକ୍ତକବି ତୁଳସୀଦାସ ଓ ସନ୍ଥକବି କବିରଙ୍କ କବିତାଚୟ ସତୀ ନାରୀର ଏହି ଶୁଦ୍ଧ ପତିପ୍ରେମର ଜୟଗାନରେ ମୁଖରିତ ହୋଇଅଛି । ତେଣୁ ଏହା ହିଁ ପ୍ରେମଭକ୍ତିର ଶ୍ରେଷ୍ଠତମ ସାଧନା ।

ଜଗନ୍ନାଥ ଦାସଙ୍କର ଏକନିଷ୍ଠ ସାଧନାର ଅନ୍ୟ ଏକ ପରିଚୟ ପ୍ରଦାନ କରିବାକୁ ଯାଇ ଦିବାକର ଦାସ ଲେଖିଅଛନ୍ତି ଯେ, ସେ ସ୍ୱୀୟ ସାଧନାର ତପୋଭୂମି ପ୍ରିୟ ନୀଳାଚଳଧାମ ତ୍ୟାଗ କରି ଅନ୍ୟାନ୍ୟ ସାଧୁ ସନ୍ଥଙ୍କ ସଦୃଶ ତୀର୍ଥ ପର୍ଯ୍ୟଟନରେ ଯାଇନଥିଲେ ।

"କୁଞ୍ଜ ସଦନ ବୃନ୍ଦାବନ । ଗୋପ ମଥୁରା ଅଯୋଧ୍ୟା ପୁଣ ॥
ଦ୍ୱାରକା, କାଶୀ ଯେ ବଦରୀ । କୁରୁ, ମେରୁ ବୈକୁଣ୍ଠ ପୁରୀ ॥
ସମୁଦ୍ର ଗଙ୍ଗା ଯେ ଯମୁନା । ପୁଷ୍କର ଗୋଦାବରୀ ସିନା ॥
କାବେରୀ ସରଯୂ ଯେ ବ୍ରାହ୍ମୀ । ଗଙ୍ଗାସାଗର ସଙ୍ଗମୀ ॥
ରାଧାକୁଣ୍ଡ ଶ୍ୟାମକୁଣ୍ଡ ଯେ । ରବିକୁଣ୍ଡ ଚନ୍ଦ୍ରକୁଣ୍ଡ ଯେ ॥
ଏଥିକି ବାଞ୍ଛା ସେ ନ କଲେ । ଏକା ଜଗନ୍ନାଥ ଇଚ୍ଛିଲେ ॥"

[ଜ. ଚ. ଦଶମ ଅଧ୍ୟାୟ]

ସାଧନାର ପ୍ରାରମ୍ଭିକ ସୋପାନରେ ସାଧକକୁ ବିଧିନିଷେଧାତ୍ମକ ଆଗ୍ରହ ଅନୁଷ୍ଠାନ ଏବଂ କ୍ରିୟାକଳାପ ପ୍ରତି ସମ୍ୟକ୍ ଅବହିତ ହେବାକୁ ପଡ଼ିଥାଏ; କିନ୍ତୁ କିନ୍ତୁ କ୍ରମେ ସାଧନାର ପଥରେ ଅଗ୍ରସର ହେବା ସଙ୍ଗେ ସଙ୍ଗେ ସାଧକର ଚିତ୍ତ ଯେତେବେଳେ ଭଗବଦ୍ ବୁଦ୍ଧିରେ ସ୍ଥିର ହୋଇଯାଏ, ଦୃଶ୍ୟମାନ ଜଗତର ରୂପ, ରସ, ଗନ୍ଧ, ସ୍ପର୍ଶ ଆଦିର ଆକର୍ଷଣ ତାର ଅନ୍ତରକୁ ଆଉ ଚହଲାଇ ପାରେ ନାହିଁ । ସେ ହୁଏ ସ୍ଥିତପ୍ରଜ୍ଞ । କର୍ତ୍ତବ୍ୟ-ବୁଦ୍ଧିରେ ସେ ଅବଶ୍ୟ ସନ୍ଧ୍ୟା, ତର୍ପଣ, ଦେବ ଆରାଧନାଦି ନିତ୍ୟ ନୈମିତ୍ତିକ କର୍ମ କରି ଚାଲିଥାଏ; କିନ୍ତୁ ତାର ସେଥିରେ ସଂଶକ୍ତି ନ ଥାଏ । କର୍ମର ଫଳକୁ ବିଭୁ ଚରଣାରବିନ୍ଦରେ ଅର୍ପଣ କରି ସେ କର୍ମର ବନ୍ଧନରୁ ନିଜକୁ ମୁକ୍ତ ରଖେ । ସେତେବେଳେ ତାର ସାଧନା ହୁଏ ଅନ୍ତର୍ମୁଖୀ । ସେ ଜଗତକୁ ହରିମୟ ଦେଖେ । ତାର ଅନ୍ତରରେ ହୃଦୟ ଦେବତାର ଅବତରଣ ହୁଏ । ସେହି ଦେବତାଙ୍କ ସହିତ ଅନନ୍ତ ମିଳନର ରସ ଆସ୍ୱାଦନରେ ସେ ବିଭୋର ହୁଏ । ଭକ୍ତର ଏହି ଭାବବିଭୋଳ ଅବସ୍ଥାରେ ସେ କେତେବେଳେ ନାଚେ, ଗାଏ, ହସେ, କାନ୍ଦେ ଓ ପାଗଳପରି ପ୍ରଲାପ କରେ । ତାର ବାହ୍ୟଜ୍ଞାନ ଲୋପପାଏ । ବ୍ୟାବହାରିକ ଜଗତର ନୀତି ନିୟମ ଓ ନିନ୍ଦା ପ୍ରଶଂସା ପ୍ରତି ଭ୍ରୂକ୍ଷେପ ନକରି ଦିବାକର ଦାସ 'ଜଗନ୍ନାଥ ଚରିତାମୃତ'ରେ ଜଗନ୍ନାଥ ଦାସଙ୍କ ଭାବବିଭୋଳା ଅବସ୍ଥାର ଏକ ମନୋହର ଆଲେଖ୍ୟ ପ୍ରଦାନ କରିଅଛନ୍ତି ।

"ସେ ପୁଣ ଅଟନ୍ତି କେମନ୍ତ । ଦିବ୍ୟ ଗଉର ବର୍ଣ୍ଣ ଗାତ୍ର ॥
ଗୁରୁଙ୍କ ଆଜ୍ଞାରେ ତତ୍ପର । ପ୍ରେମ ଭାବରେ ଜରଜର ॥

ବେଦ ପୁରାଣ ବେଦ ବାଣୀ । ଆଦରେ ପଢ଼ାନ୍ତି ତା ପୁଣି ॥
କହନ୍ତି ବେଦର ବଚନ । ଯେ ଧର୍ମ ମାର୍ଗ ଆଚରଣ ॥
ବାହ୍ୟ ନିତ୍ୟକର୍ମ କରନ୍ତି । ଭିତରେ ରାଗ ମାର୍ଗ ଚିନ୍ତି ॥
ଶ୍ରୀହରି ନାମ ଚିନ୍ତାବାରେ । ଓଷ୍ଠ କମ୍ପଇ ଧୀରେ ଧୀରେ ॥
ପ୍ରେମରେ ଜର ଜର ଯେଣୁ । ପ୍ରଳାପ ପ୍ରାୟେ ବାକ୍ୟ ତେଣୁ ॥
ଉନ୍ମାଦ ଲାଗିଲା ପରାୟେ । ଗୁଳନ୍ତେ ପାଦ ଗତି ଶୋହେ ॥
କ୍ଷଣକେ ହୋନ୍ତି ଶାନ୍ତ ଚିତ୍ତ । ଉଚ୍ଚେ ଡାକନ୍ତି ଜଗନ୍ନାଥ ॥
ବଟ ତଳେଣ ପଡ଼ିଥାନ୍ତି । ଜଗମୋହନରେ ଗଡ଼ନ୍ତି ॥
ପ୍ରଭାତୁ ଦ୍ୱିତୀୟ ଧୂପରେ । ପଡ଼ିଣ ଥାନ୍ତି ପ୍ରେମଭରେ ॥
ଯେବେ ସେ ଚେତନା ଲଭନ୍ତି । ଆହା ଜଗନ୍ନାଥ ବୋଲନ୍ତି ॥
ରୁମ ଟାଙ୍କୁରୁ ଥାଏ ଦେହ । କଣ୍ଠ ଗଦ୍‌ଗଦ୍ ଶୁଭଇ ॥
ରାଧାକୃଷ୍ଣ ଯୁଗଳ ମୂର୍ତ୍ତି । ଚିତ୍ତରୁ କ୍ଷଣେ ନ ଛାଡ଼ନ୍ତି ॥

ଜଗନ୍ନାଥ ଦାସ ସ୍ୱରଚିତ ଭାଗବତର ଏକାଦଶ ସ୍କନ୍ଧ ପଞ୍ଚମ ଅଧ୍ୟାୟରେ ଉତ୍ତମ ଭକ୍ତ ଲକ୍ଷଣ ବର୍ଣ୍ଣନା ପ୍ରସଙ୍ଗରେ ଏହି ବିଷୟ ଉଲ୍ଲେଖ କରିଛନ୍ତି ।"

"ଧନ ବୈଷ୍ଣବ ଭକ୍ତ ସଧେ । ବିଷ୍ଣୁ ଭକତଙ୍କର ମଧ୍ୟେ ॥
କଣ୍ଠ କୁଣ୍ଠିତ ଜଡ଼ ମତି । ଦେହ ପୁଲକ ରୋମ ପନ୍ତି ॥
ଚିତ୍ତେ ଗୋବିନ୍ଦ ନାମସ୍ମରେ । ରୋଦନ କରେ ଉଚ୍ଚସ୍ୱରେ ॥
କ୍ଷଣେ ହସଇ, କ୍ଷଣେ ନାଚେ । ଘନ ଗର୍ଜ୍ଜନ କରେ ଉଚ୍ଚେ ॥
କ୍ଷଣକେ ଗାଏ ଶ୍ରୁତି ଗାଥା । କହଇ ଅଲୌକିକ କଥା ॥
କ୍ଷଣକେ କୃଷ୍ଣ ଗୁଣଗୁଣି । ଚକ୍ଷୁ ବୁଜଇ ହୋଇ ତୁନି ॥"

ସାଧୁ, ସନ୍ଥ ଓ ଭକ୍ତଗଣ ସାଧନାର ଶୀର୍ଷ ଦେଶରେ ଉପନୀତ ହୋଇ ମଧ୍ୟ କର୍ମରୁ ବିରତ ହୁଅନ୍ତି ନାହିଁ । କର୍ମର ମୋହ ସେମାନଙ୍କର ତୁଟିଥିଲେ ମଧ୍ୟ ଲୋକ ଶିକ୍ଷାର୍ଥ ସ୍ୱଧର୍ମାନୁଯାୟୀ ଈଶ୍ୱରାର୍ପଣ ବୁଦ୍ଧିରେ କର୍ମ କରିଯାଆନ୍ତି । ସେତେବେଳେ କର୍ମ ସାଧନା-ପଥର ପ୍ରତିବନ୍ଧକ ନ ହୋଇ ସହାୟକ ହୋଇ-ଥାଏ । ପ୍ରତ୍ୟେକ କର୍ମ ସେତେବେଳେ ହରିଚରଣାରବିନ୍ଦରେ, ଭକ୍ତି କୁସୁମାଞ୍ଜଳି ରୂପେ ବିବେଚିତ ହୁଏ । ଜଗତର ସିଦ୍ଧ ସାଧକମାନଙ୍କ ଦ୍ୱାରା ଆଚରିତ

ବିବିଧ କର୍ମକୁ ଏହି ଦୃଷ୍ଟିରୁ ବିଗ୍ଭର କରିବାକୁ ହେବ । ଦିବାକର ଦାସ ଜଗନ୍ନାଥ ଦାସଙ୍କ ଦିନଚର୍ଯ୍ୟାର ଯେଉଁ ମନୋଜ୍ଞ ବିବରଣୀ ପ୍ରଦାନ କରି ଅଛନ୍ତି ତହିଁରୁ ତାହାଙ୍କ ସାଧନା, ନିଷ୍ଠା ଓ ଐକାନ୍ତିକ ଭକ୍ତିର ସୁସ୍ପଷ୍ଟ ପରିଚୟ ମିଳେ ।

"ପ୍ରଭାତୁଁ ଉଠି ପ୍ରତିଦିନ । ସାରନ୍ତି ନିତ୍ୟ କର୍ମମାନ ॥
ମାଳା କଣ୍ଠେ ହରି ମନ୍ଦିର । ଶଙ୍ଖ ଚକ୍ର କାଚି ବାହାର ॥
ପାହାନ୍ତି ଅବକାଶ ବେଳେ । ସ୍ୱାମୀ ଯେ ପଶନ୍ତି ଦେଉଳେ ॥
ପ୍ରଭୁଙ୍କ ସେବାରେ ମିଶନ୍ତି । ଖଟଣି ସେବାରେ ରହନ୍ତି ॥
ନିଧୂପ ପାଞ୍ଚ ଅବକାଶ । ଯେ କାଳେ ଯେ ଅବା ପ୍ରବେଶ ॥
ବଡ଼ ସିଂହାର ପରିଯନ୍ତେ । ଥାନ୍ତି ଯେ ପ୍ରଭୁଙ୍କ ଅଗ୍ରତେ ॥
ପଲଙ୍କେ ପ୍ରଭୁଙ୍କୁ ଶୁଆଇ । ତେବେ ମଠକୁ ଯାନ୍ତି ସେହି ॥
ଆହ୍ଲାର ଷଣେ ଭୋଗଚନ୍ତି । ଅବଢ଼ା ସଙ୍ଗେ ନେଇଥାନ୍ତି ॥
ପାଞ୍ଚସାତ ସେ ବେଳମାନ । ନିର୍ମାଲ୍ୟ କରନ୍ତି ସେବନ ॥
ରାତ୍ରେ ବଞ୍ଚନ୍ତି ଉଜାଗର । ଭଜନ୍ତି ମନ୍ତ୍ରରାଜ ସାର ॥"

ଭକ୍ତ ଯେତେବେଳେ ସାଧନାରେ ନିତ୍ୟ ଅଗ୍ରସର ହୋଇ ସିଦ୍ଧିରେ ଉପନୀତ ହୁଏ, ସେତେବେଳେ ସନ୍ଧ୍ୟା, ସ୍ନାନ, ଜପ, ହୋମ ଓ ସ୍ୱାଧ୍ୟାୟ ଇତ୍ୟାଦି ବାହ୍ୟ ଆଚାର ଅନୁଷ୍ଠାନର ଆଉ ପ୍ରୟୋଜନ ଅନୁଭୂତ ହୁଏ ନାହିଁ । ସେତେବେଳେ ସେ ହରିପ୍ରେମରସ ପାନରେ ଆନନ୍ଦ ବିହ୍ୱଳ ହୋଇ ବିଧିନିଷେଧାତ୍ମକ କ୍ରିୟାନୁଷ୍ଠାନକୁ ତୁଚ୍ଛ ଜ୍ଞାନ କରନ୍ତି । "He who is liberated is lifted above the law." "ଯେ ମୁକ୍ତ ସେ ନିୟମର ଊର୍ଦ୍ଧ୍ୱ ଦେଶରେ ଅବସ୍ଥାନ କରନ୍ତି ।" (Recovery of Faith, page 125-Radha-krishnan ) ଭକ୍ତକବି ଦିବାକର ଦାସ ଜଗନ୍ନାଥ ଦାସଙ୍କ ସିଦ୍ଧାବସ୍ଥାର କ୍ରିୟାକଳାପ ବର୍ଣ୍ଣନା ପ୍ରସଙ୍ଗରେ ଉଲ୍ଲେଖ କରିଅଛନ୍ତି—

"ବ୍ରାହ୍ମଣ କୁଳର ବିଚାର । ସମସ୍ତ କଲେ ପରିହାର ॥
ସ୍ନାହାନ ସନ୍ଧ୍ୟା ଜପ ହୋମ । ପ୍ରାର୍ଥନା ଦେବତା ପୂଜନ ॥

ବୈଶ୍ୱଦେବ ଅତିଥି ପୂଜା । ସକଳ କଲେ ପରିତେଜ୍ୟା ॥
ଯତିଙ୍କ ଦାନ ଧର୍ମ ଯେତେ । ଆଦର ନ କଲେ ତା ଚିତ୍ତେ ॥
ବ୍ରାହ୍ମଣ କ୍ଷତ୍ରୀ ବୈଶ୍ୟଙ୍କର । ଯେ ବାସେ ବିଦୂର ଆଚାର ॥
ଚାରି ବର୍ଣ୍ଣ କର୍ମ ତେଜିଲେ । ଏକା ଜଗନ୍ନାଥ ଭଜିଲେ ॥
ପୁରାଣାଦି ବେଦ ଅଧ୍ୟାନ । ପୂର୍ବେ ଯେବେ ଥିଲା ପଠନ ॥
ତାହା ଛାଡ଼ିଲେ ଭକ୍ତବଳେ । ଆଶ୍ରୟ ଶ୍ରୀପାଦ କମଳେ ॥"

ସାଧନାର ପଥରେ ନିତ୍ୟ ଅଗ୍ରସର ହୋଇ ସାଧକ ଭକ୍ତ ଯେତେବେଳେ ସିଦ୍ଧିରେ ଉପନୀତ ହୁଏ, ସେତେବେଳେ ତାର ଜ୍ଞାତା-ଜ୍ଞେୟ, ସାଧ୍ୟ-ସାଧକ, ଭକ୍ତ-ଭଗବାନ, ଜୀବାତ୍ମା ଓ ପରମାତ୍ମା ଏ ପ୍ରକାର ଭେଦବୁଦ୍ଧି ଓ ଦ୍ୱୈତ ଭାବନା ବିଦୂରିତ ହୁଏ ଏବଂ ଏକ ଅଦ୍ୱୟ ଅନନ୍ୟପ୍ରେମ ଭାବନାରେ ତାର ଚିତ୍ତ ପରିପ୍ଲୁତ ହୁଏ । ସେତେବେଳେ ତାର ଆତ୍ମା ହରିମୟ ହୋଇଯାଏ । ସେ ବିଶ୍ୱର ଅଣୁ ପରମାଣୁରେ ପରମାତ୍ମାଙ୍କର ପ୍ରେମମୟ ସତ୍ତା ସନ୍ଦର୍ଶନ କରି ମୁଗ୍ଧ ବିହ୍ୱଳ ହୁଏ । ଏହି ଅବସ୍ଥାରେ ଭକ୍ତ ଭଗବାନଙ୍କଠାରୁ ନିଜକୁ ପୃଥକ ବୋଧ-କରେ ନାହିଁ । ଗଭୀର ତାଦାତ୍ମିକ ଭାବରେ ତାର ଚିତ୍ତ ମଗ୍ନ ହୁଏ ଏବଂ ସେତେବେଳେ ସେ ଆନନ୍ଦରେ ଆତ୍ମହରା ହୋଇ "ହେ ହରି, ତୁ ମୋହରି ମୋହରି" ବୋଲି ଚିତ୍କାରକରିଉଠେ । ଦେହରେ ଥାଇ ମଧ୍ୟ ସେ ଦେହାତୀତର ଆସ୍ୱାଦ ଅନୁଭବ କରେ ଏବଂ ମର୍ତ୍ତ୍ୟଲୋକରେ ବିଚରଣ କରି ମଧ୍ୟ ସେ ସର୍ବଦା ନିତ୍ୟଲୋକରେ ବିହାରକରେ । ଯଥାର୍ଥରେ କହିବାକୁ ଗଲେ ତାର ହୃଦୟରେ ପରମାତ୍ମାଙ୍କର ଆବିର୍ଭାବ ହୁଏ ।

"ସଃ କୀର୍ତ୍ତ୍ୟମାନଃ ଶୀଘ୍ରମେବାବିର୍ଭବତ୍ୟନୁଭାବୟତି ଭକ୍ତାନ୍ ।"
[ନାରଦ ଭକ୍ତିସୂତ୍ର-୮୦ ପୃଷ୍ଠା]

ଦିବାକର ଦାସ ଭକ୍ତଶିରୋମଣି ସାଧକବର ଜଗନ୍ନାଥ ଦାସଙ୍କର ସିଦ୍ଧାବସ୍ଥାରେ ଭଗବାନଙ୍କ ସହିତ ତାଙ୍କର ତାଦାତ୍ମିକଭାବର ଯେଉଁ ରମ୍ୟ ମଞ୍ଜୁଳ ବର୍ଣ୍ଣନା ପ୍ରଦାନ କରିଛନ୍ତି ତାହା ଅତ୍ୟନ୍ତ ଉପଭୋଗ୍ୟ ।

"ଜଗମୋହନ ଘର ଗୃହିଁ । ବୋଲନ୍ତି ମୋର ଧାମ ଏହି ॥
ମୁଁ ଏଥି ହୋଇଅଛୁ ଜାତ । କାଳେ ସେବିବି ଏହି ନାଥ ॥
ଏଥିରେ ଏ ଅଛୁ ଖମ୍ବସୋଲ । ଏ ଷୋଳ ଦଳଟି କମଳ ॥
କଳପବଟକୁ ଗୃହିଁଣ । ବିଗ୍ରହ କରୁଥାନ୍ତି ପୁଣ ॥
ଏଠାରେ ବିହାର କରନ୍ତି । କୋଟି ସଖି ଆସି ଖଟନ୍ତି ॥
ବିମଳାକ୍ଷୀଙ୍କ ଯେ ଦେଖନ୍ତି । ନିତ୍ୟସିଦ୍ଧି ବୋଲି ବିଚାରନ୍ତି ॥
ଗରୁଡ଼ ପଛେ କେବେ ଥାନ୍ତି । ଜଣାଣ ଆନ ଏ ବୋଲନ୍ତି ॥"

[ଜ. ଚ. ୭୩ ପୃଷ୍ଠା]

ଜଗତର ସାଧୁସନ୍ଥ ମହାତ୍ମାଗଣ ସ୍ୱ ମୁକ୍ତିସାଧନରେ ସନ୍ତୁଷ୍ଟ ନ ହୋଇ ସ୍ୱ ସାଧନାର ଫଳ ଯେପରି ଅନ୍ୟମାନେ ଭୋଗକରି ନିଜ ଜୀବନକୁ ସାର୍ଥକ କରିବେ ସେଥିପାଇଁ ଉଦ୍ୟମ କରିଥାନ୍ତି । ଭକ୍ତ କବି ଜଗନ୍ନାଥ ଦାସ ଯେଉଁ ହରିରସ ପାନ କରି କୃତାର୍ଥ ହୋଇଥିଲେ ଉତ୍କଳର ଜନସାଧାରଣ ତାହା ଆସ୍ୱାଦନ କରି ଅମୃତ ପଦବୀର ଅଭିଯାତ୍ରୀ ହୁଅନ୍ତୁ । ଏଥିଲାଗି ତାଙ୍କର ଚିତ୍ତ ବ୍ୟାକୁଳିତ ହେଉଥିଲା । ତେଣୁ ସ୍ୱରଚିତ ଓଡ଼ିଆ ଭାଗବତରେ ସେ ଏକାନ୍ତ କାତର କଣ୍ଠରେ ଭକ୍ତି ସୁଧାପାନ କରିବା ନିମିତ୍ତ ପାପତାପ କ୍ଳିଷ୍ଟ ଜଗତର ନରନାରୀଗଣଙ୍କୁ ହୃଦୟର ନିବେଦନ ଜଣାଇଅଛନ୍ତି ।

"ଯେ ହରି ଚରଣ କମଳେ । ମୋହର ଭକତି ନିଶ୍ଚଳେ ॥
କୃଷ୍ଣ ଚରଣେ କରି ଆଶ । କହଇ ଜଗନ୍ନାଥ ଦାସ ॥
ସୁଜନେ ଶୁଣ ହରିରସ । ତୁମ୍ଭ ଚରଣର ମୁଁ ଦାସ ॥
ନମସ୍ତେ ଦେବ ନାରାୟଣ । ଭବ ଜଳରୁ କର ତ୍ରାଣ ॥
କହଇ ଦାସ ଜଗନ୍ନାଥ । ତ୍ରାହି କରିବେ ଜଗନ୍ନାଥ ॥
ଶ୍ରୀହରି ଚରଣ ସରୋଜ । ଭାବଇ ଜଗନ୍ନାଥ ଦ୍ୱିଜ ॥"



# ପଞ୍ଚମ ଅଧ୍ୟାୟ

## ସଖ୍ୟ ଓ ମୈତ୍ରୀ

ସାଧୁସଙ୍ଗ ଅଧ୍ୟାତ୍ମ ସାଧନାର ଏକ ପ୍ରଧାନ ଅଙ୍ଗ । ଶ୍ରୀମଦ୍ ଭାଗବତରେ ଲେଖାଅଛି—

"ଦେଖ ଏ ସଂସାର ସାଗର । ଅତି ଉତ୍କଟ ଭୟଙ୍କର ॥
କର୍ମ ବାସନା ଚକ୍ର ବନ୍ଦୀ । ଜୀବ ସଞ୍ଚରେ ନିରବଧି ॥
ପୁଣି ଉଠଇ ପୁଣି ବୁଡ଼େ । ନିଶ୍ଚିତ ପଥ ନିତ୍ୟ ଛୁଡ଼େ ॥
ଏ ଘୋର ସଂସାର ତରଙ୍ଗ । ନିସ୍ତାର ହେତୁ ସାଧୁସଙ୍ଗ ॥
ସାଧୁ ସଙ୍ଗମ ନାବେ ବସି । ନିସ୍ତରେ ଘୋର ଜଳରାଶି ॥
ସକଳ ଜନ୍ତୁଙ୍କ ଜୀବନ । ଯେସନ୍ତେ ସଂସାରେହୁଏ ମଗ୍ନ ॥
ଆରତ ଜନ ପ୍ରାଣୀଙ୍କର । ମୁଁ ଯେସନ୍ତେ ଶରଣ ପଞ୍ଜର ॥
ପର ଲୋକର ପାଇଁ ଜନ । ଯେସନ୍ତେ ଭରସା କରେ ଧର୍ମ ॥
ସନ୍ଥ ଚରଣ ସେହି ମତେ । ନିସ୍ତାର ହେତୁ ଏ ଜଗତେ ॥"

[ଭାଗବତ—୧୧ ସ୍କନ୍ଧ, ୯ ଅଧ୍ୟାୟ]

ମହାରାଷ୍ଟ୍ରର ସନ୍ଥକବି ତୁକାରାମ ଲେଖିଛନ୍ତି—

"ବୈରାଗ୍ୟାଚେ ଭାଗ୍ୟ ସନ୍ତ ସଙ୍ଗ ହାଚ ଲଭ
ସନ୍ତ କୃପେଚ ହେ ଦୀପ କରି ସାଧକ ନିଷ୍ପାପ
ତୁକା ପ୍ରେମେ ନାଚେ ଗାଏ ଜାଣିସ୍ଥାନ୍ତ ବରେଜ ଜଏ ।"

ସନ୍ଥସଙ୍ଗ ଲାଭ ହିଁ ବୈରାଗ୍ୟଜନିତ ସୌଭାଗ୍ୟ । ସନ୍ଥ-କୃପା ରୂପକ ଦୀପ ସାଧକକୁ ନିଷ୍ପାପ କରିଦିଏ । ସେହି ସନ୍ଥମାନଙ୍କ ମଧ୍ୟରେ ନାଚ ଓ ଗାନ କରୁ କରୁ ସେ ଭଗବତ୍ ଚିନ୍ତନରେ ନିମଗ୍ନ ହୋଇଯାଏ ।

ପୁରୁଷୋତ୍ତମ କ୍ଷେତ୍ର ବହୁ ପ୍ରାଚୀନ କାଳରୁ ଧର୍ମାଲୋଚନା ଓ ବିଦ୍ୟା ଚର୍ଚ୍ଚା ପାଇଁ ପ୍ରସିଦ୍ଧି ଲାଭକରିଅଛି । ସ୍ୱ ସ୍ୱ ଧର୍ମର ପ୍ରତିଷ୍ଠା ଓ ମତବାଦର ପ୍ରଚାର ପାଇଁ ଆଗତ ବହୁ ସାଧୁ ସନ୍ଥ ଓ ମହାପୁରୁଷମାନଙ୍କର ଏହା ଲୀଳା-ସ୍ଥଳୀ ହୋଇଆସିଛି । ତେଣୁ ମହାପୁରୁଷ ଜଗନ୍ନାଥ ଦାସ ବହୁ ସାଧୁ ସନ୍ଥ ଓ ସଜ୍ଜନମାନଙ୍କ ସଂସ୍ପର୍ଶରେ ଆସିଥିବେ ଓ ଅନେକଙ୍କ ସହିତ ତାଙ୍କର ଘନିଷ୍ଠ ବନ୍ଧୁତା ସ୍ଥାପିତ ହୋଇଥିବ । କିନ୍ତୁ ସେ ସବୁର ଇତିହାସ ଅତୀତର ଗର୍ଭରେ ଚିରକାଳ ପାଇଁ ଲୀନ ହୋଇଅଛି ।

ପୂର୍ବେ ଆଲୋଚିତ ହୋଇଅଛି ଯେ ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରତିଷ୍ଠାତା ଶ୍ରୀଚୈତନ୍ୟ ଦେବଙ୍କ ସହିତ ଜଗନ୍ନାଥ ଦାସଙ୍କର ଘନିଷ୍ଠ ବନ୍ଧୁତା ଥିଲା ଏବଂ ଶ୍ରୀଚୈତନ୍ୟ ଜଗନ୍ନାଥ ଦାସଙ୍କର ଅଲୌକିକ ପ୍ରତିଭା, ଉଦାର ମହାନୁଭବତା ଏବଂ ଏକନିଷ୍ଠ ସାଧନାରେ ମୁଗ୍ଧ ହୋଇ ତାଙ୍କୁ "ଅତିବଡ଼" ଉପାଧି ପ୍ରଦାନ କରିଥିଲେ । ଶ୍ରୀଚୈତନ୍ୟ ଜଗନ୍ନାଥଙ୍କର ଦୀକ୍ଷାଗୁରୁ ନହେଲେ ମଧ୍ୟ, ସେ ତାହାଙ୍କୁ ଗୁରୁ ଜ୍ଞାନରେ ସେବା କରୁଥିଲେ । ଏଥିରୁ ଜଗନ୍ନାଥଙ୍କ ଉଦାର ହୃଦୟବତ୍ତାର ପରିଚୟ ମିଳେ ।

"ଏମନ୍ତେ ଗଲା କେତେଦିନ । ସେ ଜଗନ୍ନାଥ ଦାସେ ପୁଣ ॥
ଦିନକୁ ଦିନ ନୂଆ ପ୍ରୀତି । ଶ୍ରୀଚଇତନ୍ୟେ କଲେ ଭକ୍ତି ॥
ପ୍ରଭାତୁ ଉଠି ଦଣ୍ଡବତ । କରାଇ ଶ୍ରୀମୁଖ ଧଉତ ॥
ଶୟନ ଶଯ୍ୟାକୁ ମାର୍ଜନ । ଶ୍ରୀହସ୍ତେ ମୃତ୍ତିକା ଶୋଧନ ॥
ଦନ୍ତକାଷ୍ଠ ଦନ୍ତ ଧାବନ । ସ୍ନାନ ମାର୍ଜନ ଜଳପାନ ॥
ଶ୍ରୀଅଙ୍ଗ ପ୍ରୋକ୍ଷଣ ବିଧାନ । ନବୀନ ବସ୍ତ୍ର ପରିଧାନ ॥
ସନ୍ୟାସ ନିତ୍ୟକର୍ମମାନ । ଦଣ୍ଡକମଣ୍ଡଳୁ ମାର୍ଜନ ॥
ଏ ରୂପେ ଯେ ବା କର୍ମମାନ । ପ୍ରଭୁଙ୍କ ସେବା ନିତ୍ୟକର୍ମ ॥"

[ଜ. ଚ. ତୃତୀୟ ଅଧ୍ୟାୟ]

ଉତ୍କଳର ଗୁଣଗ୍ରାହୀ ପରମ ବୈଷ୍ଣବ ମହାରାଜା ପ୍ରତାପରୁଦ୍ରଙ୍କ ସହିତ ମହାତ୍ମା ଜଗନ୍ନାଥ ଦାସଙ୍କର ଅତ୍ୟନ୍ତ ସଦ୍‌ଭାବ ଥିଲା । ପ୍ରଥମେ ଅବଶ୍ୟ ସେ ନିଜର ଉଦାର ଧର୍ମମତ ଓ ବୈପ୍ଲବିକ ଚିନ୍ତାଧାରା ହେତୁ ତାହାଙ୍କର ବିଷଦୃଷ୍ଟିରେ

ପଢ଼ୁଥିଲେ ଏବଂ ନାନା ଭାବରେ ନିର୍ଯାତିତ ଓ ଲାଞ୍ଛିତ ହୋଇଥିଲେ । କିନ୍ତୁ ପରେ ତାହାଙ୍କ ଚରିତର ମହାତ୍ମ୍ୟ ହୃଦୟଙ୍ଗମ କରି ରାଜା ତାଙ୍କଠାରେ କ୍ଷମା ଭିକ୍ଷା କରିଥିଲେ । ମହାରାଜା ପ୍ରତାପରୁଦ୍ର ତାହାଙ୍କୁ ଗୁରୁ ଜ୍ଞାନରେ ସମ୍ମାନ ପ୍ରଦର୍ଶନ କରୁଥିଲେ ଏବଂ ପାଟରାଣୀ ଗୌରୀଦେବୀଙ୍କୁ ତାହାଙ୍କ ଦ୍ୱାରା ଦୀକ୍ଷା ଦାନର ବ୍ୟବସ୍ଥା କରିଥିଲେ ।

ପୁରୀ ରାଜଦରବାରର ପ୍ରସିଦ୍ଧ ଦାର୍ଶନିକ ପଣ୍ଡିତ ପ୍ରବର ଚୈତନ୍ୟଭକ୍ତ ସାର୍ବଭୌମଙ୍କ ସହିତ ତାଙ୍କର ଘନିଷ୍ଠ ସଖ୍ୟଭାବ ଥିବା ବିଷୟ ଜଗନ୍ନାଥ ଚରିତାମୃତ ପାଠରୁ ସୂଚିତ ହୁଏ ।

"ରାଜା କହିଲେ ପଣ୍ଡିତଙ୍କୁ । ଆଶ୍ଚର୍ଯ୍ୟ ମଣିଲୁ ମନକୁ ॥
ପୁରୁଷ ଅଙ୍ଗେ ଜଗନ୍ନାଥ । ଦାସେ ହୋଇଲେ ସ୍ତ୍ରୀ ଚରିତ ॥
ସେ ବାକ୍ୟ ସାର୍ବଭୌମ ଶୁଣି । ବୋଇଲେ ଶୁଣ ନୃପମଣି ॥
ସେ ଜଗନ୍ନାଥ ଦାସ ସେ ଟି । ତତ୍ତ୍ୱ ଭକ୍ତ ହୃଦେ ଭାବନ୍ତି ॥
ପୁରୁଷ ଅଙ୍ଗରେ ରାଧା ଭାବ । ସ୍ତ୍ରୀରିଙ୍କ ଗତ ଏବେ ଲଭ ॥
ମନୁଷ୍ୟ ଶରୀରକୁ ବହି । ଏ ଭକ୍ତି କେହି କରି ନାହିଁ ॥
ପୁରୁଷ ହୋଇ ହେଲେ ନାରୀ । ମହାନ୍ତ ଭାବକୁ ବିଚାରି ॥
ଯେ ଜଗନ୍ନାଥ ଦାସ ଏହି । ସାକ୍ଷାତେ ରାଧା ରୂପ ହୋଇ ॥
ବୈଷ୍ଣବ ପଦ ସିଦ୍ଧି ଅର୍ଥେ । ଆରାଧ୍ୟ କରି ମନ୍ତ୍ର ଚିତ୍ତେ ॥
ମନୁଷ୍ୟ ମଧ୍ୟେ ସିଦ୍ଧ ସେହି । ଉତ୍ତମ ଭକ୍ତି ଯେ ସାଧଇ ॥
ଏ ସାର୍ବଭୌମଙ୍କ ଉତ୍ତର । ପୁଣି କହିଲେ ନୃପବର ॥"

[ଜ. ଚ. ୧୧ଶ ଅଧ୍ୟାୟ]

ବଳରାମ, ଅଚ୍ୟୁତାନନ୍ଦ, ଯଶୋବନ୍ତ ଓ ଶିଶୁ ଅନନ୍ତ ଆଦି ଉତ୍କଳୀୟ ବୈଷ୍ଣବମାନଙ୍କ ସହିତ ଜଗନ୍ନାଥଙ୍କର ଘନିଷ୍ଠ ସମ୍ବନ୍ଧ ଥିଲା । ଏହି ପାଞ୍ଚଜଣଙ୍କ ମଧ୍ୟରେ ଏକଧର୍ମିତ୍ୱ ତଥା ପରସ୍ପର ମଧ୍ୟରେ ଘନିଷ୍ଠ ବନ୍ଧୁତା ହେତୁ ଓଡ଼ିଆ ସାହିତ୍ୟର ଇତିହାସରେ ଏହି ପଞ୍ଚ ମହାଜନଙ୍କୁ ପଞ୍ଚସଖା ନାମରେ ଅଭିହିତ କରାଯାଇଥାଏ । ଅଚ୍ୟୁତାନନ୍ଦଙ୍କ 'ଶୂନ୍ୟ ସଂହିତା' ଯଶୋବନ୍ତଙ୍କ 'ପ୍ରେମଭକ୍ତି

ବ୍ରହ୍ମ ଗୀତା', ଶିଶୁ ଅନନ୍ତଙ୍କ 'ଗୁପ୍ତ' ଏବଂ ନନ୍ଦଦାସଙ୍କ 'ଅଣାକାର ସଂହିତା' ଇତ୍ୟାଦି ଗ୍ରନ୍ଥଚୟରୁ ଏହା ସ୍ପଷ୍ଟ ପ୍ରତିପାଦିତ ହୁଏ ।

''ଅବତାର ଶ୍ରେଣୀକି ଅନୁସରି । ଜନ୍ମ ଲଭିଣ ପୁଣି ହରି ॥
ଅଚ୍ୟୁତ ଅନନ୍ତ ଯେ ଯଶୋବନ୍ତ । ବଳରାମ ପୁଣି ଜଗନ୍ନାଥ ॥
କଳିଯୁଗେ କରୁଣା ପ୍ରକାଶ କରି । ତୁମ୍ଭ ଆଜ୍ଞା ଶିରେ ଧରି ॥

× × ×

ଆପଣେ ଚୈତନ୍ୟ ପ୍ରଭୁ ସଖାବୃନ୍ଦ ଘେନି ।
ପଞ୍ଚସଖା ମୂଳେ ବାର ସପ୍ତ ଭକ୍ତ ମୁନି ॥

× × ×

ଅନନ୍ତ ଅଚ୍ୟୁତ ଆଦି ଯଶୋବନ୍ତ ବଳରାମ ଜଗନ୍ନାଥ ।
ଏ ପଞ୍ଚସଖା ହିଁ ନୃତ୍ୟ କରି ଗଲେ ଗୌରାଙ୍ଗଚନ୍ଦ୍ର ସଙ୍ଗତ ॥

[ଶୂନ୍ୟ ସଂହିତା]

ତହୁଁ ଲୀଳା ନମନ୍ତେଣ ଗୋସାଇଁ,
ପଞ୍ଚସଖାଙ୍କୁ ଗୁରି ଆଜ୍ଞା ଦେଇ ।
ମର୍ତ୍ତ୍ୟରେ ତୁମ୍ଭେ ହୁଅ ଉତ୍ପନ୍ନ,
ପଞ୍ଚ ପାପୀଙ୍କ କରି ନିସ୍ତାରଣ ।

[ଗୁପ୍ତ-ଶିଶୁ ଅନନ୍ତ]

କୃଷ୍ଣ କଲ୍ୟାଣରୁ ପୁଣି ଆମ୍ଭ ଜନ୍ମ ହେଲା ।
ରାଧା-କୃଷ୍ଣଙ୍କର ଲୀଳା ପ୍ରକାଶିବା ପାଇଁ ।
ଜନ୍ମ ହୋଇଲୁ ଆମ୍ଭେ ପଞ୍ଚସଖା ତହୁଁ ।

[ଗୋପାଳଙ୍କ ଓଗାଳ, ଅଷ୍ଟମଖଣ୍ଡ]

× × ×

ଦକ୍ଷିଣ ବାରିନିଧି ତଟେ କଳ୍ପବଟ ମୂଳେ ।
ନିଜ ସୁଖ ବିହାର କରନ୍ତି କୁତୂହଳେ ॥
ଆଶ୍ରେ କଲି ଜନଙ୍କୁ ନିସ୍ତରି କଷ୍ଟୁ ତାରି ।
ଅଭକ୍ତ ଜନରେ ଦୟା ଅନ୍ନ ବସ୍ତ୍ର କରି ॥

ଏବଂଭୂତ ଯେଉଁ ପ୍ରଭୁ ତାଙ୍କ ପଞ୍ଚଭୂତ ।
ଏକ ଭୂତ ସଖା ଯେ ଅଟଇ ଯଶୋବନ୍ତ ॥

[ଶିବ ସ୍ୱରୋଦୟ—୪୭୫ ପଦ]

ବଉଧ ରୂପେ କମ୍ବୁଧର । ଚୈତନ୍ୟ ସ୍ୱରୂପେ ବିହାର ॥
ପଞ୍ଚସଖାଏ ଜନ୍ମ ହୋଇ । ସେବିବେ ଚୈତନ୍ୟ ଗୋସାଇଁ ॥
ଦ୍ୱାଦଶ ଯୋଜନ ଭିତର । ଜନ୍ମିଲେ ଶ୍ରୀନୀଳକନ୍ଦର ॥
ସୁବଳ ସଖା ବଳରାମ । ନନ୍ଦ ଘରେ ଯେ ଅନୁପମ ॥
ଦାମ ଯେ ଅନନ୍ତ ମୂରତି । ଚୈତନ୍ୟ ହଳାୟୁଧ ପେତି ॥
ସୁବାହୁ ଯଶୋବନ୍ତ ହୋଇ । ସ୍ୱରୂପ ଘର ପ୍ରକାଶଇ ॥
ସୁଦାମ ଉଦୟେ ଅଚ୍ୟୁତ । ପ୍ରକାଶ ଘର ଯେ ବିଦିତ ॥
ଶ୍ରୀବତ୍ସ ଜଗନ୍ନାଥ ଦାସ । ଅବତାର ପଥ ପ୍ରକାଶ ॥
ଏମନ୍ତେ ହୋଇ ପଞ୍ଚ ଶାଖା । ଚୈତନ୍ୟ ପ୍ରଭୁ ସଙ୍ଗେ ଦେଖା ॥
କହନ୍ତି ଚୈତନ୍ୟ ଗୋସାଇଁ । ପଞ୍ଚସଖାଙ୍କୁ ପାଶେ ଥାଇ ॥
ବୋଇଲେ ଜଗନ୍ନାଥ ଦାସ । ମୋର ନିକଟ ବେଗେ ଆସ ॥
ପୁଣି ବୋଇଲେ ବଳରାମ । ଆସ ମୋ ନିକଟ ବହନ ॥
ଯଶୋବନ୍ତ ଦାସ ତୁ ଆସ । ଅଚ୍ୟୁତାନନ୍ଦ ଶିଶୁ ଦାସ ॥
ପ୍ରଭୁଙ୍କ ଶ୍ରୀମୁଖ ବଚନ । ଥାଇଲେ ଗଲୁ ସନ୍ନିଧାନ ॥"

[ଚୈ. ଭା.—୪୮ ଅଧ୍ୟାୟ]

ଉପରୋକ୍ତ ଉଦ୍ଧୃତାଂଶ ସମୂହରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ ଏହି ପଞ୍ଚସଖାଙ୍କ ମଧ୍ୟରେ ଘନିଷ୍ଠ ସମ୍ବନ୍ଧ ଓ ସହଯୋଗ ଥିଲା ଏବଂ ସେମାନେ ସମସ୍ତେ ଚୈତନ୍ୟଙ୍କ ସହିତ ନିବିଡ଼ ବନ୍ଧୁତା ଓ ସଖ୍ୟସୂତ୍ରରେ ଆବଦ୍ଧ ହୋଇ ଉତ୍କଳର ସେହି ନବଜାଗରଣ ଦିନରେ ଯେଉଁ ଧର୍ମ ବିପ୍ଲବ ସଂଘଟିତ ହୋଇଥିଲା ତାର ପରିଚାଳନା କରିଥିଲେ । ଓଡ଼ିଆ ସାହିତ୍ୟ, ସଂସ୍କୃତି ଓ ଧର୍ମର ଇତିହାସରେ ଉପରୋକ୍ତ 'ପଞ୍ଚସଖା' ନାଣ ପ୍ରସିଦ୍ଧି ଲାଭ କରିଅଛୁ ଓ ପଞ୍ଚସଖାଙ୍କ ଧର୍ମଗତ ଓ ସାହିତ୍ୟ ଦେନ ବହୁ ଆଲୋଚନାମୂଳକ ଗ୍ରନ୍ଥ

ସଙ୍କଳିତ ହୋଇଅଛି । କିନ୍ତୁ ସମ୍ପ୍ରତି କୌଣସି କୌଣସି ସମାଲୋଚକ 'ପଞ୍ଚସଖା' ନାମକରଣରେ ଯଥାର୍ଥତା ଓ ଐତିହାସିକତା ଯେନ ଭିନ୍ନମତ ପୋଷଣ କରୁଥିବା ଜଣାଯାଏ (୧) ।

'ପଞ୍ଚସଖା' ଶବ୍ଦ କେବେ ଓ କାହାଦ୍ୱାରା ସୃଷ୍ଟ ହୋଇଥିଲା ତାହା ସଠିକ୍ ଭାବରେ କହିବା ସମ୍ଭବପର ନହେଲେ ମଧ୍ୟ, ସେମାନଙ୍କର ସମକାଳୀନତା ଓ ସମାନ ଧର୍ମିତ୍ୱ ସମ୍ବନ୍ଧରେ ସନ୍ଦେହର ଅବକାଶ ରହିନପାରେ । ବୟସର ତାରତମ୍ୟ ସତ୍ତ୍ୱେ ସେମାନେ ଯେ ସମକାଳୀନ ଏବଂ ପରସ୍ପରର ସହଯୋଗୀ ଥିଲେ ଏହା ଉପରୋକ୍ତ ଉଦ୍ଧୃତ ସମୂହରୁ ସ୍ପଷ୍ଟ ପ୍ରତିପାଦିତହୁଏ । ଅବଶ୍ୟ ବଳରାମ ଦାସ ଓ ଜଗନ୍ନାଥ ଦାସ ସେମାନଙ୍କ ଦ୍ୱାରା ରଚିତ ଗ୍ରନ୍ଥ ସମୂହରେ ନିଜକୁ ପଞ୍ଚସଖାଙ୍କ ଅନ୍ତର୍ଭୁକ୍ତ ଏକଭୂତ ସଖାରୂପରେ ଅଭିହିତ କରିନାହାନ୍ତି କିମ୍ବା ଅନ୍ୟ ଗୁରୁ ସଖାଙ୍କର ନାମୋଲ୍ଲେଖ କରିନାହାନ୍ତି । ଦିବାକର ଦାସ ସ୍ୱରଚିତ ଜଗନ୍ନାଥ ଚରିତାମୃତ ଗ୍ରନ୍ଥରେ ବହୁ ଉତ୍କଳୀୟ ଓ ଗୌଡ଼ୀୟ ବୈଷ୍ଣବମାନଙ୍କ ନାମୋଲ୍ଲେଖ କରିଥିଲେ ହେଁ, ଯଶୋବନ୍ତ, ଶିଶୁ ଅନନ୍ତ ଓ ଅଚ୍ୟୁତାନନ୍ଦଙ୍କ ସମ୍ବନ୍ଧରେ କିଛି କହିନାହାନ୍ତି । ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତରେ, "ଜଗନ୍ନାଥ ଚରିତାମୃତ ବର୍ଣ୍ଣିତ ଗୁରୁ ଗୋପାଳ ଗୋସାଇଁ ଅଚ୍ୟୁତାନନ୍ଦଙ୍କ ବ୍ୟତୀତ ଅନ୍ୟ କେହି ନୁହନ୍ତି ।" (୨) ଗୋପାଳ ସମ୍ପ୍ରଦାୟର ଗୁରୁରୂପେ ଅଚ୍ୟୁତାନନ୍ଦ ସୁପରିଚିତ ଓ ଅଦ୍ୟାବଧି ପୂଜିତ । ନେମାଳ ଗ୍ରାମରେ ଅବସ୍ଥିତ ଅଚ୍ୟୁତାନନ୍ଦଙ୍କ ସମାଧି ପୀଠରେ ସେବାପୂଜା କରିବାର ଅଧିକାର ଗୋପାଳମାନଙ୍କର ରହିଅଛି । ତେଣୁ ଡକ୍ଟର ମହାନ୍ତିଙ୍କର ଏ ମତ ଯଥାର୍ଥ । ଯଶୋବନ୍ତ, ଶିଶୁ ଅନନ୍ତ ଏବଂ ପଞ୍ଚସଖା ନାମକରଣ ସମ୍ବନ୍ଧରେ ଦିବାକର ଦାସଙ୍କ ନୀରବତା ରହସ୍ୟଜନକ ହେଲେହେଁ ଏହାକୁ ପଞ୍ଚସଖାଙ୍କ ସମକାଳୀନତା ବିରୁଦ୍ଧରେ ଏକ ଯୁକ୍ତିରୂପେ ଉପସ୍ଥାପିତ କରାଯାଇ ନ ପାରେ । କାରଣ ଅଚ୍ୟୁତ, ଯଶୋବନ୍ତ ଏବଂ 'ଚୈତନ୍ୟ ଭାଗବତ' ରଚୟିତା ଈଶ୍ୱର

---

(୧) ଓଡ଼ିଆ ସାହିତ୍ୟର ମୂଲ୍ୟବୋଧ—ଶ୍ରୀ ସଚ୍ଚି ରାଉତରାୟ ।

(୨) ଅଣାକାର ସଂହିତାର ମୁଖବନ୍ଧ ।

ଦାସଙ୍କ ରଚନାବଳୀରେ ଏହ୍ପରି ସୁସ୍ପଷ୍ଟ ଉଲ୍ଲେଖ ରହିଅଛି । ଏଥିରୁ କେବଳ ଏତିକି ସୂଚିତ ହୁଏ ଯେ 'ଜଗନ୍ନାଥ ଚରିତାମୃତ'ର ରଚନାକାଳ, ଅର୍ଥାତ ସପ୍ତଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ପର୍ଯ୍ୟନ୍ତ, ପଞ୍ଚସଖା ପରିକଳ୍ପନା ତାର ସାଂପ୍ରତିକ ପ୍ରତିଷ୍ଠାରେ ଉପନୀତ ହୋଇନଥିଲା । କାଳକ୍ରମେ ଏହା ଲୋକ ପରଂପରାରେ ପ୍ରଚଳିତ ହୋଇ ଅଷ୍ଟାଦଶ ଶତାବ୍ଦୀ ବେଳକୁ ବେଶ୍ ଜନପ୍ରିୟ ହୋଇ ସାରିଥିଲା । ପଞ୍ଚସଖା ଶବ୍ଦ କୌଣସି ନିର୍ଦ୍ଦିଷ୍ଟ ଐତିହାସିକ ତଥ୍ୟ ବା ଘଟନା ଉପରେ ପ୍ରତିଷ୍ଠିତ ହୋଇ ନ ଥିଲେ ମଧ୍ୟ, କାଳକ୍ରମେ ଓଡ଼ିଶାର ସାହିତ୍ୟ, ଧର୍ମ ଓ ସଂସ୍କୃତିର ଇତିହାସରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିବାକୁ ସମର୍ଥ ହୋଇଅଛି । ପଞ୍ଚସଖା ଶବ୍ଦର ଅର୍ଥ ଯେନ ମଧ୍ୟ ମତାନୈକ୍ୟ ଦୃଷ୍ଟହୁଏ । ଯଶୋବନ୍ତ, ଅଚ୍ୟୁତ, ଅନନ୍ତ ଏବଂ ଈଶ୍ୱର ଦାସ 'ପଞ୍ଚସଖା' ଶବ୍ଦକୁ ଚୈତନ୍ୟଙ୍କ ପଞ୍ଚସଖା ଅର୍ଥରେ ବ୍ୟବହାର କରିଅଛନ୍ତି । ଏଥି ସଙ୍ଗେ ସଙ୍ଗେ ଏକଥା ମଧ୍ୟ ଉଲ୍ଲେଖ ଅଛି ଯେ, ଏହି ପଞ୍ଚସଖା ଯୁଗେ ଯୁଗେ ବିଷ୍ଣୁଙ୍କର ସଖା ବା ସେବକ ରୂପେ ଆବିର୍ଭୂତ ହୋଇ ଲୀଳା କରିଯାଇଅଛନ୍ତି । 'ସଖା' ଶବ୍ଦ ଏଠାରେ ବିଷ୍ଣୁସେବକ ବା ଭକ୍ତ ଅର୍ଥରେ ବ୍ୟବହୃତ ହୋଇଅଛି । ଏହି ପାଞ୍ଚଜଣ ଭକ୍ତ ସମକାଳୀନ ଥିବାରୁ ଏବଂ ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଉତ୍କଳର ଧର୍ମଜାଗରଣରେ ନେତୃତ୍ୱ ନେଇଥିବାରୁ, ଏମାନେ କାଳକ୍ରମେ ପଞ୍ଚସଖା ନାମରେ ପ୍ରସିଦ୍ଧି ଲଭ କରିଅଛନ୍ତି । ବୃନ୍ଦାବନର ରୂପ ସନାତନାଦି ଷଡ଼୍‌ଗୋସ୍ୱାମୀ ଗୌଡ଼ୀୟ ବୈଷ୍ଣବଧର୍ମକୁ ଏକ ନିର୍ଦ୍ଦିଷ୍ଟ ରୂପ ଦାନ କଲାପରି ଉକ୍ତ ପଞ୍ଚସଖା ସେମାନଙ୍କ ରଚନାବଳୀ ଓ ଧର୍ମପ୍ରଚାରଦ୍ୱାରା ଉତ୍କଳୀୟ ବୈଷ୍ଣବ ଧର୍ମକୁ ଏକ ନିର୍ଦ୍ଦିଷ୍ଟ ରୂପ ଦାନ କରିଥିଲେ । ଏହି କାରଣରୁ ଏଯୁଗକୁ ପଞ୍ଚସଖା ଯୁଗ ଓ ଏ ଧର୍ମକୁ ପଞ୍ଚସଖା ଧର୍ମ ବୋଲି କହିବାରେ କୌଣସି ଅଯୌକ୍ତିକତା ନାହିଁ ।

**ପଞ୍ଚସଖା ବନାମ ପଞ୍ଚଶାଖା :**

କାହାରି କାହାରି ମତରେ ଏ ପଞ୍ଚ ସଖା ଯଥାର୍ଥରେ ପଞ୍ଚଶାଖା । ଈଶ୍ୱର ଦାସ ତାହାଙ୍କ 'ଚୈତନ୍ୟ ଭାଗବତ'ରେ ପଞ୍ଚଶାଖା ଶବ୍ଦର ବ୍ୟବହାର କରିଅଛନ୍ତି । ବୃକ୍ଷ ଓ ତାର ଶାଖା ସମୂହ ଏକ

ଏବଂ ଅଭିନ୍ନ ହୋଇ ମଧ୍ୟ ପରସ୍ପରଠାରୁ ଭିନ୍ନ । ସେହିପରି ପଞ୍ଚସଖା ଏକ ଧର୍ମର ପ୍ରବର୍ତ୍ତକ ଏବଂ ଏକ ତତ୍ତ୍ୱର ଉପାସକ ହୋଇ ମଧ୍ୟ ମନ୍ତ୍ର, ଯନ୍ତ୍ର, ଭଜନ, ପୂଜନ, ଆରାଧନା, ଚତୀଚୈତନାଦ ବାହ୍ୟ ଆଚାର ବିଚାରରେ କେତେକାଂଶରେ ସ୍ୱତନ୍ତ୍ର ଥିଲେ । ସେମାନଙ୍କର ନିଜନିଜର ସ୍ୱତନ୍ତ୍ର ସମ୍ପ୍ରଦାୟ ମଧ୍ୟ ଥିଲା । ଏଣୁ ଏହି ପଞ୍ଚସଖା ଉତ୍କଳୀୟ ବୈଷ୍ଣବ ଧର୍ମ ରୂପ ବୃକ୍ଷର ଥିଲେ ପାଞ୍ଚଗୋଟି ଶାଖା ।

**ଧର୍ମ ପ୍ରଚାର :**

ଜଗନ୍ନାଥ ଦାସଙ୍କ ଖ୍ୟାତି ଓ ମହିମା ପ୍ରଚାରିତ ହେବା ଫଳରେ ତାହାଙ୍କଠାରୁ ଉପଦେଶ ଗ୍ରହଣ କରିବା ଉଦ୍ଦେଶ୍ୟରେ ବହୁ ଲୋକ ତାଙ୍କ ନିକଟରେ ସମବେତ ହେବାକୁ ଲାଗିଲେ । ଜଗନ୍ନାଥ ଦାସ ସହାସ୍ୟ ବଦନରେ ସେମାନଙ୍କୁ ହରିନାମ ଶୁଣାଇ ଉତ୍କଳରେ ଧର୍ମର ବିମଳ ମନ୍ଦାକିନୀ ଧାରା ପ୍ରବାହିତ କରିଥିଲେ ।

"ଶ୍ରୀ ଅତିବଡ଼ ବୋଲି ବାଣୀ । ରାଜ୍ୟ ସମସ୍ତ ମୁଖୁଁ ଶୁଣି ॥
କୀର୍ତ୍ତି ବଢ଼ିଲା ଦେଶାନ୍ତର । ସିଂହପ ସେ ଅସିତ କର ॥
ଶୁଣି ମହନ୍ତ ଜନମାନେ । ମିଳିଲେ ସ୍ୱାମୀ ସନ୍ନିଧାନେ ॥
ବିଷୟୀମାନ ପଚାରନ୍ତି । ପ୍ରବୋଧ ହୋଇ ସୁଖଯାନ୍ତି ॥
କର୍ମରୁ ବ୍ରହ୍ମ ପରିଯନ୍ତେ । ଯେ ଯାହା ପଚାରନ୍ତି ଚିତ୍ତେ ॥
ହାସ୍ୟ ବଦନେ ବ୍ରହ୍ମଜ୍ଞାନ । ପ୍ରବୋଧ ହୋନ୍ତି ସାଧୁଜନ ॥"

[ଜ. ଚ. ୧୩ଶ ଅଧ୍ୟାୟ]

ଶିଶୁ ଅନନ୍ତ ଦାସ ତାହାଙ୍କ 'ରସ' ଗ୍ରନ୍ଥରେ ଜଗନ୍ନାଥ ସମେତ ପଞ୍ଚସଖାଙ୍କର ଶିଷ୍ୟ ସଂଖ୍ୟା ଉଲ୍ଲେଖ କରିଅଛନ୍ତି ।

"ଗୁରୁ କହନ୍ତି ଶିଷ୍ୟର ବଚନେ ।
ସଖାଏ ଜାଣ ଏ ମଞ୍ଚ ଭୁବନେ ॥
ଯଶୋବନ୍ତର ସାତଶ ପଞ୍ଚାଶ ।
ଦ୍ୱାଦଶ ଜଣ ଏଥିରେ ବିଶେଷ ॥

ଅନନ୍ତ ଷୋଳ ବା ଆନ ଯେ ହୋଇ ।
ଏଥି ମୋକ୍ଷଯାନ ଦ୍ୱାଦଶ ରହି ॥
ଶ୍ରୀବସ୍ତ୍ର ଛତିଶ ଶତ ଗଣିତା ।
ଦ୍ୱାଦଶ ଜଣ ଏଥିରେ କରତା ॥
ଅଚ୍ୟୁତ ଅନନ୍ତ ବାଳ ଗୋପାଳ ।
ଦ୍ୱାଦଶ ଶତେଣ ଦ୍ୱାଦଶ ସାର ॥”

ଉପରୋକ୍ତ ଉଦ୍ଧୃତାଂଶରୁ ସ୍ପଷ୍ଟ ସୂଚିତ ହୁଏ ଯେ ଜଗନ୍ନାଥ ଦାସଙ୍କର ଶିଷ୍ୟସଂଖ୍ୟା ୩୬୦୦ ଥିଲା ଏବଂ ସେମାନଙ୍କ ମଧ୍ୟରେ ୧୨ ଜଣ ପ୍ରଧାନ ଥିଲେ ।

ଉପରୋକ୍ତ ଶିଷ୍ୟମାନଙ୍କ ଦ୍ୱାରା ଜଗନ୍ନାଥ ଦାସଙ୍କ ଧର୍ମମତ ବହୁଳ ଭାବରେ ପ୍ରଚାରିତ ହୋଇଥିଲା । ଦିବାକର ଦାସ ତାହାଙ୍କ 'ଜଗନ୍ନାଥ ଚରିତାମୃତ'ରେ ଜଗନ୍ନାଥ ଦାସଙ୍କର ପ୍ରଧାନ ଷୋଡ଼ଶ ଶିଷ୍ୟଙ୍କ ନାମ ଉଲ୍ଲେଖ କରିଅଛନ୍ତି; ଯଥା—ଉଦ୍ଧବ ଦାସ, ରାମଚନ୍ଦ୍ର ଦାସ, ଗୋପୀନାଥ ଦାସ, ହରିଦାସ, ବାମନ ମହାପାତ୍ର, ନନ୍ଦନନ୍ଦନ ମହାପାତ୍ର, ଗୌରୀ ପାଟରାଣୀ, ଗୋପାଳ ଦାସ, ଆଖଣ୍ଡଳ ଦାସ, ଜନାର୍ଦ୍ଦନ ପଣ୍ଡା, କୃଷ୍ଣଦାସ, ବନମାଳୀ ଦାସ, ଗୋବର୍ଦ୍ଧନ ମହାପାତ୍ର, ଜଗନ୍ନାଥ ଦାସ, ମଧୁସୂଦନ ଦାସ, କାହ୍ନୁ ଖୁଣ୍ଟିଆ । ଏହି ଷୋଡ଼ଶ ଶିଷ୍ୟମାନଙ୍କ ମଧ୍ୟରୁ କେତେକ ଧର୍ମସମ୍ବନ୍ଧୀୟ ଗ୍ରନ୍ଥ ଲେଖି ଓଡ଼ିଆ ସାହିତ୍ୟରେ ପ୍ରସିଦ୍ଧି ଲାଭ କରିଅଛନ୍ତି ।

**ମହାପ୍ରୟାଣ :**

ମହାତ୍ମା ଜଗନ୍ନାଥ ଦାସ ୭୦ ବର୍ଷ କାଳ ଜୀବିତ ରହି ନିତ୍ୟ ଭଗବତ ଆରାଧନା ଓ ହରିଲୀଳା ଆଖ୍ୟାନରେ ନିଜକୁ ନିୟୋଜିତ କରିଥିଲେ । ଦିନେ ସେ ଶିଷ୍ୟ ପ୍ରଶିଷ୍ୟ ପରିବେଷ୍ଟିତ ହୋଇ ଧର୍ମାଲୋଚନାରେ ରତ ଥିବା ସମୟରେ ସ୍ୱ ଦିବ୍ୟଜ୍ଞାନ ବଳରେ ଜାଣିପାରିଲେ ଯେ ମର୍ତ୍ତ୍ୟଭୂମିରେ ତାଙ୍କର ଶେଷ ସମୟ ଉପସ୍ଥିତ ହୋଇଅଛି । ତେଣୁ ସେ, ପ୍ରିୟ ଶିଷ୍ୟଗଣଙ୍କୁ ଦେହ ତ୍ୟାଗର ଅଭିଳାଷ ଜଣାଇ କହିଲେ, "ତୁମ୍ଭେମାନେ ମୋର ଏହି ପାଦୁକାଦ୍ୱୟକୁ ମଠ ଗାଦିରେ ରଖିବ । ମୋ ପାଇଁ ଦୁଃଖ କରିବ ନାହିଁ ।"

ଏତକ କହି ଅତିବଡ଼ ସ୍ୱାମୀ ଯୋଗାସନରେ ବସି ଭଗବାନଙ୍କୁ ଧ୍ୟାନ କରିବାରେ ଲାଗିଲେ । ମୁହୂର୍ତ୍ତିକ ମଧ୍ୟରେ ତାଙ୍କର ଅମର ଆତ୍ମା ମର ଦେହ ତ୍ୟାଗ କରି ଅବିନଶ୍ୱର ଧାମକୁ ଯାତ୍ରାକଲା । ତାଙ୍କର ଶିଷ୍ୟମାନେ ମହାସମାରୋହରେ ଭଜନ କୁଟୀରରେ ତାଙ୍କର ମୃତ ଦେହକୁ ସମାଧିସ୍ଥ କଲେ । ପରେ ସେଠାରେ ତାଙ୍କର ମଣିମୟ ବିଗ୍ରହ ସ୍ଥାପିତ ହେଲା । ଦିବାକର ଦାସ ମହାପୁରୁଷ ଜଗନ୍ନାଥଙ୍କ ତିରୋଧାନ ବିଷୟ ଅତ୍ୟନ୍ତ ମର୍ମସ୍ପର୍ଶୀ ଓ ହୃଦୟଗ୍ରାହୀ ଭାଷାରେ ବର୍ଣ୍ଣନା କରିଅଛନ୍ତି । ସେ ଖ୍ରୀ: ୧୫୫୦, ମାଘମାସ ଶୁକ୍ଳ ପକ୍ଷ ସପ୍ତମୀ ତିଥିରେ ଦେହ ତ୍ୟାଗ କରିଥିବା ଜଣାଯାଏ ।

ଦିବାକର ଦାସ ଲେଖିଅଛନ୍ତି ଯେ, ପରମଯୋଗୀ ଜଗନ୍ନାଥ ଦାସ ତାଙ୍କର ସ୍ଥୂଳ ମରଦେହକୁ ଭଜନ କୁଟୀରରେ ଅବସ୍ଥାପିତ କରି ସୂକ୍ଷ୍ମ ଶରୀରରେ ଶ୍ରୀମନ୍ଦିରରେ ପ୍ରବେଶ କଲେ ଏବଂ ରତ୍ନ ସିଂହାସନ ନିକଟରେ ପହଞ୍ଚି ବିଦ୍ୟୁତ୍ ତୁଲ୍ୟ ମହାପ୍ରଭୁଙ୍କ ଶ୍ରୀଅଙ୍ଗରେ ବିଲୀନ ହୋଇଗଲେ । ଶ୍ରୀଚୈତନ୍ୟଙ୍କର ତିରୋଧାନ ସମ୍ବନ୍ଧରେ ମଧ୍ୟ ଅନୁରୂପ ଉକ୍ତି ଶୁଣାଯାଏ । □□□

# ଷଷ୍ଠ ଅଧ୍ୟାୟ

## ଗ୍ରନ୍ଥ ରଚନା

ଜଗନ୍ନାଥ ଦାସଙ୍କ ରଚନାବଳୀର ନିରୂପଣ ଏପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ଇତିହାସରେ ଏକ ସୁକଠିନ ସମସ୍ୟା ହୋଇ ରହିଅଛି । ତାର କାରଣ, ଜଗନ୍ନାଥ ଦାସ ନିଜ ଗ୍ରନ୍ଥ ସମୂହରେ କୌଣସିଠାରେ ସ୍ୱରଚିତ ପୁସ୍ତକାବଳୀର ନାମୋଲ୍ଲେଖ କରି ନାହାନ୍ତି । ଜଗନ୍ନାଥ ଦାସଙ୍କ ଜୀବନୀ ଲେଖକ ଦିବାକର ଦାସ, ଚୈତନ୍ୟ ଭାଗବତ ରଚୟିତା ଈଶ୍ୱର ଦାସ "ଦାର୍ଢ୍ୟତାଭକ୍ତି ରସାମୃତ"ର କବି ରାମ ଦାସ ଏବଂ "ଅଣାକାର ସଂହିତାର" ଲେଖକ ନନ୍ଦଦାସ ପ୍ରମୁଖ ଯେଉଁ ଲେଖକଗଣ ଜଗନ୍ନାଥ ଦାସଙ୍କ ଜୀବନବୃତ୍ତାନ୍ତ ଉପରେ ଆଲୋକପାତ କରିଅଛନ୍ତି, ସେମାନେ ଶ୍ରୀମଦ୍‌ଭାଗବତ ବ୍ୟତୀତ ଅନ୍ୟ କୌଣସି ପୁସ୍ତକ ବିଷୟ ଉଲ୍ଲେଖ କରିନାହାନ୍ତି । ପୁନଶ୍ଚ ଦ୍ୱାରିକା ଦାସ ବଳରାମ ଦାସଙ୍କ ନାମରେ 'ଛତିଶଗୁପ୍ତଗୀତା' ଲେଖିବା ପରି, ମନ୍ଦକବିଯଶଃପ୍ରାର୍ଥୀ ପରବର୍ତ୍ତୀ ଯୁଗର ବହୁ ଲେଖକ ସ୍ୱରଚିତ ଗ୍ରନ୍ଥ ସମୂହର ପ୍ରସିଦ୍ଧିକୁ ବ୍ୟାପକ କରିବା ଉଦ୍ଦେଶ୍ୟରେ ସେଗୁଡ଼ିକୁ ଜଗନ୍ନାଥ ଦାସଙ୍କ ନାମରେ ଭଣିତା କରିଥିବା ମଧ୍ୟ ଅସମ୍ଭବ ନୁହେଁ । ଓଡ଼ିଆ ସାହିତ୍ୟ ଇତିହାସରେ ଏହାର ବହୁ ଦୃଷ୍ଟାନ୍ତ ରହିଅଛି । ଅଚ୍ୟୁତାନନ୍ଦଙ୍କ ଶୂନ୍ୟସଂହିତା, ଗୁରୁଭକ୍ତି ଗୀତା, ଆଗତଭବିଷ୍ୟତ ମାଳିକା ଓ ଛୟାଳିଶ ପଟଳ ଆଦି ଗ୍ରନ୍ଥରେ ବହୁ ପ୍ରକ୍ଷିପ୍ତ ଅଂଶ ପରବର୍ତ୍ତୀ କାଳରେଯୋଗ କରାଯାଇ ଥିବାର ଜଣାଯାଏ । (୧) ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ "ବଟ ଅବକାଶ" ଓ "ଭାବ ସମୁଦ୍ର" ପରି କେତେକ ମିଥ୍ୟାରେ ପରିପୂର୍ଣ୍ଣ ପୁସ୍ତକ "ଜଗମୋହନ ରାମାୟଣ" ଓ "ବେଦାନ୍ତସାର ଗୁପ୍ତଗୀତା"ର ଲେଖକ ବଳରାମଦାସକୃତ ହୋଇନପାରେ । [ଓ. ସା. କ. ପ. ୬୯୮ ପୃ.]

---

(୧) ଓଡ଼ିଆ ସାହିତ୍ୟ ପରିଚୟ—ସୂର୍ଯ୍ୟନାରାୟଣ ଦାସ—ପୃ-୧୮୪

ଜଗନ୍ନାଥ ଦାସଙ୍କ ରଚିତ ସୁପ୍ରସିଦ୍ଧ ଓଡ଼ିଆ ଭାଗବତର ଦ୍ୱାଦଶ ଓ ତ୍ରୟୋଦଶ ସ୍କନ୍ଧର ରଚନା ସମ୍ବନ୍ଧରେ ମଧ୍ୟ ସନ୍ଦେହର ଅବକାଶ ରହିଅଛି । ରାଜକିଶୋର ଦାସଙ୍କ ଦ୍ୱାରା ସମ୍ପାଦିତ ଓଡ଼ିଆ ଭାଗବତର ଦ୍ୱାଦଶ ସ୍କନ୍ଧର ପ୍ରାରମ୍ଭରେ ଲେଖାଅଛି—

"ଦ୍ୱାଦଶ ସ୍କନ୍ଧ ଭାଗବତ । ତ୍ରୟୋଦଶ ଅଧ୍ୟା ବିଦିତ ॥
ଜଗନ୍ନାଥ ଦାସ ପ୍ରକାଶ । କରିତେ କରିଅଛି ଆଣ ॥
ନାମ ମୋହର ମହାଦେବ । ବିପ୍ରଙ୍କ କୁଳରେ ସମ୍ଭବ ॥
କୃଷ୍ଣ ସଙ୍ଗତେ ଜଗନ୍ନାଥ । ଚଳିଲେ ଗୋଲୋକ ଯେ ପଥ ॥
ମୁଁ ଏହା କରଇ ବିସ୍ତର । ଅଷ୍ଟାଦଶ ପୁରାଣର ସାର ॥"

ପୁଣି ଦ୍ୱାଦଶ ସ୍କନ୍ଧ ତ୍ରୟୋଦଶ ଅଧ୍ୟାୟ ଶେଷରେ ଲେଖାଅଛି—

"ବିପ୍ରକୁଳରେ ଜନ୍ମ ହୋଇ । ଜଗନ୍ନାଥ ଦାସ ନାମ ବହିଇ ॥
ପ୍ରାକୃତ ବନ୍ଧେ ଭାଗବତ । କହିଲେ ସନ୍ଥଜନ ହିତ ॥
ସେ କୃଷ୍ଣ ନାମ କର୍ମ ଯଶ । ପୁରାଣେ କଲେ ଗୀତରସ ॥
ତିନ ଶତ ଉନତିରିଶ । ଏକାଦଶ ଯାଏ ପ୍ରକାଶ ॥
ସାତ ଅଧ୍ୟାୟରେ ବିଶେଷ । ସେ ଭାଗବତ ଗୀତରସ ॥
ଏଣୁ ଚିତ୍ତ ବୋଧିବା ଅର୍ଥେ । ଦ୍ୱାଦଶ ସ୍କନ୍ଧ ଶ୍ରୁତି ପଥେ ॥
ବିପ୍ରଙ୍କ ଠାରୁ ଶୁଣି ମନେ । ଚିତ୍ତରେ କରିଛି ଲେଖନେ ॥
ଯେଣୁ ସେ ଗୀତରେ ପ୍ରସିଦ୍ଧ । ଜଗନ୍ନାଥ ନାମେ ପ୍ରସିଦ୍ଧ ॥
ତେଣୁଁ ତାଙ୍କ ନାମ ବିଖ୍ୟାତ । ସେ ନାମ ମହତ୍ତ ମହାନ୍ତ ॥
ସେ ବିପ୍ର ଜାଣି କୃଷ୍ଣ ରସ । ପୁରାଣ ଗୀତରେ ପ୍ରକାଶ ॥
ଜଗତ ଉଦ୍ଧାର ନିମନ୍ତେ । ରଚିଲେ ଶ୍ରୀ ଭାଗବତେ ॥
ତାଙ୍କ ଚରଣେ ତେଣୁ ମନ । ସୁଜନେ ଦୋଷ ମୋ ନ ଦେନ ॥
ଆଶ୍ରା ମୋ ସାଧୁଙ୍କ ଚରଣ । ଶରଣ ମହାଦେବ ଦୀନ ॥"

ଏଣୁ ମହାଦେବ ଦାସ ନାମକ ଜଣେ ବ୍ୟକ୍ତି ଜଗନ୍ନାଥ ଦାସଙ୍କ ଏକାଦଶ ସ୍କନ୍ଧ ସମ୍ବଳିତ ଭାଗବତରେ ଦ୍ୱାଦଶ ସ୍କନ୍ଧ ଯୋଗ କରିଥିବା ସୂଚିତ ହୁଏ । ସେହିପରି "ପଚିଚେ ଗୀତା"ର ଲେଖକ ଦ୍ୱାରିକା ଦାସ ଜଗନ୍ନାଥ ଦାସଙ୍କ

ଭାଗବତର ଟୀକା ସ୍ୱରୂପ ଚତୁର୍ଦ୍ଦଶ ସ୍କନ୍ଧ ଲେଖି ଭଣିତାରେ ଦ୍ୱାରକା ଜଗନ୍ନାଥ ଦାସ ବୋଲି ଲେଖିଅଛନ୍ତି । ଏଣୁ କୌଣସି ପୁସ୍ତକର ଭଣିତାରେ ବିପ୍ର ଜଗନ୍ନାଥ ଦାସ ନାମର ଉଲ୍ଲେଖମାତ୍ର ଦେଖି ତାହା ଭକ୍ତକବି ଜଗନ୍ନାଥ ଦାସଙ୍କ ରଚନା ବୋଲି ନିର୍ବିବାଦରେ ଗ୍ରହଣ କରିନେବା ଆଦୌ ନିରାପଦ ନୁହେଁ ।

ଜଗନ୍ନାଥ ଦାସଙ୍କ ରଚିତ ଗ୍ରନ୍ଥ ସମୂହର ଯେଉଁସବୁ ତାଲିକା ବିଭିନ୍ନ ଲେଖକମାନଙ୍କ ଦ୍ୱାରା ସଂକଳିତ ହୋଇଅଛି ସେଗୁଡ଼ିକ ମଧ୍ୟରେ 'ପ୍ରାଚୀନ ଉତ୍କଳ' ଲେଖକ ଜଗବନ୍ଧୁ ସିଂହ ଓ 'ଅତିବଡ଼ି ଜଗନ୍ନାଥ ଦାସ' ଲେଖକ ମହାମହୋପାଧ୍ୟାୟ ପଣ୍ଡିତ ସଦାଶିବ ମିଶ୍ରଙ୍କ ଦ୍ୱାରା ପ୍ରସ୍ତୁତ ତାଲିକାଦ୍ୱୟ ବିଶେଷ ଉଲ୍ଲେଖଯୋଗ୍ୟ । ପରବର୍ତ୍ତୀ କାଳରେ ଅନ୍ୟାନ୍ୟ ଲେଖକମାନଙ୍କ ଦ୍ୱାରା ପ୍ରଦତ୍ତ ତାଲିକା ଗୁଡ଼ିକ ଉକ୍ତ ଅଧିକେ ଉପରୋକ୍ତ ତାଲିକା ଦୁଇଟିକୁ ଭିତ୍ତିକରି ସଂକଳିତ ହୋଇଥିବା ଅନୁମିତ ହୁଏ । ନିମ୍ନରେ ଉକ୍ତ ତାଲିକା ଦୁଇଟି ପ୍ରଦତ୍ତ ହେଲା ।

**ଜଗବନ୍ଧୁ ସିଂହ (ପ୍ରାଚୀନ ଉତ୍କଳ) :**

(୧) ଅର୍ଥ କୋଇଲି (୨) ଫୁଲତୋଳା ଚଉତିଶା (୩) ଦୃଢ଼ ବୋଧ (୪) ଶ୍ରୀସତସଙ୍ଗ (୫) ତୁଳାଭିଣା (୬) ପାଷଣ୍ଡ ଦଳନ (୭) ଗଜ ନିସ୍ତାରଣ (୮) ଶ୍ରୀମଦ୍ ଭାଗବତ (୯) ଜଗନ୍ନାଥ କାରିକା (୧୦) ଧ୍ରୁବସ୍ତୁତି (୧୧) ମନଶିକ୍ଷା ।

**ମହାମହୋପାଧ୍ୟାୟ ସଦାଶିବ ମିଶ୍ରଙ୍କ ସଂକଳିତ ତାଲିକା :**

(୧) କୃଷ୍ଣଭକ୍ତି କଳ୍ପଲତା, (୨) କୃଷ୍ଣଭକ୍ତି କଳ୍ପଲତାଫଳମ୍, (୩) ନିତ୍ୟଗୁପ୍ତମାଳା, (୪) ଉପାସନା ଶତକ, (୫) ପ୍ରେମସୁଧାମ୍ବୁଧିଃ, (୬)ନିତ୍ୟାଚାର ଦୀକ୍ଷାସହିତୋପାସନାବିଧି, (୭) ଶ୍ରୀରାଧା ରସମଞ୍ଜରୀ, (୮) ନୀଳାଦ୍ରି ଶତକମ୍ ।

ଓଡ଼ିଆ (୧) ଷୋଳଚଉପଦ, (୨) ଶୈବାଗମ ଭାଗବତ, (୩) ସତ୍‌ସଙ୍ଗ ବର୍ଣ୍ଣନା, (୪) ଗୁଣ୍ଡିଚା ବିଜେ, (୫) ଗୋଲକ ସାରୋଦ୍ଧାର,

(୬) ଶ୍ରୀମଦ୍ ଭାଗବତ (୭) ତୂଳାଭିଣା । ଏହା ବ୍ୟତୀତ ରାଧାକୃଷ୍ଣ ମହାମନ୍ତ୍ର ଚନ୍ଦ୍ରିକା, ଅଦ୍ଭୁତ ଚନ୍ଦ୍ରିକା, ନୀଳାଦ୍ରି ଚନ୍ଦ୍ରିକା, ପୂର୍ଣ୍ଣାମୃତ ଚନ୍ଦ୍ରିକା ଏବଂ ରସକଲ୍ପ ଚନ୍ଦ୍ରିକା ଆଦି ଗ୍ରନ୍ଥରେ କାହାର ନାମୋଲ୍ଲେଖ ନଥିଲେହେଁ ଏଗୁଡ଼ିକ ଅତିବଡ଼ି ସ୍ୱାମୀଙ୍କ ବିରଚିତ ବୋଲି ସେ ମନେକରନ୍ତି ।

ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କଦ୍ୱାରା ପ୍ରଦତ୍ତ ତାଲିକାରେ ଥିବା ଦଢ଼ିଖେଳ, ବୋଲେ ହୁଁ ଗୀତ, ଗୁପ୍ତଭାଗବତ, ଦାରୁବ୍ରହ୍ମଗୀତା, ମୃଗୁଣୀସ୍ତୁତି, ଇତିହାସ ପୁରାଣ ଏବଂ ମହାଭାରତ ଏହି ଆଠଖଣ୍ଡ ପୁସ୍ତକ ପୂର୍ବୋକ୍ତ ଦୁଇ ତାଲିକାରେ ଦୃଷ୍ଟ ହୁଏ ନାହିଁ । ରାୟବାହାଦୁର ଚନ୍ଦ୍ରାମଣି ଆଚାର୍ଯ୍ୟ ତାହାଙ୍କ 'ଭକ୍ତକବି ଜଗନ୍ନାଥ ଦାସ' ପୁସ୍ତକରେ 'ରାମାୟଣ' ଓ 'ମହାଭାରତ' ଗ୍ରନ୍ଥ ଜଗନ୍ନାଥ ଦାସଙ୍କ ରଚନା ବୋଲି ମତ ପ୍ରକାଶ କରିଅଛନ୍ତି ।

ନିଜ ଉକ୍ତିର ସାରବତ୍ତା ପ୍ରମାଣ କରିବା ଉଦ୍ଦେଶ୍ୟରେ ସେ ଜଗନ୍ନାଥ ଚରିତାମୃତରୁ ନିମ୍ନୋକ୍ତ ପଂକ୍ତିଚୟ ଉଦ୍ଧାର କରିଅଛନ୍ତି ।

"ସକଳ ଶାସ୍ତ୍ରେ ପୂର୍ଣ୍ଣ ହେଲେ । ସମଗ୍ର ଭାରତ ରଚିଲେ ॥
ଶ୍ରୀରାମାୟଣ ଗ୍ରନ୍ଥ ସାଧି । ଶ୍ରୀଭାଗବତେ ଦେଲେ ବୁଦ୍ଧି ॥
ଦ୍ୱାଦଶସ୍କନ୍ଧ ଭାଗବତ । ଟିକା ଟିପ୍ପଣୀ ହିଁ ସହିତ ॥
ହେଲା ଅଷ୍ଟାଦଶ ବରଷ । ଏମାନ ସାଧିଲେ ବିଶେଷ ॥"

୧୯୧୩ ଖ୍ରୀଷ୍ଟାବ୍ଦରେ ପଣ୍ଡିତ ସୁଦର୍ଶନ ନନ୍ଦଙ୍କ ଦ୍ୱାରା ପ୍ରକାଶିତ 'ଜଗନ୍ନାଥ ଚରିତାମୃତ'ର 'ଭାରତ ସମଗ୍ର ପଢ଼ିଲେ' ଛାପା ଭୁଲ ଏବଂ ସେ ସ୍ଥାନରେ 'ଭାରତ ସମଗ୍ର ରଚିଲେ' ହେବ । ଏଣୁ ଆଚାର୍ଯ୍ୟଙ୍କ ମତାନୁଯାୟୀ ଜଗନ୍ନାଥ ଦାସ ମହାଭାରତ ଓ ରାମାୟଣ ଗ୍ରନ୍ଥଦ୍ୱୟ ରଚନା କରିସାରି ଭାଗବତ ରଚନାରେ ପ୍ରବୃତ୍ତ ହୋଇଥିଲେ । 'Typical Selections from Oriya literature' ପୁସ୍ତକରେ ସମ୍ପାଦକ ବିଜୟଚନ୍ଦ୍ର ମଧ୍ୟ ଉକ୍ତ ଗ୍ରନ୍ଥର ମୁଖବନ୍ଧରେ ଅନୁରୂପ ମନ୍ତବ୍ୟ ପ୍ରକାଶ କରିଅଛନ୍ତି । "ଶ୍ରୀ ରାମାୟଣ ଗ୍ରନ୍ଥ ସାଧି, ଶ୍ରୀଭାଗବତେ ଦେଲେ ବୁଦ୍ଧି ।" ଏହି ପଦଦ୍ୱୟରୁ ସେ ଅର୍ଥ କରି ଅଛନ୍ତି ଯେ, ଜଗନ୍ନାଥ ଦାସ ପ୍ରଥମେ ରାମାୟଣ ରଚନା କରିସାରି ତତ୍ପରେ

ଭାଗବତ ରଚନାରେ ମନୋନିବେଶକଲେ । ତାହାଙ୍କ ମତରେ ଭକ୍ତ ରାମାୟଣ ଗ୍ରନ୍ଥ ବଳରାମ ଦାସଙ୍କ ଜଗମୋହନ ରାମାୟଣର ପ୍ରସିଦ୍ଧି ଫଳରେ ବିସ୍ମୃତ ଓ ଅବଲୁପ୍ତ ହୋଇଅଛି କିମ୍ବା ଜଗନ୍ନାଥ ସ୍ୱୀୟ ପ୍ରାରମ୍ଭିକ ରଚନାକୁ ଲୋକରେ ପ୍ରକାଶ କରିନାହାନ୍ତି । କିନ୍ତୁ ଉପରୋକ୍ତ ଉଦ୍ଧୃତାଂଶରୁ ଏପରି ଅର୍ଥ ବାହାର କରିବା ସମୀଚୀନ ବୋଧହୁଏ ନାହିଁ ।

ଏହାର ପ୍ରକୃତ ତାତ୍ପର୍ଯ୍ୟ ହେଉଛି ଯେ, ଜଗନ୍ନାଥ ଦାସ ପ୍ରଥମେ ରାମାୟଣ ଗ୍ରନ୍ଥ ଅଧ୍ୟୟନ କରିଥିଲେ ଏବଂ ତହିଁଉତ୍ତାରୁ ଭାଗବତ ଅଧ୍ୟୟନ କରିଥିଲେ । ଉକ୍ତ ପଦ୍ୟାଂଶର ପରବର୍ତ୍ତୀ ପଦରୁ ସୂଚିତ ହୁଏ ଯେ ସେ ରାମାୟଣ ପଢ଼ିସାରି ବିବିଧ ଟିକା ସହିତ ଶ୍ରୀମଦ୍‌ଭାଗବତ ଅଧ୍ୟୟନ କରିଥିଲେ । ଜଗନ୍ନାଥ ଦାସଙ୍କ ଭଣିତାଯୁକ୍ତ ଅଷ୍ଟାଦଶ ପର୍ବ ସମ୍ବଳିତ ଏକ ମହାଭାରତ ଗତ କେତେବର୍ଷ ତଳେ କଟକ ଖଟବିନ୍ ସାହିର ଭିକାରିଚରଣ ଦାସଙ୍କ ଦ୍ୱାରା ପ୍ରକାଶିତ ହୋଇଅଛି । ଗ୍ରନ୍ଥଟି ସରଳ ଭାଷାରେ ଓ ନବାକ୍ଷରୀ ଛନ୍ଦରେ ରଚିତ । ଜଗନ୍ନାଥ ଦାସ ନାମଧାରୀ ଏକାଧିକ ବ୍ୟକ୍ତି ଥିବାରୁ କେବଳ ଭଣିତା ଉପରେ ନିର୍ଭରକରି ଏହାକୁ ଜଗନ୍ନାଥ ଦାସଙ୍କ ରଚନା ରୂପେ ଗ୍ରହଣ କରାଯାଇ ନପାରେ ।ଗ୍ରନ୍ଥକାର ସାରଳା ମହାଭାରତ, ଘଟଣାବଳୀ ଓ ଚରିତ୍ର-ଚିତ୍ରଣ ରୀତିକୁ ଆନୁପୂର୍ବିକ ଗ୍ରହଣ କରିଅଛନ୍ତି । ନିମ୍ନରେ କେତୋଟି ଦୃଷ୍ଟାନ୍ତ ପ୍ରଦତ୍ତ ହେଲା ।

"ଓସ୍ତ କାମୋଡ଼ ଦ୍ରୋଣସୁତ । ତୁ ସୃଷ୍ଟି କରୁ ଆତଯାତ ॥
ତୋର ମାୟାରେ ଦୟାନିଧି । ଆଜ ମାରିବ ଶତ୍ରୁ ସାଧି ॥
କାଢ଼ିଣ ଗୋଟିଏ ଚରଳ । ଧନୁ ଫାଳକୁ ଗୁଣ କଲ
ଅଗ୍ର ଶରକର ପେଶିଲ । ପରଶୁରାମ ମନ୍ତ୍ର ପଢ଼ିଲ ॥"

× × ×

"ବସୁ ନାମରେ ଯେ ଶବର । ମିଳିଲ ତହିଁ ଦ୍ୱିପ୍ରବର ॥
ଅତିଥି ଦେଖିଣ ବନସ୍ତେ । ଯତନେ ରଖିଲ କରାତେ ॥
ମଇଁଷ ହୋଇଲ ଶବର । ସ୍ନେହେ ରଖିଲ ତାକୁ ଘର ॥
ଶବର ଯାଇ ନିତ୍ୟ ବନେ । ମାଧବ ପୂଜା ଭୋଗ ଆଣେ ॥

ଶବର ଶବଙ୍କୁ ଭୁଞ୍ଜନ୍ତି । ଏ ବିଧି ଦେବ ପୂଜା ନାହିଁ ॥
ବିନେ ସେ ବିପ୍ରବର କହେ । ଶୁଣ ମିତ୍ର କହିବି କଥାଏ ॥
ବନସ୍ତେ ନିତ୍ୟ ପୂଜ କାହା । ମୋତେ ଦେଖାଅ ବାରେ ତାହା ॥
ଦେଖିଣ ମଇଁଷ କଙ୍କାଳ । ବାହ୍ମଣ ସେ ଅନ୍ଧପଟଳ ॥
ବିପ୍ରର ଯେବ ଫଳ ଥିଲା । ବାଟେ ପକାଇ ତାହା ଗଲା ॥

× × ×

ଯାଜନଗରେ କଲେ ବିଜୟେ । ଦର୍ଶନେ ଚଳିଲେ ପ୍ରଜାଏ ॥
ବଣିକ ହରସାହୁ ନାମେ । ଦର୍ଶନ କଲେ ଦେବଧର୍ମେ ॥
କହଇ ସ୍ତୁଧିଷ୍ଠି ଅଗ୍ରତେ । ଭେଦେବ କନ୍ୟା ଦେବ ତୋତେ ॥
ସୁହାସିନୀ ଦୁହିତା ମୋର । ବିଭାର ବେଳେ ମୃତ୍ୟୁ ତାର ॥
ଗଣକ କହିଛି ଆମ୍ଭଙ୍କୁ । ଯମ ଭୟେ ଦେବି ତୁମ୍ଭଙ୍କୁ ॥"

ଏସବୁ ଠିକ୍ ସାରଳା ମହାଭାରତର ଅନୁକୃତ । ଜଗନ୍ନାଥ ଦାସଙ୍କ ସଦୃଶ ଜଣେ ଅଦ୍ୱିତୀୟ ସଂସ୍କୃତଜ୍ଞ କବି ସାରଳା ମହାଭାରତ ବର୍ଣ୍ଣିତ ଏତାଦୃଶ କାଳ୍ପନିକ ଗଳ୍ପ ଓ ଲୋକକଥାର ଅନୁକରଣ କରିବା ସଙ୍ଗତ ମନେହୁଏ ନାହିଁ । ପୁନଶ୍ଚ ନିମ୍ନଲିଖିତ ବର୍ଣ୍ଣନା ଜଗନ୍ନାଥ ଦାସଙ୍କ ଭାଗବତ ବର୍ଣ୍ଣିତ ଶାମ୍ବ ଉପାଖ୍ୟାନର ଭାଷାନୁକୃତ ମାତ୍ର ଏବଂ ମହାଭାରତ ଭାଗବତର ପୂର୍ବବର୍ତ୍ତୀ ରଚନା ବୋଲି ଚନ୍ଦ୍ରାମଣି ଆଗ୍ରୱାଲଙ୍କର ମତ । ଏ ଦୁଇ ମତବାଦର ପରସ୍ପର ବିରୋଧିତା ହେତୁ ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ମହାଭାରତ ଜଗନ୍ନାଥ ଦାସଙ୍କ ରଚନା ନୁହେଁ ।

"ମୁନିଙ୍କି ଦେଖିଣ ସକଳେ । ଶାମ୍ବକୁ ନାରୀ ବେଶ କଲେ ॥
ଉଦରେ ଲୋହ ପାତ୍ର ଭରି । ପ୍ରସବ ମୁନିଙ୍କୁ ପଚାରି ॥
ଶୁଣି କୋପିଲେ ମୁନିବର । ଶାପ ଦେଲେ ସେ ଅଷ୍ଟ ବର୍ଗ ॥
ବୋଇଲେ ମୋତେ କଲ ହାସ୍ୟ । ଏ ଲୋହେ ମରୁ ତୁମ୍ଭ ବଂଶ ॥
ଶାପ ଦେଇଣ ମୁନି ଗଲେ । ଶାପୁଁ ମୁଷଳ ଜାତ ହେଲେ ॥
ଲୋହ ମୁଷଳ ଜାତ ହୋଇ । କୁମରେ କୃଷ୍ଣ ଆଗେ କହି ॥
କୃଷ୍ଣ ଶ୍ରୀମଙ୍କୁ ଅଣାଇଲେ । ଗିରରେ ଘଷ ଯା ବୋଇଲେ ॥"

ଭାଷା ଦୃଷ୍ଟିରୁ ବିଚାର କଲେ ମଧ୍ୟ ଏହା ଜଗନ୍ନାଥ ଦାସଙ୍କର ରଚନା ବୋଲି ଅନୁମିତ ହୁଏ ନାହିଁ ।

ଷେତରେ ଅଛୁ ଏକ ବୁଢ଼ା । କୋଦାଲେ ତାଡ଼ି କର ପଦା ॥
ଟିକସ୍ କାଟନ୍ତେ ମୂଲିଆ । ପାଇଲା ଧନ ଯେ ଗରିଆ ॥

ଏ ଭାଷା ଷୋଡ଼ଶ ଶତାବ୍ଦୀର ଭାଷା ନୁହେଁ । ଏଥିରେ କବିତ୍ୱର ନାମ ଗନ୍ଧ ନାହିଁ । କଳ୍ପନାକୁ ଯେତେଦୂର ବିସ୍ତୃତ କଲେ ମଧ୍ୟ ଏହାକୁ ଜଗନ୍ନାଥ ଦାସଙ୍କର ରଚନା ବୋଲି କୁହାଯାଇ ନ ପାରେ ।

ଜଗନ୍ନାଥ ମନ୍ଦିରର ସ୍ୱନାମଧନ୍ୟ ଗବେଷକ ସଦାଶିବ ରଥଶର୍ମା 'ଅଲସୁଆ ଭାଗବତ' ଓ 'ପରିଚୟ୍ଯ ବୋଧିନୀ' ନାମକ ଦୁଇଟି ଗ୍ରନ୍ଥ ଜଗନ୍ନାଥ ଦାସଙ୍କ ଦ୍ୱାରା ରଚିତ ହୋଇଥିଲା ବୋଲି ମତ ପ୍ରଦାନ କରନ୍ତି । 'ଅଲସୁଆ ଭାଗବତ' ଶ୍ରୀମଦ୍‌ଭାଗବତର ସଂକ୍ଷିପ୍ତ ସାର । ଏଥିରେ ସମଗ୍ର ଭାଗବତର ବିଷୟବସ୍ତୁ ମାତ୍ର ଏକଶହ ପଦରେ ନବାକ୍ଷରୀ ଛନ୍ଦରେ ରଚିତ ହୋଇଅଛି । ଶାସ୍ତ୍ରାଧ୍ୟୟନ ଶ୍ରମ-ବିମୁଖ ଅଳସ ପ୍ରକୃତିର ଲୋକମାନଙ୍କର କଲ୍ୟାଣାର୍ଥେ ରଚିତ ହୋଇଥିବାରୁ ଏହାର ନାମ 'ଅଲସୁଆ ଭାଗବତ' ହୋଇଅଛି ବୋଲି କୁହାଯାଏ ।

"ଶ୍ରୀ ଭାଗବତ ପଦ ଗୂଢ଼ । କିଅବା ବୁଝିବ ଏ ମୂଢ଼ ॥
ଶ୍ରୀ ଭାଗବତ ତତ୍ତ୍ୱବାଣୀ । ଶଏ ପଦରେ ପରମାଣି ॥
ଅଲସଜନଙ୍କ ପ୍ରମାଣ । କଲି ମୁଁ ଗୀତ ଠାବେ ଜାଣ ॥
ପଢ଼ିଲେ ଭକତ ହୃଦୟ । ହୋଇବ ଏହାଟି ନିଶ୍ଚୟ ॥"

ଏହାକୁ ପଢ଼ିଲେ ହୃଦୟରେ ଭକ୍ତିଭାବର ଉଦ୍ରେକ ହେବାତ ଦୂରର କଥା ଏହା ଯେ ଅସାମାନ୍ୟ କବି ପ୍ରତିଭାଶାଳୀ ବାଣୀକଣ୍ଠ ଜଗନ୍ନାଥ ଦାସଙ୍କ ରଚନା ଏହା ବିଶ୍ୱାସ କରିହୁଏନାହିଁ । ଅକ୍ଷର ଗଣି ପଦ ଯୋଡ଼ିବା ମାତ୍ର ଶିଖିଥିବା କୌଣସି ମନ୍ଦ-କବିଯଶଃ-ପ୍ରାର୍ଥୀ ବ୍ୟକ୍ତିର କୃତି ଯେ ଏହା ନୁହେଁ, ଏହା କୁହାଯାଇ ନ ପାରେ ।

'ପରିଚୟ୍ଯ ବୋଧିନୀ' ଗ୍ରନ୍ଥରେ ଜଗନ୍ନାଥ ଦାସଙ୍କର ଚୈତନ୍ୟ ସେବା, ସିଦ୍ଧାଙ୍ଗପ୍ରାପ୍ତି, ଅଷ୍ଟଭୁଜ ମୂର୍ତ୍ତିଧାରଣ ଏବଂ ପୁରୁଷୋତ୍ତମ ମାହାତ୍ମ୍ୟ ଆଦି

ବିଷୟ ବର୍ଣ୍ଣିତ ହୋଇଅଛି । ଏହାର ଭାଷା ସରଳ ଏବଂ ବର୍ଣ୍ଣନାରେ ପ୍ରବହମାନତା ଅଛି । ଦିବାକର ଦାସଙ୍କ 'ଜଗନ୍ନାଥଚରିତାମୃତ'ର ବିଷୟବସ୍ତୁ ସହିତ ଏହାର ଯଥେଷ୍ଟ ସାମଞ୍ଜସ୍ୟ ରହିଅଛି ।

"ରହାସ ମଣ୍ଡଳେ କିଶୋର । ଭାବରେ ହୋଇଲେ ବିଭୋର ॥
କିଶୋରୀ ନେହେ ନେହ ଦେଇ । ହସିଲେ ବଦନ ପୂରାଇ ॥
ସେ ହାସ୍ୟୁଁ ଦୁହେଁ ଜନମିଲୁ । ଦଇବେ ଲୀଳାରେ ମିଳିଲୁ ॥
କୃଷ୍ଣର ରତି ହସ୍ୟୁଁ ଜାତ । ଆପଣେ ହୋଇଲେ ସମ୍ଭୂତ ॥
ମୁହିଁ ଯେ କିଶୋରୀ ହାସରୁ । ଜାତ ହୋଇଲି ସୁକର୍ମରୁ ॥"

ଏହା 'ଜଗନ୍ନାଥଚରିତାମୃତ' ଉକ୍ତିଚୟର ପ୍ରତିଧ୍ୱନି ମାତ୍ର । "ଜଗନ୍ନାଥ ଚରିତାମୃତ"ର ବିଷୟବସ୍ତୁ ଅବଲମ୍ବନରେ ପରବର୍ତ୍ତୀକାଳର କୌଣସି ଲେଖକ ଏହା ରଚନା କରିଥିବା ବିଚିତ୍ର ନୁହେଁ ।

୧୯୬୫ ମସିହା 'ସମାଜ'ର ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟାରେ ପ୍ରକାଶିତ "ପ୍ରାଚୀନ କାବ୍ୟଭୂମିକାରେ ଭକ୍ତକବି ଜଗନ୍ନାଥ ଦାସଙ୍କର ଅପ୍ରକାଶିତ 'ଉଷାହରଣ' କାବ୍ୟ" ଶୀର୍ଷକ ପ୍ରବନ୍ଧରେ ଡକ୍ଟର ବଂଶୀଧର ମହାନ୍ତି ମତ ପ୍ରକାଶ କରନ୍ତି ଯେ ଜଗନ୍ନାଥ ଦାସ 'ଉଷାହରଣ' ନାମକ ଏକ କାବ୍ୟ ରଚନା କରିଥିଲେ । ଭାଗବତର 'ଉଷାହରଣ' ଉପାଖ୍ୟାନ ଅବଲମ୍ବନରେ ଏହା ରଚିତ । କାବ୍ୟଟିର ଭାଷାକୁ ଭିତ୍ତିକରି ସେ ମତ ପ୍ରଦାନ କରନ୍ତି ଯେ ଏହା ଜଗନ୍ନାଥ ଦାସଙ୍କର ପ୍ରାରମ୍ଭିକ ରଚନା ଏବଂ ସମ୍ଭବତଃ ଭାଗବତ ରଚନାପୂର୍ବରୁ ୧୫୦୬।୧୫୦୭ରେ ରଚିତ ହୋଇଥିବ । ସମଗ୍ର କାବ୍ୟରେ ଆଠଗୋଟି ଛାନ୍ଦ ରହିଅଛି । ଅଧିକାଂଶ ଛାନ୍ଦ ଚଉଦ ଅକ୍ଷରୀ ବୃତ୍ତରେ ଲିଖିତ ଏବଂ ତୃତୀୟ, ପଞ୍ଚମ, ସପ୍ତମ ଏବଂ ଅଷ୍ଟମ ଛାନ୍ଦର ଅଙ୍କାଂଶ ଦ୍ୱିପଦୀ ଶୈଳରେ ରଚିତ । କାବ୍ୟର ଭାଷା ମାର୍ଜିତ, ରୁଚିସମ୍ପନ୍ନ ଏବଂ ସରଳ ମାଧୁର୍ଯ୍ୟ ମଣ୍ଡିତ । ଏହାର ନିରାଡ଼ମ୍ବର କାବ୍ୟ-ସୌନ୍ଦର୍ଯ୍ୟ ଏବଂ କଳ୍ପନାବିଳାସ ଏକାନ୍ତ ଉପଭୋଗ୍ୟ ।

"ସେ ଉଷା କାମିନୀ ନିଦ୍ରାଗତେ ପୁଣି
ସପନେ ପୁରୁଷେ ଦେଖି,
ଉତ୍ତମ ସୌନ୍ଦର୍ଯ୍ୟ ଘଣେ ତାର ତେଜ
ବିକଚ ପଙ୍କଜ ଆଖି ।
ମହା ସୁଖଭରେ ଡାକ ଉଚ୍ଚସ୍ୱରେ
ଉଷା ରୋଦନ କରଇ
ହା ହା କାନ୍ତ ମୋର ହେଲୁ ତୁ ଅନ୍ତର
ଦେଖାଅ ତୋ ରୂପ ଦେଇ ।"

ଜଗନ୍ନାଥ ଦାସଙ୍କ ଭାଗବତରେ ଉକ୍ତ ବିଷୟଟି ନିମ୍ନଲିଖିତ ଭାବରେ ବର୍ଣ୍ଣିତ ହୋଇଅଛି ।

"ସେ କନ୍ୟା ରାତ୍ରେ ନିଦ୍ରାକାଳେ । ସ୍ୱପ୍ନେ ରମିଲା କାନ୍ତମେଳେ ॥
ପ୍ରଦ୍ୟୁମ୍ନ ସୁତ ସଙ୍ଗେ ରମି । ପ୍ରଳାପ କଲା ଶୋକଧ୍ୱନି ॥
ହେ କାନ୍ତ କାହିଁ ଗଲ ଛାଡ଼ି । ଶୋକସାଗରେ ମୋତେ ଏଡ଼ି ॥
ନ ଦେଖି ଛାଡ଼ିବି ଜୀବନ । ଦେଖାଅ ସୁନ୍ଦର ବଦନ ॥"

ବିଷୟ ବସ୍ତୁ ସମାନ କିନ୍ତୁ 'ଉଷାହରଣ'ର ବର୍ଣ୍ଣନାରୀତିଟି ଅଧିକ ହୃଦୟଗ୍ରାହୀ । ତେଣୁ ଜଗନ୍ନାଥ ଦାସ ଭାଗବତ ରଚନା କରିସାରି ଭାଗବତର ସଂକ୍ଷିପ୍ତ 'ଉଷାହରଣ' ବୃତ୍ତାନ୍ତକୁ ଏକ ସ୍ୱତନ୍ତ୍ର କାବ୍ୟରୂପ ପ୍ରଦାନ କରିଥିବା ମଧ୍ୟ ସମ୍ଭବପର । ସ୍ଥୂଳତଃ ଏହି ପୁସ୍ତକର ଛନ୍ଦେ ଛନ୍ଦେ କବି-ପ୍ରତିଭାର ମୁଦ୍ରା ଅଙ୍କିତ । କିନ୍ତୁ ଭାଷା ଓ କବିତ୍ୱ ସଦୃଶ ଆଭ୍ୟନ୍ତରୀଣ ପ୍ରମାଣ ବ୍ୟତୀତ ଏହାକୁ ଜଗନ୍ନାଥ ଦାସଙ୍କର କୃତି ବୋଲି କହିବା ପାଇଁ ଅନ୍ୟ କୌଣସି ବଳବତ୍ତର ଯୁକ୍ତି ନାହିଁ ।

ଜଗନ୍ନାଥ ଦାସଙ୍କ ଭଣିତାଯୁକ୍ତ ଶ୍ରୀମଦ୍‌ଭଗବଦ୍ ଗୀତାର ଏକ ପାଣ୍ଡୁଲିପି ମିଳିଅଛି । ଏହି ପାଣ୍ଡୁଲିପିର ଏକ ପ୍ରତିଲିପି 'ଅଚ୍ୟୁତାନନ୍ଦ ଓ ପଞ୍ଚସଖା'ର ଲେଖକ ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସ ମୋତେ ଦେଇଅଛନ୍ତି । ନିମ୍ନରେ ସେଥିରୁ କେତେକ ପଂକ୍ତି ଉଦ୍ଧାର କରାଗଲା ।

"କାହିଁ ଜନମି ଅଛି ବୃକ୍ଷ । ଅଶ୍ୱତ୍ଥ ନାମ ଏ ପ୍ରତ୍ୟକ୍ଷ ॥
ତା ମୂଳ ନ ଜାଣନ୍ତି କେହି । ତା ମଧ୍ୟ ଅନ୍ତ ନ ଦିଶଇ ॥
ବିଷୟ୍ୟାବଳେ ବୃକ୍ଷ ଆଣ୍ଠ । ଦୃଢ଼େ ସତ୍‌ସଙ୍ଗ ଶସ୍ତ୍ରେ କାଟ ॥"

ଏହାର ଭାଷା, ପଦଯୋଜନା ଓ ବର୍ଣ୍ଣନାରେ କବିତ୍ୱ ବା ମୌଳିକତାର ଚିହ୍ନବର୍ଣ୍ଣ ନାହିଁ । ଅନେକ ସ୍ଥଳରେ ଏହାମଧ୍ୟ ନାନା ଭାଷାଗତ ଭ୍ରମ ପ୍ରମାଦରେ ପରିପୂର୍ଣ୍ଣ । ତେଣୁ କେବଳ ପ୍ରତି ଅଧ୍ୟାୟ ଶେଷରେ ଜଗନ୍ନାଥ ଦାସ ନାମର ଭଣିତାକୁ ଭିତ୍ତିକରି ଏହାକୁ ଜଗନ୍ନାଥ ଦାସଙ୍କ ରଚନା ବୋଲି କୁହାଯାଇ ନ ପାରେ; ଯେହେତୁ ଜଣେ ଅତ୍ୟନ୍ତ ସାଧାରଣ ବ୍ୟକ୍ତିର ରଚନାକୁ ଅନ୍ୟ ପ୍ରତିଷ୍ଠିତ କବି ବା ଲେଖକଙ୍କର ନାମରେ ଚଳାଇ ନେବାର ଅପପ୍ରୟାସର ବହୁ ଦୃଷ୍ଟାନ୍ତ ସାହିତ୍ୟର ଇତିହାସରେ ରହିଅଛି । ଏ ପୁସ୍ତକରେ ଅନ୍ୟତ୍ର ଶ୍ରୀମଦ୍‌ଭାଗବତର ସ୍ୱତନ୍ତ୍ର ସମୀକ୍ଷା କରାଯାଇଅଛି । ତେଣୁ ତାଙ୍କର ଅନ୍ୟ କେତେକ ସୁପରିଚିତ ଗ୍ରନ୍ଥର ସଂକ୍ଷିପ୍ତ ପରିଚୟ ନିମ୍ନରେ ପ୍ରଦତ୍ତ ହେଲା ।

**ଅର୍ଥକୋଇଲି**—ଏହା ମାର୍କଣ୍ଡ ଦାସଙ୍କ ସୁପ୍ରସିଦ୍ଧ 'କେଶବକୋଇଲି'ର ଏକ ଆଧ୍ୟାତ୍ମିକ ବ୍ୟାଖ୍ୟା ଓ କୃଷ୍ଣାର୍ଜୁନ ଉକ୍ତି ପ୍ରତ୍ୟୁକ୍ତି ଛଳରେ ଲିଖିତ ।

"କୋଇଲି ବୋଲିଣ ପାର୍ଥ ଜୀବକୁଟି କହି ।
ସେହି ଜୀବ ମୁହିଁ ପାର୍ଥ ସବଂନ୍ଧ ଅଛଇ ॥
ଆପେ ଆସିଥିଲି ଜୀବ ଆପେ ଗୁଳିଗଲି ।
ସେହି ପୁଞ୍ଜ ଗୋଟି ଆଉ ବାହୁଡ଼ିନଇଲି ॥
ଏହି ପୁଞ୍ଜ ଗୋଟି ଯହୁଁ ବାହୁଡ଼ିନଇଲି ।
ମଥୁରା ସ୍ୱରୂପ ପିଣ୍ଡ ଗ୍ରୁଡ଼ିଣ ରହିଲି ॥"

ଏହିପରି ତତ୍ତ୍ୱକୁ ସଂକେତରେ ପ୍ରକାଶ କରିବା ପଞ୍ଚସଖା ସାହିତ୍ୟର ଏକ ପ୍ରଧାନ ବିଶେଷତ୍ୱ । 'କେଶବ କୋଇଲି' ପଞ୍ଚସଖା ଯୁଗର ସଂକେତ ସାହିତ୍ୟର ପଥପ୍ରଦର୍ଶକ ବୋଲି ମନେହୁଏ ।

**ଦୂତୀବୋଧ**—ଏହି କ୍ଷୁଦ୍ର ଗ୍ରନ୍ଥଟିରେ ରାଧାକୃଷ୍ଣଙ୍କ ଚରିତ ବର୍ଣ୍ଣିତ ହୋଇଅଛି । ଏଥିରେ ସେ ନିଜର ପରିଚୟ ପ୍ରଦାନ କରିଅଛନ୍ତି ।

"ବିପ୍ରକୁଳେ ଜନ୍ମ ହୋଇ କିଛୁ ନ ଜାଣଇ,
ଅତିବଡ଼ ବୋଲିଣ ଚୈତନ୍ୟ ଚନ୍ଦ୍ର କହି ।
ଜଗନ୍ନାଥ ଦାସ ବୋଲି ନାମ ମୋର ହେଲା ।
ସଦ୍‌ଗୁରୁ କୃପାବେଶ ସନ୍ଦେଶ ଫିଟିଲା ।"

ଏଥିରୁ ସୂଚିତ ହୁଏ ଯେ ଚୈତନ୍ୟଙ୍କ ସହିତ ଜଗନ୍ନାଥ ଦାସଙ୍କର ସାକ୍ଷାତ୍‌କାରର ପରବର୍ତ୍ତୀ କାଳରେ ଏହା ରଚିତ ହୋଇଥିଲା ।

**ଗଜସ୍ତୁତି**—କୁମ୍ଭୀର ଆକ୍ରମଣରେ ମରଣାପନ୍ନ ଗଜର ପ୍ରାଣରକ୍ଷାପାଇଁ ଭଗବାନଙ୍କଠାରେ ଆକୁଳ ମିନତି କବିତାଟିକୁ ଅପୂର୍ବ କାରୁଣ୍ୟ ରସରେ ପରିପ୍ଲୁତ କରିଅଛି । ଜଗନ୍ନାଥ ଦାସ ଆବାଳ ବୃଦ୍ଧବନିତା ପ୍ରତ୍ୟେକ ଶ୍ରେଣୀର ଲୋକଙ୍କ ହୃଦୟରେ ଭକ୍ତି ଭାବର ସଂଗ୍ରହପାଇଁ ଗ୍ରନ୍ଥମାନ ଲେଖି ଯାଇଛନ୍ତି । ଏହି ଗାଥାକବିତା ପ୍ରାଚୀନ ଶିଶୁ-ସାହିତ୍ୟର ଏକ ଉଜ୍ଜ୍ୱଳ ନିଦର୍ଶନ । ପୂର୍ବେ ଚାଟଶାଳୀମାନଙ୍କରେ ଏହା ପଠିତ ହେଉଥିଲା ।

**ମୃଗୁଣୀସ୍ତୁତି**—'ଗଜସ୍ତୁତି' ପରି 'ମୃଗୁଣୀସ୍ତୁତି' ଜଗନ୍ନାଥ ଦାସଙ୍କର ଅନ୍ୟ ଏକ ଶିଶୁ ଉପଯୋଗୀ ଗ୍ରନ୍ଥ । ଏହା ଆଷାଢ଼ ଶୁକ୍ଳବାଣୀରେ ରଚିତ । ବିଷୟବସ୍ତୁ ଏକାନ୍ତ ସୁପରିଚିତ ହେଲେହେଁ ଏହାର କାରୁଣ୍ୟାଶ୍ରିତ ଭକ୍ତି ରସ ନିହାତି ନିଷ୍ଠୁର ବ୍ୟକ୍ତିର ହୃଦୟକୁ ମଧ୍ୟ ଗଭୀର ଭାବରେ ସ୍ପର୍ଶକରେ । ଆକାରରେ କ୍ଷୁଦ୍ର ହେଲେହେଁ ଏହାର ସରଳ ପଦମାଧୁରୀ ଜଗନ୍ନାଥ ଦାସଙ୍କ ଅପୂର୍ବ କବିପ୍ରତିଭାର ପରିଚାୟକ ।

"ଦେଖ ଘଟନା ଦଇବ ଯୋଗର । ବ୍ୟାଧ ଶର ଧରି ଜଗେ ଆଗର ॥
ପୃଷ୍ଠଭାଗେ ବନ ଦହେ ଅନଳ । ପାଖେ ମିଳି ଅଛଇ ଶ୍ୱାନକୁଳ ॥"

ଏଣୀଶଭୈରବୀ

ତେଣୁ ବିସ୍ତାରେ ଅଳସରେ ଗତି ।
"ସଙ୍ଗେ ଅଛନ୍ତି ମୃଗଶିଶୁପନ୍ତି । ସହି ସ୍ନେହବଢ଼ଇ ପ୍ରାଣୁ ଅତି ॥
କିସ କରିବି କେଉଁଆଡ଼େ ଯିବି । କେଉଁ ଉପାୟେ ଅପାୟୁ ତରିବି ॥
ଏମନ୍ତ ବୋଲିଣ
ଚିନ୍ତାକୁଳ ହୋଇ କଲା ରୋଦନ ॥"

**ଦାରୁବ୍ରହ୍ମଗୀତା**—ଦାରୁବ୍ରହ୍ମ ଜଗନ୍ନାଥଧାମ ପୁରୁଷୋତ୍ତମକ୍ଷେତ୍ରର ଇତିହାସ ଓ ମହାତ୍ମ୍ୟ ବର୍ଣ୍ଣନ ଏହି ଗ୍ରନ୍ଥର ପ୍ରଧାନ ଲକ୍ଷ୍ୟ । ନବାକ୍ଷରୀ ବୃତ୍ତରେ ମାତ୍ର ତିନୋଟି ଅଧ୍ୟାୟରେ ରଚିତ ଏହି କ୍ଷୁଦ୍ର ପୁସ୍ତିକାଟିର ଭାଷା ଅତ୍ୟନ୍ତ ସରଳ ଓ ହୃଦୟଗ୍ରାହୀ । ସ୍ୱଳ୍ପ ଶିକ୍ଷିତ ଜନସାଧାରଣଙ୍କ ମଧ୍ୟରେ ଭକ୍ତି ଓ ଧର୍ମ ଭାବର ପ୍ରଚାର ଏହାର ମୂଳଉଦ୍ଦେଶ୍ୟ । ପ୍ରାଚୀନ ଗଣସାହିତ୍ୟର ଏହା ଏକ ଉତ୍କୃଷ୍ଟ ନିଦର୍ଶନ ।

"ନାମଟି ପୁରୁଷ ଉତ୍ତମ । ସର୍ବକ୍ଷେତ୍ରରୁ ସେ ଉତ୍ତମ ॥
ଦକ୍ଷିଣ ସମୁଦ୍ରର ତୀର । ନାମ ତାହାର ସ୍ୱର୍ଗଦ୍ୱାର ॥
ନୀଳ ସୁନ୍ଦର ନାମେ ବନ । ଅଛଇ ଶୁଣ ହେ ରାଜନ ॥
ତହିଁରେ ଅଛଇ ପର୍ବତେ । ସୁନ୍ଦର ଗିରି ଯଥା ଅର୍ଥେ ॥
ବିଭୁ ତା ଗୁପତେ ଭିଆଇ । ଜନେ ମୁକତି ଦେବାପାଇଁ ॥"

**କ୍ଷେତ୍ରବର ଚଉତିଶା**—କ୍ଷେତ୍ରଶ୍ରେଷ୍ଠ ପୁରୁଷୋତ୍ତମକ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣନ ଏହି ଗ୍ରନ୍ଥର ଲକ୍ଷ୍ୟ । ଏହା ଏକ ଚଉତିଶା ଜାତୀୟ ରଚନା ଓ ଚଉଦ ଅକ୍ଷରୀ ଛନ୍ଦରେ ରଚିତ । ନିମ୍ନଲିଖିତଭାବେ ସେ ଗ୍ରନ୍ଥର ଉପସଂହାର କରିଅଛନ୍ତି ।

"ପିତା ମୋର ଭଗବାନ ଦାଶ ମହାଶୟ ।
ପଦ୍ମାବତୀ ମାତା ମୋର ସଦ୍‌ଗୁଣ ସଞ୍ଚୟ ॥
କପିଳେଶ୍ୱର ପୁର ଯେ ଶାସନ ଗରିଷ୍ଠ ।
ବିପ୍ର କୁଳେ ଜନ୍ମ ମୁହିଁ ଏକ ବ୍ରହ୍ମନିଷ୍ଠ ॥
ଜଗନ୍ନାଥ ବିନୁ ଅନ୍ୟ ନ ଜାଣଇ ମୁହିଁ ।
କ୍ଷେତ୍ରବରକୁ ଗୋକୁଳ ବୋଲି ବିଚାରଇ ॥
ପଞ୍ଚତୀର୍ଥ ପଞ୍ଚଧାରା ରାଧାଶ୍ୟାମ କୁଣ୍ଡ ।
ନୀଳଶଇଳ ଅଟଇ ଗୋବର୍ଦ୍ଧନ ଖଣ୍ଡ ॥
ରାସକ୍ରୀଡ଼ା ସ୍ଥଳ ରତ୍ନ ବେଦୀ ଯେ ଅଟଇ ।
ସେହି ବେଦୀପରେ ମଥା ନିତ୍ୟ ମୋ ରହଇ ॥

ମୋର ଶିଷ୍ୟଗଣ ଉତ୍କଳ ଦେଶ ଖଣ୍ଡେ ସାର ।
ପ୍ରଗୃର କରିବ କ୍ଷେତ୍ରବରର ବଗୃର ॥"

**ଗୁପ୍ତ ଭାଗବତ**—ଶ୍ରୀମଦ୍ଭାଗବତ ପରି ଏହି ଗ୍ରନ୍ଥଟି ଶୁକ-ପରୀକ୍ଷିତ ଉକ୍ତି ପ୍ରତ୍ୟୁକ୍ତି ଛଳରେ ଲିଖିତ । ଏଥିରେ ୨୪ଟି ଅଧ୍ୟାୟ ସନ୍ନିବେଶିତ ହୋଇଅଛି ଏବଂ ଏହି ଅଧ୍ୟାୟମାନଙ୍କରେ ଏକାଦଶୀ ମାହାତ୍ମ୍ୟ, ସୃଷ୍ଟିତତ୍ତ୍ୱ, ବ୍ୟାସ ଓ ଶୁକଦେବଙ୍କ ଜନ୍ମ ବୃତ୍ତାନ୍ତ ଆଦି ବିଷୟ ବର୍ଣ୍ଣିତ ହୋଇଅଛି । ଶେଷ ଅଧ୍ୟାୟରେ ରାମନାମର ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି ।

"ଶୁକ ଚରଣେ କର ଦେଇ । ଆନନ୍ଦେ ରାଜା ପଗୃରଇ ॥
ହେ ମହାମୁନି ସାବଧାନ । କହି ପରମ ତତ୍ତ୍ୱ ଜ୍ଞାନ ॥
ଗୁପ୍ତ ସଂଶୟ ଯେ ଅଛନ୍ତି । କହିବା ମୋତେ ମହାଯତି ॥
ଚବଣ ତଥି ଏକାଦଶୀ । କହ ହେ ଏ ଜ୍ଞାନ ବିଶେଷି ॥
କଲେ କେଉଁ ଧର୍ମ ହୁଅଇ । ନ କଲେ କି ପାପ ଲଭଇ ॥
ଏଥି ସଂଶୟ ମୋତେ କହ । ମନରୁ ଫିଟିବ ସନ୍ଦେହ ॥"

ଏହାର ଅନ୍ୟ ନାମ 'ଗୁପ୍ତ ଚବଣ' । ଭାଗବତରେ ଗୁପ୍ତ ଅର୍ଥାତ ପ୍ରକାଶିତ ହୋଇନଥିବା ବିଷୟ ଏଥିରେ ବର୍ଣ୍ଣିତ ହୋଇଥିବାରୁ ଏହାର ଏପରି ନାମକରଣ ହୋଇଥିବା ଅନୁମିତ ହୁଏ । ଏଥିରୁ ମଧ୍ୟ ଅନୁମିତ ହୁଏ ଯେ ଏହା ଶ୍ରୀମଦ୍ଭାଗବତର ପରବର୍ତ୍ତୀକାଳୀନ ରଚନା ।

**ରାଧା ମଞ୍ଜରୀ**—ଏଥିରେ ଜଗନ୍ନାଥ ଦାସ ଉତ୍କଳୀୟ ବୈଷ୍ଣବ-ମାନଙ୍କ ଦ୍ୱାରା ଅନୁସୃତ ପରଂପରା ଅନୁଯାୟୀ ସ୍ୱକୀୟ ଦୃଷ୍ଟିକୋଣରୁ ରାଧାକୃଷ୍ଣ ଯୁଗଳ ତତ୍ତ୍ୱର ବିଶ୍ଳେଷ କରିଅଛନ୍ତି । ଉତ୍କଳୀୟ ବୈଷ୍ଣବଧର୍ମର ସ୍ୱରୂପ ଆଲୋଚନା ଦୃଷ୍ଟିରୁ ଗ୍ରନ୍ଥଟି ଅତ୍ୟନ୍ତ ଉପାଦେୟ । ଏଥିରେ ପ୍ରଥମେ ସଂସ୍କୃତ ଶ୍ଳୋକ ଦିଆଯାଇ ପରେ ଓଡ଼ିଆ ପଦ୍ୟାନୁବାଦ ପ୍ରଦତ୍ତ ହୋଇଅଛି ।

"ସହସ୍ରାର ଚକ୍ର ନୀଳ ଗଗନର ପ୍ରାନ୍ତେ ।
ଘୋଟିଅଛି ନୀଳ ଜଳ ସମୁଦ୍ରର ପ୍ରାନ୍ତ ॥
ତାହାମଧ୍ୟେ ଆଜ୍ଞା ଚକ୍ର ଦୀପଶିଖା ପରି ।

ଜ୍ୟୋତି ମିଳନେ ସ୍ଫୁରିଲ ତତ୍ତ୍ୱହିଁ ଆବର ॥
ନିତ୍ୟରସ ବୋଲି ତାହା ଗୁଣୀ ଗୋ ମଣିବ ।
ରାଧାକୃଷ୍ଣ ଏକତତ୍ତ୍ୱ ବୋଲିଟି ଜାଣିବ ॥
ରାଧାତତ୍ତ୍ୱରେ ଯେ ନିତ୍ୟ କରୁଥାଇ ଧ୍ୟାନ ।
ଶୁଦ୍ଧ ଭକ୍ତ ତାହାରଟି ଅଟଇ ପ୍ରମାଣ ॥"

**ଷୋଳଚଉପଦୀ**—ଜଗନ୍ନାଥ ଦାସଙ୍କ ଧର୍ମତତ୍ତ୍ୱର ଆଲୋଚନା ଦୃଷ୍ଟିରୁ ରାଧାମଞ୍ଜରୀ ପରେ 'ଷୋଳଚଉପଦୀ' ଅନ୍ୟ ଏକ ଉପାଦେୟ ଗ୍ରନ୍ଥ । ଏଥିରେ ସେ ଗୌଡ଼ୀୟ ବୈଷ୍ଣବଧର୍ମର ପ୍ରଧାନ ଉପଜୀବ୍ୟ ରାଧାକୃଷ୍ଣ ଲୀଳା ଜଗନ୍ନାଥ ମୂର୍ତ୍ତିରେ ପ୍ରତିପାଦନ କରିଅଛନ୍ତି ଏବଂ ରାଧାକୃଷ୍ଣ, ଅଷ୍ଟନାୟିକା, ଷୋଡ଼ଶ ସଖୀ ଓ ଷୋଳ ସହସ୍ର ଗୋପାଙ୍ଗନା ସମସ୍ତେ ନିତ୍ୟରାହାସ ମଣ୍ଡଳ ନୀଳାଚଳ ଧାମରେ ନିତ୍ୟ ରାସଲୀଳାରେ ରତିଅଛନ୍ତି ବୋଲି ସେ ଦର୍ଶାଇଛନ୍ତି । ଏହାହିଁ ତାହାଙ୍କ ପ୍ରତିପାଦିତ ପୁରୁଷୋତ୍ତମବାଦ ।

"ଶୁଣହେ ସୁଜନଜନେ ଶ୍ରୀକୃଷ୍ଣ ଲୀଳା ଆଖ୍ୟାନେ
ନିତ୍ୟସ୍ଥାନେ ନିତ୍ୟଖେଳ ଖେଳନ୍ତି ହରି ।
କୋଟିବ୍ରହ୍ମ ନ ଜାଣନ୍ତି ଅନନ୍ତ ଶେଷ ମୂରତି
ସେ ପ୍ରଭୁ ବିଜେ ନିତ୍ୟ ଏ ନୀଳଗିରି ॥"
ଯେଉଁ ଭୂମି ଏ ରଙ୍ଗସ୍ଥଳୀ ଅଷ୍ଟଦଳେ ବେଢ଼ି ଶୋଭି ଶେଷ ମଉଳି
ଅଶେଷ ବ୍ରହ୍ମାଣ୍ଡ ସାର ଅନନ୍ତ ଶିର ଉପର
ନୀଳାଦ୍ରି ଅବ୍ୟୟ ନିତ୍ୟ ସ୍ଥଳ ଗୋଲକ ।
ରାଧାକୃଷ୍ଣ ପ୍ରେମରସ କିଶୋର କିଶୋରୀ ବେଶ
ଚଉଷଠି ବନ୍ଧେ କଲେ ରମଣ ରସ ।
ମୁଖେମୁଖ ଅଧର ପାନ
ନବ ବଧୂଲୀରେ ଅଳି ଚୁମ୍ବେ ଯେସନ ।"

ଆଧ୍ୟାତ୍ମିକ ତତ୍ତ୍ୱ ସଙ୍ଗେ କବିତ୍ୱର ମଧୁର ସମନ୍ୱୟ ଏ ଗ୍ରନ୍ଥର ପ୍ରଧାନ ବିଶେଷତ୍ୱ ।

**ତୂଳାଭିଣା**— ତୂଳାକୁ ଭିଣିଲେ ତହିଁରୁ ବସ୍ତ୍ର ବୟନ ଉପଯୋଗୀ ସୂତା ପ୍ରସ୍ତୁତ କରିବା ଯେପରି ସହଜ ହୋଇଥାଏ ସେହିପରି କଠିନ ଆଧ୍ୟାତ୍ମିକ ତତ୍ତ୍ୱ ସମୂହର ସରଳ ବ୍ୟାଖ୍ୟା କରି ଲୋକମାନଙ୍କୁ ତହିଁର ଆଚରଣରେ ପ୍ରବୃତ୍ତ କରାଇବା ଉଦ୍ଦେଶ୍ୟରେ ଏ ଗ୍ରନ୍ଥ ରଚିତ ହୋଇଥିବାରୁ ଏହାର ଏପରି ନାମକରଣ ହୋଇଅଛି ବୋଲି ମନେହୁଏ । ଉତ୍କଳୀୟ ବୈଷ୍ଣବ ଧର୍ମର ତାତ୍ତ୍ୱିକ ଆଲୋଚନାରେ ଏ ଗ୍ରନ୍ଥଟିର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଜଗନ୍ନାଥ ଦାସ ଏହି ଗ୍ରନ୍ଥରେ ଶିବ ପାର୍ବତୀ କଥୋପକଥନ ଛଳରେ ସୃଷ୍ଟିତତ୍ତ୍ୱ, ବ୍ରହ୍ମଜ୍ଞାନ, ଶରୀର ତତ୍ତ୍ୱ ଓ ଶ୍ରୀମଦ୍‌ଭାଗବତର ବ୍ୟାଖ୍ୟା ଆଦି ବିଭିନ୍ନ ବିଷୟର ଅବତାରଣା କରିଅଛନ୍ତି । ଏ ଗ୍ରନ୍ଥର ପରିକଳ୍ପନାରେ ନୂତନତ୍ୱ ପରିଲକ୍ଷିତ ହୁଏ ଏବଂ ବର୍ଣ୍ଣିତ ବିଷୟକୁ ପ୍ରଥମେ ପଦ୍ୟରେ ପ୍ରକାଶ କରାଯାଇ ପରେ ଗଦ୍ୟରେ ଏହାର ସରଳାର୍ଥ ବୁଝାଇ ଦିଆଯାଇଛି ।

ପାର୍ବତ୍ୟୁବାଚ

"ପୁଣି ପାର୍ବତୀ ପଚାରଇ । ଈଶ୍ୱର ପାଦେ ଚିତ୍ତ ଦେଇ ॥
ଏ ବଡ଼ ସଂଶୟ ମୋ ମନ । କହ ହେ ପ୍ରଭୁ ତ୍ରିଲୋଚନ ॥
ସକଳ ମନ୍ତ୍ର ତୀର୍ଥଜ୍ଞାନ । ବୋଇଲ ଶୂନ୍ୟ ଏ ପ୍ରମାଣ ॥"

ଈଶ୍ୱର ଉବାଚ

"ଯେତେ କହିଲ ଗୋ ପାର୍ବତୀ । ସମସ୍ତେ ଶୂନ୍ୟରେ ଅଛନ୍ତି ॥
ପବନ ଆସୁଛି ଯାଉଛି । ପବନ ସର୍ବ କରୁଅଛି ॥
ପବନ ଶୂନ୍ୟଯନ୍ତ୍ର ପରି । ସମସ୍ତ ଅଛଇ ଆବୋରି ॥
ପବନ ଶୂନ୍ୟ ପରକାଶ । କହଇ ଜଗନ୍ନାଥ ଦାସ ॥
ଶୁଣ ପାର୍ବତୀ ମନ ଦେଇ । କହିବା ଅର୍ଥ ଭାବ ଫେଇ ॥"

ଅର୍ଥ—ବେଦଶୂନ୍ୟ, ଜ୍ୟୋତିଶୂନ୍ୟ, ଜ୍ଞାନଶୂନ୍ୟ, ଯନ୍ତ୍ରଶୂନ୍ୟ, ମନ୍ତ୍ରଶୂନ୍ୟ, ଅକ୍ଷରଶୂନ୍ୟ, ସର୍ବତୀର୍ଥଶୂନ୍ୟ, ଏକାଦ୍ୟାଶୂନ୍ୟ । ଜୀବଜନ୍ତୁମାନେ ସମସ୍ତେ ଶୂନ୍ୟରେ ଅଛନ୍ତି । ମାଳା ଶୂନ୍ୟରେ ଅଛନ୍ତି । ମାଳା ଶୂନ୍ୟ, ତିଳକଶୂନ୍ୟ, ଅଙ୍ଗଶୂନ୍ୟ, ନ୍ୟାସଶୂନ୍ୟ, ବ୍ରତଶୂନ୍ୟ, ବେଦଶୂନ୍ୟ, ଜୀବଜନ୍ତୁଶୂନ୍ୟ ଏ ସମସ୍ତ ଶୂନ୍ୟରେ ଅଛନ୍ତି । ବୃକ୍ଷମାନେ ଶୂନ୍ୟରେ ଅଛନ୍ତି । ପାଷାଣ ଅକ୍ଷୟ ଚନ୍ଦ୍ର ସୂର୍ଯ୍ୟ

ତାରଗଣ ଏ ସମସ୍ତେ ଶୂନ୍ୟରେ ଅଛନ୍ତି । ପଞ୍ଚତ ଚଉଦ ବ୍ରହ୍ମାଣ୍ଡ ସମସ୍ତେ ଶୂନ୍ୟରେ ଅଛନ୍ତି । ଏଥିରେ ବାକ୍ୟଗୁଡ଼ିକ କ୍ଷୁଦ୍ର, ଭାଷା ସରଳ, ପ୍ରାଞ୍ଜଳ ଓ କାବ୍ୟ ଧର୍ମୀ । ଓଡ଼ିଆ ଗଦ୍ୟ ସାହିତ୍ୟର ବିକାଶରେ ଏହାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଷୋଡ଼ଶ ଶତାବ୍ଦୀର ଓଡ଼ିଆ ଗଦ୍ୟଶୈଳୀର ଏହା ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

**ପାଷଣ୍ଡଦଳନ**—ଏଥିରେ ପ୍ରଥମେ ସଂସ୍କୃତ ଶ୍ଳୋକ ଏବଂ ପରେ ଓଡ଼ିଆ ପଦ୍ୟାନୁବାଦ ପ୍ରଦତ୍ତ ହୋଇଅଛି । ବୈଷ୍ଣବାଗ୍ନର ଏବଂ ବୈଷ୍ଣବଧର୍ମର ସ୍ୱରୂପ ବର୍ଣ୍ଣନା ଏ ଗ୍ରନ୍ଥର ଲକ୍ଷ୍ୟ ।

"ଚଣ୍ଡାଲୋଽପି ମୁନିଶ୍ରେଷ୍ଠୋ ବିଷ୍ଣୁଭକ୍ତି ପରାୟଣଃ ।
ବିଷ୍ଣୁଭକ୍ତିବିହୀନସ୍ତୁ ଦ୍ୱିଜୋଽପିଚ ନରାଧମଃ ॥
ଚଣ୍ଡାଳ ହୋଇ ସେ ଯେବେ ବିଷ୍ଣୁ ପରାୟଣ ।
ହୋଇ ସଦା କରେ ମୁନି ବ୍ରତ ଆଚରଣ ॥
ସର୍ବ ବର୍ଣ୍ଣେ ପୂଜ୍ୟ ଯେହୁ ହୋଇ ଦ୍ୱିଜବର ।
ବିଷ୍ଣୁଭକ୍ତିହୀନେ ଚଣ୍ଡାଳରୁ ନୀଚତର ॥"

**ମନଶିକ୍ଷା**—ଏଥିରେ ବୈଷ୍ଣବାଗ୍ନର, ଜୀବାତ୍ମା ପରମାତ୍ମା ବିଷୟ ଏବଂ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ଆଦି ବିଷୟ ବର୍ଣ୍ଣିତ ହୋଇଅଛି । ପରମାତ୍ମା ପ୍ରାପ୍ତିର ପ୍ରଧାନ ଉପାୟ ହେଉଛି ମନର ସ୍ଥିରତା ଏବଂ ଏହା ଯୋଗସାଧନ ଦ୍ୱାରାହିଁ ସମ୍ଭବ । ଏହି ବିଷୟ ଏଥିରେ ବର୍ଣ୍ଣିତ ହୋଇଥିବାରୁ ଗ୍ରନ୍ଥର ନାମ ହେଉଛି ମନଶିକ୍ଷା । ସଂସ୍କୃତରେ ଶିକ୍ଷା ଶବ୍ଦର ପ୍ରକୃତ ଅର୍ଥ ହେଉଛି ନିୟମନ । ଏଥିରୁ ଗ୍ରନ୍ଥର ନାମକରଣର ଯଥାର୍ଥତା ପ୍ରତିପାଦିତ ହୁଏ ।

**ଜଗନ୍ନାଥଚରିତାମୃତ**—ଏଥିରେ ତିନିଗୋଟି ଅଧ୍ୟାୟ ସନ୍ନିବେଶିତ ହୋଇଅଛି । ପ୍ରଥମ ଅଧ୍ୟାୟରେ ଶଙ୍ଖ କ୍ଷେତ୍ରର ମାହାତ୍ମ୍ୟ, ଦ୍ୱିତୀୟ ଅଧ୍ୟାୟରେ ଜଗନ୍ନାଥଙ୍କ ଦ୍ୱାଦଶଯାତ୍ରାର ବିବରଣୀ ଏବଂ ତୃତୀୟ ଅଧ୍ୟାୟରେ ଦାରୁବ୍ରହ୍ମ ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି ।

**ରାସକ୍ରୀଡ଼ା**—ଏହା ଷୋଳ ଚଉପଦୀ ଅନୁରୂପ ରାଧାକୃଷ୍ଣ ରାସଲୀଳା ବିଷୟକ ଏକ ଗ୍ରନ୍ଥ । ଏଥିରେ ଜଗନ୍ନାଥ ଦାସ ସ୍ୱକୀୟ ଦୃଷ୍ଟିଭଙ୍ଗୀରୁ ରାଧାକୃଷ୍ଣ ରାସଲୀଳାର ଆଧ୍ୟାତ୍ମିକ ବ୍ୟାଖ୍ୟା କରିଅଛନ୍ତି ।

**ଧ୍ରୁବଚରିତ**—ଓଡ଼ିଆ ଭାଷା ଓ ବଙ୍ଗାକ୍ଷରରେ ମୁଦ୍ରିତ ଜଗନ୍ନାଥ ଦାସଙ୍କ 'ଧ୍ରୁବଚରିତର' ମଙ୍ଗଳାଚରଣର ଏକ ମୁଦ୍ରିତ ପ୍ରତିଲିପି ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତି ତାହାଙ୍କ ଓଡ଼ିଆ ସାହିତ୍ୟର ଇତିହାସ ମଧ୍ୟ-ପର୍ବରେ ପ୍ରକାଶ କରିଅଛନ୍ତି । ତାହା ନମୁନାରେ ପ୍ରଦତ୍ତ ହେଲା ।

"ନମାମି ଅମ୍ବିକା ସୁତ ଚରଣ ପଙ୍କଜ ।
ସର୍ବ ଦେବଙ୍କର ମଧ୍ୟେ ନାମ ଦେବରାଜ ॥
ଯାର ନାମ ଲମ୍ବୋଦର ସର୍ବବିଘ୍ନହର ।
କର୍ଣ୍ଣେ କୁଣ୍ଡଳ ହୃଦେ ହାର ମନୋହର ॥
ତୁଙ୍ଗ ବକ୍ଷସ୍ଥଳ ଦୀର୍ଘ ଶୋଭେ ଭୁଜ ଚାରି ।
ଅଜସ୍ର ଅଭୟବର ପାଶାଙ୍କୁଶ ଧାରି ॥
ଯାହାର ପ୍ରସାଦ ବଳେ ଜଡ଼ ବୁଦ୍ଧି ତୁଟେ ।
ନିର୍ମଳ ବଚନ ଯେ ସ୍ଫୁରଇ କଣ୍ଠତଟେ ॥
ମୋର ପ୍ରତି ପ୍ରସନ୍ନ ତୁ ହୁଅ ଲମ୍ବୋଦର ।
ଭାଗବତ ଭାଷା ମୁହିଁ କରିବି ପ୍ରଚୁର ॥"

*ଓଡ଼ିଆ ସାହିତ୍ୟର ଇତିହାସ—ମଧ୍ୟପର୍ବ—୨୯୪ପୃ ।

"ଭକ୍ତିଯୋଗ ମଧ୍ୟେ ଯେ ଉତ୍ତମ ଭାଗବତ ।
କହିବି ଚତୁର୍ଥ ସ୍କନ୍ଧ ଧ୍ରୁବର ଚରିତ ॥
ସପତ ବରଷ ପୁଅ ଘୋର ତପ କଲା ।
ମାତାର ସପତ୍ନୀ ବାକ୍ୟେ ହରିଙ୍କି ଭଜିଲା ॥"

ଏହି ମଙ୍ଗଳାଚରଣ ସହିତ ତାହାଙ୍କ 'ଗୁପ୍ତ ଭାଗବତ'ର ମଙ୍ଗଳାଚରଣର ତୁଳନା ଅତ୍ୟନ୍ତ କୌତୂହଳପ୍ରଦ ।

"ବନ୍ଦଇ ପାର୍ବତୀ ତନୟ । ଏକଦନ୍ତ ଯେ ମହାକାୟ ॥
ଭକତ ପ୍ରିୟ ଗଜ ମୁଖ । ହରନ୍ତି ଦୀନ ଜନ ଦୁଃଖ ॥
ଗଣ୍ଡମଣ୍ଡଳୁ ମଧୁକ୍ଷରେ । ତା ଲୋଭେ ଉଡ଼ନ୍ତି ଭ୍ରମରେ ॥
ପାଶ ଅଙ୍କୁଶ ବେନିକର । ଅତି ସୁନ୍ଦର ଲମ୍ବୋଦର ॥
ମୁଁ ହୀନ ଜଗନ୍ନାଥ ଦାସ । ଶରଣ ତୋ ପଦ ସାରସ ॥
ତୋର କୃପାରେ ଗଣପତି । ଲେଖିଲି ଭାଗବତ ପୋଥି ॥"

ଏ ଦୁଇ ରଚନାରେ ଗଭୀର ସାମଞ୍ଜସ୍ୟ ବିଦ୍ୟମାନ । ଏଥିରୁ ମଧ୍ୟ ସୂଚିତ ହୁଏ ଯେ 'ଧ୍ରୁବ ଚରିତ' ଭାଗବତ ରଚନା ପୂର୍ବରୁ ଏବଂ 'ଗୁପ୍ତ ଭାଗବତ' ଭାଗବତ ରଚନା ପରେ ଲିଖିତ ହୋଇଥିଲା । ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଯେ ସଂଶିତ ଧ୍ରୁବ ଚରିତ ଭାଗବତ ଚତୁର୍ଥ ସ୍କନ୍ଧ ଅଷ୍ଟମ ଅଧ୍ୟାୟ ବର୍ଣ୍ଣିତ ଧ୍ରୁବ ଚରିତ ସହିତ ସମାନ । ଏହା କଳସାରଗ ଏବଂ ଚଉଦ ଅକ୍ଷରୀ ବୃତ୍ତରେ ରଚିତ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ଜଗନ୍ନାଥ ସମଗ୍ର ଭାଗବତ ରଚନା ପୂର୍ବରୁ ଏହାକୁ ଲେଖିଥିଲେ ଏବଂ ପରେ ଭାଗବତରେ ଏହାକୁ ଅପରିବର୍ତ୍ତିତ ଭାବେ ସଂଯୋଜିତ କରି ଦେଇଥିଲେ । ସେଥିପାଇଁ ସମଗ୍ର ଭାଗବତ ନବାକ୍ଷରୀ ବୃତ୍ତରେ ରଚିତ ହୋଇଥିଲେ ହେଁ ଏହା ଚଉଦ ଅକ୍ଷରୀ ବୃତ୍ତରେ ରଚିତ ହୋଇଅଛି । ଏହାର ଅନ୍ୟ ଏକ ବଳିଷ୍ଠ ପ୍ରମାଣ ହେଉଛି ଯେ କେବଳ ଗ୍ରନ୍ଥ ଆଦ୍ୟରେ ମଙ୍ଗଳାଚରଣର ବିଧି ଥିଲେ ହେଁ ଅଷ୍ଟମ ଅଧ୍ୟାୟ ଧ୍ରୁବ ଚରିତରେ ଏକ ସ୍ୱତନ୍ତ୍ର ମଙ୍ଗଳାଚରଣ ସନ୍ନିବେଶିତ ହୋଇଛି ଏବଂ ଗ୍ରନ୍ଥର ଆଦ୍ୟରେ ନୃସିଂହଙ୍କୁ ବନ୍ଦନା କରାଯାଇଥିଲେ ହେଁ ଏଥିରେ ବିଘ୍ନ-ନାଶନ ଗଣପତିଙ୍କୁ ବନ୍ଦନା କରାଯାଇଛି ।

ତେଣୁ ଯେଉଁମାନେ ଭାଗବତର ଏହି ଅଂଶକୁ ପ୍ରକ୍ଷିପ୍ତ ବୋଲି ମନେ-କରନ୍ତି ସେମାନଙ୍କ ମତ ଠିକ୍ ନୁହେଁ । ଦୁଃଖର କଥା ଯେ ସ୍ୱର୍ଗୀୟ ରାଜକିଶୋର ଦାସ ତାହାଙ୍କ ଦ୍ୱାରା ସଂପାଦିତ ଭାଗବତରେ ମୂଳ ପୋଥିର ଚଉଦ ଅକ୍ଷରକୁ ଭାଙ୍ଗି ନବାକ୍ଷରୀ ବୃତ୍ତରେ ପରିଣତ କରିଦେଇଅଛନ୍ତି । କିନ୍ତୁ ରାଧାରମଣ ପୁସ୍ତକାଳୟ ଦ୍ୱାରା ମୁଦ୍ରିତ ପୁସ୍ତକରେ ଏହାର ମୂଳ ସ୍ୱରୂପ

ଅସ୍ପଷ୍ଟ ରହିଅଛି । ତେଣୁ ରାଜକିଶୋର ଦାସଙ୍କ ଦ୍ୱାରା ସମ୍ପାଦିତ ଭାଗବତର ଲିପିଶୁଦ୍ଧତା ସମ୍ୟକ ରକ୍ଷିତ ହୋଇଥିଲେହେଁ ଏହା ସମ୍ପୂର୍ଣ୍ଣ ନିର୍ଭରଯୋଗ୍ୟ ନୁହେଁ ।

କେତେକଙ୍କ ମତରେ ଶ୍ରୀମଦ୍‌ଭାଗବତ ବ୍ୟତୀତ ଜଗନ୍ନାଥଦାସଙ୍କ ଅନ୍ୟାନ୍ୟ କ୍ଷୁଦ୍ର ରଚନା ସମୂହର କୌଣସି ସାହିତ୍ୟିକ ମୂଲ୍ୟ ନାହିଁ । ଅବଶ୍ୟ ତୁଳାଭିଣା ଅର୍ଥ କୋଇଲି ଓ ମନଶିକ୍ଷା ପରି ଆଧ୍ୟାତ୍ମିକ ତଥ୍ୟ ଓ ବୈଷ୍ଣବାଗୃର ସମ୍ବଳିତ ପୁସ୍ତକ ସମୂହର ବିଶେଷ କୌଣସି ସାହିତ୍ୟିକ ମୂଲ୍ୟ ନାହିଁ ଓ ନ ରହିବାର କଥା । କିନ୍ତୁ 'ଗଜସ୍ତୁତି', 'ମୃଗୁଣୀସ୍ତୁତି', 'ଦାରୁବ୍ରହ୍ମଗୀତା', 'ଷୋଳ ଚଉପଦୀ' ଓ 'ଧ୍ରୁବ ଚରିତ' ଇତ୍ୟାଦି ଗ୍ରନ୍ଥର କୌଣସି ସାହିତ୍ୟିକ ମୂଲ୍ୟ ନାହିଁ ବୋଲି କହିବା କଦାପି ଯୁକ୍ତିସଙ୍ଗତ ନୁହେଁ । ଏକଥା ଅବଶ୍ୟ ଠିକ୍ ଯେ ଜଗନ୍ନାଥ କଳା ପାଇଁ କଳାର ଆରାଧନାରେ ବିଶ୍ୱାସୀ ନଥିଲେ । ତାଙ୍କର ସାହିତ୍ୟ ସାଧନା ଏକ ବୃହତ୍ତର ସାମାଜିକ ଲକ୍ଷ୍ୟର ଅଂଶ ବିଶେଷ ଥିଲି । ଜନସାଧାରଣଙ୍କ ମଧ୍ୟରେ ଆଧ୍ୟାତ୍ମିକତାର ବିକାଶ ଓ ଧର୍ମଭାବର ପରିସ୍ଫୁରଣ ନିମିତ୍ତ ସାହିତ୍ୟ ତାଙ୍କ ଦୃଷ୍ଟିରେ ଥିଲି ଏକ ଆୟୁଧ ମାତ୍ର । ସେଥିପାଇଁ ବାଳକଠାରୁ ବୃଦ୍ଧ ବିଦଗ୍ଧବିଦ୍ୱଜ୍ଜନଠାରୁ ସ୍ୱଳ୍ପଶିକ୍ଷିତ ଜନସାଧାରଣ ସବୁ ବୟସ ଓ ସବୁ ଶ୍ରେଣୀର ଲୋକଙ୍କ ପାଇଁ ସେ ସାହିତ୍ୟ ସୃଷ୍ଟି କରି ଯାଇଛନ୍ତି । ପୁଣି ଭାଗବତ ପରି ମହାକାବ୍ୟଠାରୁ ଆରମ୍ଭ କରି 'ମୃଗୁଣୀସ୍ତୁତି', 'ଗଜ ନିସ୍ତାରଣଗୀତା ପରି', 'ଗାଥା କବିତା', 'ଦାରୁବ୍ରହ୍ମ ଗୀତା', 'କ୍ଷେତ୍ରବର ଓ ଚଉତିଶା' ଓ 'ଧ୍ରୁବ ଚରିତ' ପରି ବର୍ଣ୍ଣନାତ୍ମକ କାବ୍ୟ ଏବଂ 'ଷୋଳ ଚଉପଦୀ' ଓ 'ଗୁରୁ ଚଉପଦୀ' ପରି ଆଧ୍ୟାତ୍ମିକ କବିତା ସେ ରଚନା କରି ଯାଇଛନ୍ତି । ଏଗୁଡ଼ିକ ପୁଣି ବିବିଧ ରାଗରାଗିଣୀରେ ରଚିତ । ତାହାଙ୍କ କ୍ଷୁଦ୍ର ରଚନାଗୁଡ଼ିକ ସରଳ, ଭାବ ବ୍ୟଞ୍ଜକ, ରସପୂର୍ଣ୍ଣ ଏବଂ ସର୍ବଜନ ବୋଧ୍ୟ । ପାଠକ ଓ ଶ୍ରୋତାମାନଙ୍କୁ ଆଖି ଆଗରେ ରଖି ଏଗୁଡ଼ିକ ରଚିତ ହୋଇଥିବାରୁ ଏଗୁଡ଼ିକର ସାହିତ୍ୟିକ ତଥା ସାମାଜିକ ମୂଲ୍ୟ ଅତୁଳନୀୟ ।

□□□

# ସପ୍ତମ ଅଧ୍ୟାୟ

## ଧର୍ମ ଓ ଦର୍ଶନ

'ସାଧନା ଓ ସିଦ୍ଧି' ଅଧ୍ୟାୟରେ ଜଗନ୍ନାଥ ଦାସଙ୍କ ଧର୍ମ-ଧାରଣା ସମ୍ବନ୍ଧରେ କିଞ୍ଚିତ ଆଭାସ ପ୍ରଦତ୍ତ ହୋଇଅଛି । ଧର୍ମ ଏକ ତତ୍ତ୍ୱ ବା ମତବାଦ ମାତ୍ର ନୁହେଁ, ଏହା ଅନୁଭୂତିର ବିଷୟ । ଏହି ଅନୁଭୂତି ଏକ ଅପରୋକ୍ଷ ଓ ଅଦ୍ୱୟ ଅନୁଭୂତି । ଧର୍ମର ସାଧନାରେ ସାଧକ ଯେତେବେଳେ ସିଦ୍ଧିରେ ପହଞ୍ଚେ ସେତେବେଳେ ଜ୍ଞାତା ଓ ଜ୍ଞେୟ, ସାଧକ ଓ ସାଧ୍ୟ ଏବଂ ଭକ୍ତ ଓ ଭଗବାନ ମଧ୍ୟରେ ଭେଦଭାବ ସଂପୂର୍ଣ୍ଣ ବିଦୂରିତ ହୋଇଯାଏ । ଭକ୍ତ ନିକଟରେ ସମଗ୍ର ଜଗତ ସେତେବେଳେ ହରିମୟ ପ୍ରତିଭାତ ହୁଏ । ବିଶ୍ୱର ଅଣୁପରମାଣୁରେ ସେ କେବଳ ହରିଙ୍କୁ ଦେଖେ, ଶୁଣେ ଓ ଅନୁଭବ କରେ । କଥିତ ଅଛି ଶ୍ରୀଚୈତନ୍ୟ ସମୁଦ୍ରର ନୀଳ ଜଳରାଶିକୁ ଦେଖି କୃଷ୍ଣଜ୍ଞାନରେ ବିମୋହିତ ହେଉଥିଲେ । ସାଧକ ଓ ଭକ୍ତର ଏ ଅନୁଭୂତି ଅନ୍ୟ ପକ୍ଷରେ ବାକ୍ୟ ଓ ମନର ଅଗୋଚର । ସେଥିପାଇଁ ମହାପୁରୁଷମାନଙ୍କର ଧର୍ମ-ଧାରଣା ସମ୍ବନ୍ଧରେ ଅନେକ ସମୟରେ ଭ୍ରମଧାରଣା ସୃଷ୍ଟି ହୋଇଥାଏ । ଭକ୍ତ ଶିରୋମଣି ବୈଷ୍ଣବକୁଳତିଳକ ଜଗନ୍ନାଥ ଦାସ ଏଥିରୁ ବାଦଯାଇନାହାନ୍ତି । କେତେକ ତାଙ୍କୁ ପ୍ରଚ୍ଛନ୍ନ ବୌଦ୍ଧ ବା ବୌଦ୍ଧ-ବୈଷ୍ଣବରୂପେ ଅଭିହିତ କରୁଥିବାବେଳେ ଅନ୍ୟ କେତେକ ତାହାଙ୍କୁ ଜ୍ଞାନମିଶା ଭକ୍ତିମାର୍ଗର ଉପାସକ ବୋଲି ମତ ପ୍ରଦାନ କରିଥାନ୍ତି ।

ଦିବାକର ଦାସ ତାହାଙ୍କ 'ଜଗନ୍ନାଥଚରିତାମୃତ' ଗ୍ରନ୍ଥରେ ଜଗନ୍ନାଥ ଦାସଙ୍କ ଧର୍ମମତ ଓ ଜୀବନ ଦର୍ଶନ ସମ୍ବନ୍ଧରେ କେତେକ ବିଷୟ ଉଲ୍ଲେଖ କରିଅଛନ୍ତି ।

'ଜଗନ୍ନାଥଚରିତାମୃତ' ଜଗନ୍ନାଥ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ 'ଅତିବଡ଼ୀ' ବୈଷ୍ଣବ ସମ୍ପ୍ରଦାୟର ଏକ ପ୍ରାମାଣିକ ଗ୍ରନ୍ଥ ହୋଇଥିବାରୁ ଏବଂ

ଦିବାକର ଦାସଙ୍କ କହିବା ଅନୁଯାୟୀ ଏହା ଜଗନ୍ନାଥ ଦାସଙ୍କ ଲେଖା ଓ ଉପଦେଶାବଳୀକୁ ଭିତ୍ତିକରି ରଚିତ ହୋଇଥିବାରୁ ତାହାକୁ ଏହି ଆଲୋଚନାର ଆଧାରରୂପେ ଗ୍ରହଣ କରାଯାଇଛି ।

## (କ) ପରଦେବତା ନିରୂପଣ

ପରମ ତତ୍ତ୍ୱର ସ୍ୱରୂପ ନିର୍ଦ୍ଧାରଣ ଧର୍ମର ପ୍ରଧାନ ଲକ୍ଷ୍ୟ । ସେଶ୍ୱର ହେଉ ବା ନିରୀଶ୍ୱର ହେଉ ଜଗତର ପ୍ରତ୍ୟେକ ଧର୍ମ ପକ୍ଷରେ ଏହା ସତ୍ୟ । ଜଗନ୍ନାଥ ଦାସଙ୍କ ଦ୍ୱାରା ପ୍ରଚାରିତ 'ଉତ୍କଳୀୟ ବୈଷ୍ଣବଧର୍ମର ଉପାସ୍ୟ ପରଦେବତା ହେଉଛନ୍ତି ଜଗନ୍ନାଥ । ସେ ନିର୍ଗୁଣ, ନିରାକାର, ନିର୍ବିକାର, ନିର୍ବିଶେଷ, ନିରୀହ ଓ ନିରୁପାଧିକ । ତାଙ୍କର ନାମ, ରୂପ, ଗୁଣ ବା ଆକାର ନାହିଁ । ସେ ହ୍ରସ୍ୱ ନୁହନ୍ତି କି ଦୀର୍ଘ ନୁହନ୍ତି, ଅଣ୍ଡ ନୁହନ୍ତି କି ବଡ଼ ନୁହନ୍ତି ଏବଂ ସୂକ୍ଷ୍ମ ନୁହନ୍ତି କି ସ୍ଥୂଳ ନୁହନ୍ତି । ସେ ଗୁଣାତୀତ ଓ ପ୍ରକାଶାତୀତ । ସେ ଅଖିଳବ୍ରହ୍ମାଣ୍ଡର ପାଳକ ଏବଂ ସୃଷ୍ଟି, ସ୍ଥିତି ଓ ଲୟର କାରଣ । ସେ ସକଳ କାମନା, ସକଳ ଗତି ଓ ସକଳ ଜୀବର ଆଧାର । ସେ ସଚ୍ଚିଦାନନ୍ଦ । ନିର୍ଗୁଣ ଓ ନିର୍ବିଶେଷ ହୋଇ ମଧ୍ୟ ସେ ସଗୁଣ ଓ ସବିଶେଷ । ନିର୍ଗୁଣତ୍ୱ ତାଙ୍କର ସ୍ୱରୂପ ଲକ୍ଷଣ ଏବଂ ସଗୁଣତ୍ୱ ତାଙ୍କର ତଟସ୍ଥ ଲକ୍ଷଣ । ସେ ଏକ ଏବଂ ଅଦ୍ୱିତୀୟ । ସେ ଜ୍ଞାନୀର ବ୍ରହ୍ମ, ଯୋଗୀର ପରମାତ୍ମା ଓ ଭକ୍ତର ଭଗବାନ ।

"ସେ ପରଂବ୍ରହ୍ମ, ଯେ ଈଶ୍ୱର । ତାହାଙ୍କୁ ମୋର ନମସ୍କାର ।।"
[ଜ. ଚ.—୧୭ଶ ଅଧ୍ୟାୟ]

ଯେତେବେଳେ ସେ ନିରୁପାଧିକ ସେତେବେଳେ ସେ ପରଂବ୍ରହ୍ମ ଏବଂ ଯେତେବେଳେ ସେ ଉପାଧିଯୁକ୍ତ ସେତେବେଳେ ସେ ଈଶ୍ୱର । ପୁନଶ୍ଚ ଜଗନ୍ନାଥ ହେଉଛନ୍ତି ଓଁକାର ରୂପୀ ଶବ୍ଦବ୍ରହ୍ମ ବା ପ୍ରଣବ । ଏହି ଓଁକାର ପରଂବ୍ରହ୍ମଙ୍କର ପ୍ରତୀକ ଓ ବ୍ରହ୍ମପ୍ରାପ୍ତିର ଶ୍ରେଷ୍ଠ ଉପାୟ ।

"ଏତଦାଲମ୍ବନଂ ଶ୍ରେଷ୍ଠମେତଦାଲମ୍ବନଂ ପରମ୍ ।
ଏତଦାଲମ୍ବନଂ ଜ୍ଞାତ୍ୱା ବ୍ରହ୍ମଲୋକେ ମହୀୟତେ ।।"
[—ମାଣ୍ଡୁକ୍ୟୋପନିଷଦ ]

"ନିର୍ବିକଳ୍ପ ନିରୀହ ବ୍ରହ୍ମ । ନିରାକାର ଓଁକାର ଗମ୍ୟ ॥"

[ଜ. ଚ.—୨୨୭ ପୃ]

ଏ ଜଗନ୍ନାଥ ଉପନିଷଦ ବର୍ଣ୍ଣିତ ତୁରୀୟବ୍ରହ୍ମଙ୍କ ସହିତ ଏକ ଓ ଅଭିନ୍ନ ।

"ତୁରୀୟବ୍ରହ୍ମ ଜଗନ୍ନାଥ । ଅଷ୍ଟ ଭୁଚର ତାଙ୍କ ଗାଥ ॥"

[ଜ. ଚ.—୨୨୫ ପୃ]

ତୁରୀୟ ଶବ୍ଦର ଆକ୍ଷରିକ ଅର୍ଥ ହେଉଛି 'ଚତୁର୍ଥ' । ବେଦ ବେଦାନ୍ତାଦି ଶାସ୍ତ୍ର ସମୂହରେ ଆତ୍ମାର ଚାରିଗୋଟି ପାଦ ବା ଅବସ୍ଥା ଥିବା ବିଷୟ ବର୍ଣ୍ଣିତ ହୋଇଅଛି । "ସୋଽୟମାତ୍ମା ଚତୁଷ୍ପାତ୍ ।" [ମାଣ୍ଡୁକ୍ୟ ଉପନିଷଦ]

ଏହି ଚାରିଗୋଟି ପାଦ ବା ଅବସ୍ଥା ମଧ୍ୟରୁ ପ୍ରଥମ ତିନିଗୋଟି ପାଦ ବା ଅବସ୍ଥା ହେଉଛି ଯଥାକ୍ରମେ ଜାଗରଣ, ସ୍ୱପ୍ନ ଓ ସୁଷୁପ୍ତି । ଏହି ତିନି ଅବସ୍ଥାର ଉପଭୋକ୍ତା ଯଥାକ୍ରମେ ବିଶ୍ୱ, ତୈଜସ ଓ ପ୍ରାଜ୍ଞ ନାମରେ କଥିତ ହୁଅନ୍ତି । ଉପରୋକ୍ତ ତିନି ଅବସ୍ଥାରେ ଜ୍ଞାତା ଓ ଜ୍ଞେୟ, ଭୋଗ୍ୟ ଓ ଭୋକ୍ତା ଏବଂ କାର୍ଯ୍ୟ ଓ କାରଣର ଭେଦ ବିଦ୍ୟମାନ ଥାଏ । କିନ୍ତୁ ତୁରୀୟ ଏହି ତିନି ଅବସ୍ଥାଠାରୁ ସ୍ୱତନ୍ତ୍ର । ଗୌଡ଼ପାଦାଚାର୍ଯ୍ୟ ତାହାଙ୍କ 'ମାଣ୍ଡୁକ୍ୟ କାରିକା'ରେ ତୁରୀୟ ଅବସ୍ଥାର ଏକ ମନୋଜ୍ଞ ଚିତ୍ର ପ୍ରଦାନ କରିଅଛନ୍ତି । ସେ ଅନ୍ତଃପ୍ରଜ୍ଞ ନୁହନ୍ତି କି ବହିଃପ୍ରଜ୍ଞ ନୁହନ୍ତି କିମ୍ବା ଉଭୟପ୍ରଜ୍ଞ ନୁହନ୍ତି । ସେ ପ୍ରଜ୍ଞାନଘନ, ପ୍ରଜ୍ଞାବାନ, କିମ୍ବା ପ୍ରଜ୍ଞାହୀନ ନୁହନ୍ତି । ସେ ଅଦୃଷ୍ଟ, ଅବ୍ୟବହାର୍ଯ୍ୟ, ଅଗ୍ରାହ୍ୟ, ଅଲକ୍ଷ୍ୟ, ଅଚିନ୍ତ୍ୟ, ଅବ୍ୟୟ ଓ ଅନିର୍ଦ୍ଦେଶ୍ୟ । ସେ ସତ୍ତ୍ୱମୁକ୍ତ, ଅଦ୍ୱୈତ, ଶିବ, ଶାନ୍ତ ଓ ପ୍ରପଞ୍ଚାତୀତ । ଜଗନ୍ନାଥଙ୍କର ଅନ୍ୟ ଏକ ନାମ ପୁରୁଷୋତ୍ତମ । ଶାସ୍ତ୍ରରେ ଓ ଲୋକରେ ସେ ଏହି ନାମରେ ସୁବିଦିତ । ତାଙ୍କର ନାମାନୁଯାୟୀ ତାଙ୍କର ପବିତ୍ର ଧାମର ନାମ ମଧ୍ୟ ରଖାଯାଇଛି ପୁରୁଷୋତ୍ତମ । ଶ୍ରୀମଦ୍‌ଭଗବଦ୍‌ଗୀତାର ପଞ୍ଚଦଶ ଅଧ୍ୟାୟରେ ଭଗବାନ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ପୁରୁଷୋତ୍ତମତତ୍ତ୍ୱ ବୁଝାଇବାକୁ ଯାଇ କହିଅଛନ୍ତି :—"ମୁଁ କ୍ଷର ଅର୍ଥାତ ଚେତନାଚେତନାତ୍ମକ ଜଗତର ଅତୀତ ଏବଂ ଅକ୍ଷର ଅର୍ଥାତ ନିର୍ବିଶେଷ କୁଟସ୍ଥ ବ୍ରହ୍ମଙ୍କଠାରୁ ଉତ୍ତମ । ତେଣୁ ମୋର ନାମ ପୁରୁଷୋତ୍ତମ । ମୋ ଠାରୁ ପରମ ତତ୍ତ୍ୱ ଆଉ କିଛି

ନାହିଁ ।" ପୁରୁଷୋତ୍ତମ ତତ୍ତ୍ୱରେ ବ୍ରହ୍ମତତ୍ତ୍ୱ, ଭଗବତ୍‌ତତ୍ତ୍ୱ ଓ ଆତ୍ମତତ୍ତ୍ୱର ସୁମଧୁର ସମାବେଶ ଦୃଷ୍ଟ ହୁଏ । ଭାଗବତରେ ମଧ୍ୟ ଠିକ୍ ଏଇକଥା କୁହାଯାଇଛି । "ବ୍ରହ୍ମେତି ପରମାତ୍ମେତି ଭଗବାନିତି ଶବ୍ଦ୍ୟତେ ।" ବ୍ରହ୍ମ, ପରମାତ୍ମା ଓ ଭଗବାନ ଏକ ଏବଂ ଅଭିନ୍ନ । ନାମ ଭିନ୍ନ କିନ୍ତୁ ତତ୍ତ୍ୱ ଏକ । ଜଗନ୍ନାଥ ଏକାଧାରରେ ନିର୍ଗୁଣ ପରଂବ୍ରହ୍ମ, ସଗୁଣ ବିଶ୍ୱରୂପ ଏବଂ ଜୀବହୃଦୟସ୍ଥ ପରମାତ୍ମା ।

**ଚତୁର୍ଦ୍ଧାମୂର୍ତ୍ତି ତତ୍ତ୍ୱ—**

ଜଗନ୍ନାଥ ଚତୁର୍ଦ୍ଧାମୂର୍ତ୍ତିରେ ପୁରୁଷୋତ୍ତମରେ ବିଦ୍ୟମାନ ଅଛନ୍ତି । ଜଗନ୍ନାଥ ବଳଭଦ୍ର ସୁଭଦ୍ରା ଏବଂ ସୁଦର୍ଶନଙ୍କୁ ଘେନି ଏହି ଚତୁର୍ଦ୍ଧା ମୂର୍ତ୍ତି କଳ୍ପିତ । ଚତୁର୍ଦ୍ଧାମୂର୍ତ୍ତିର ପ୍ରକୃତ ଅର୍ଥ କ'ଣ ତାହା ସଠିକଭାବେ ନିରୂପଣ କରିବା କଷ୍ଟକର । ଏ ସମ୍ବନ୍ଧରେ ତତ୍ତ୍ୱବିତ୍‌ମାନେ ବିଭିନ୍ନ ମତ ପୋଷଣ କରୁଥିବାର ଦେଖାଯାଏ । ମହାଭାରତର କୃଷ୍ଣ ଉପାଖ୍ୟାନ ସହିତ ଏହି ନାମକରଣର ସାମଞ୍ଜସ୍ୟ ଥିବା ହେତୁ କେତେକ ମନେକରନ୍ତି ଯେ ପୁରୁଷୋତ୍ତମର ଚତୁର୍ଦ୍ଧାମୂର୍ତ୍ତି ମହାଭାରତର କୃଷ୍ଣ, ବଳରାମ, ସୁଭଦ୍ରା ଓ ସୁଦର୍ଶନଙ୍କଠାରୁ ଅଭିନ୍ନ । ସ୍କନ୍ଦ ପୁରାଣରେ ଲେଖାଅଛି—

"ତସ୍ୟ ଶକ୍ତି ସ୍ୱରୂପେୟଂ ଭଗିନୀ ସ୍ତ୍ରୀ ପ୍ରବର୍ତ୍ତିକା ।"

ଅର୍ଥାତ୍ ସୁଭଦ୍ରା ହେଉଛନ୍ତି ଜଗନ୍ନାଥରୂପୀ କୃଷ୍ଣ ବାସୁଦେବଙ୍କର ଶକ୍ତି ଏବଂ ଭଗିନୀ ହେଲେ ହେଁ ସେ ତାଙ୍କର ସ୍ତ୍ରୀ । ଏହି ମତବାଦ ତନ୍ତ୍ର ପ୍ରଭାବିତ ବୋଲି ମନେହୁଏ । ଆପାତ ଦୃଷ୍ଟିରୁ ଏପରି ଏକ ବ୍ୟାଖ୍ୟା ବିଶ୍ୱାସଯୋଗ୍ୟ ହେଲେହେଁ ଏହାର ସମୀଚୀନତା ସମ୍ବନ୍ଧରେ ଘୋର ସନ୍ଦେହର ଅବକାଶ ରହିଅଛି । କାରଣ ଶ୍ରୀକୃଷ୍ଣ, ବଳରାମ, ସୁଭଦ୍ରା ଓ ସୁଦର୍ଶନଙ୍କ ଏକତ୍ରାବସ୍ଥିତି ଓ ପୂଜାବିଧାନ ଶାସ୍ତ୍ର ପୁରାଣମାନଙ୍କରେ ବିଶେଷ ଦୃଷ୍ଟ ହୁଏ ନାହିଁ । ତାହାଛଡ଼ା କୃଷ୍ଣ, ବଳରାମ ଓ ସୁଭଦ୍ରାଙ୍କ ସଙ୍ଗେ ସୁଦର୍ଶନଙ୍କୁ ସ୍ୱତନ୍ତ୍ର ଦେବତାର ଆସନ ପ୍ରଦାନ କରିବାରେ କୌଣସି ଯୁକ୍ତି ମଧ୍ୟ ନାହିଁ । ମହାଭାରତରେ ସୁଭଦ୍ରା ମାନବୀରୂପରେ ବର୍ଣ୍ଣିତ । ତାହାଙ୍କ ଦେବୀତ୍ୱ ପ୍ରାପ୍ତିର ସୂଚନା ଶାସ୍ତ୍ର ପୁରାଣାଦିରୁ ମିଳେ ନାହିଁ । ଯେତେଦୂର ମନେହୁଏ ଜଗନ୍ନାଥଙ୍କୁ କୃଷ୍ଣରେ

ପରିଣତ କରିବାର ପ୍ରୟାସରୁ ଏହି ଉପାଖ୍ୟାନର ସୃଷ୍ଟି । ଅନ୍ୟ ଏକ ମତ ହେଉଛି ପୁରୁଷୋତ୍ତମର ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ହେଉଛନ୍ତି ପୁରାଣର ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର । ଜଗନ୍ନାଥ ହେଉଛନ୍ତି ବିଷ୍ଣୁ, ସୁଭଦ୍ରା ବ୍ରହ୍ମା ଏବଂ ବଳଭଦ୍ର ଶିବ ବା ମହେଶ୍ୱର । ଏହି ମତବାଦ ପଛରେ କୌଣସି ବଳିଷ୍ଠ ଐତିହାସିକ ବା ଦାର୍ଶନିକ ଯୁକ୍ତି ନାହିଁ । ତାହାଛଡ଼ା ବ୍ରହ୍ମାଙ୍କର ସ୍ତ୍ରୀତ୍ୱ ପ୍ରାପ୍ତି ସମ୍ବନ୍ଧରେ ଯେଉଁ ଉପାଖ୍ୟାନର କଳ୍ପନା କରାଯାଇଛି ତାହା ଆଦୌ ବିଶ୍ୱାସ-ଯୋଗ୍ୟ ନୁହେଁ । କେତେକ ଐତିହାସିକଙ୍କ ମତରେ ପୁରୁଷୋତ୍ତମର ତ୍ରିମୂର୍ତ୍ତି ବୌଦ୍ଧ ତ୍ରିରତ୍ନ ଅର୍ଥାତ୍ ବୁଦ୍ଧ ଧର୍ମ ଓ ସଂଘର ପ୍ରତୀକ । ଏହି ମତବାଦର ପୋଷକମାନେ ପାଇଁ ଏଥିରେ ସୁଦର୍ଶନଙ୍କୁ ବାଦ ଦିଆଯାଇଛି । ଦିବାକର ଦାସଙ୍କ 'ଜଗନ୍ନାଥଚରିତାମୃତ'ରେ ପ୍ରଦତ୍ତ ଚତୁର୍ଦ୍ଧାମୂର୍ତ୍ତି ତତ୍ତ୍ୱ ଉପରୋକ୍ତ ମତମାନଙ୍କଠାରୁ ଭିନ୍ନ । ଏହା ମୁଖ୍ୟତଃ ଦାର୍ଶନିକ ଭିତ୍ତି ଉପରେ ପ୍ରତିଷ୍ଠିତ । ଏହି ମତବାଦ ଅନୁଯାୟୀ ଚତୁର୍ଦ୍ଧାମୂର୍ତ୍ତି ଭିନ୍ନ ହୋଇ ମଧ୍ୟ ଏକ ଏବଂ ଅଭିନ୍ନ । ଯଥାର୍ଥରେ ଚତୁର୍ଦ୍ଧାମୂର୍ତ୍ତି ହେଉଛନ୍ତି ଏକ ପରମତତ୍ତ୍ୱର ଚତୁର୍ବିଧ ପ୍ରକାଶ ମାତ୍ର । ଆଗରୁ କୁହାଯାଇଛି ଯେ 'ଜଗନ୍ନାଥ ହେଉଛନ୍ତି ସାକ୍ଷାତ ପରଂବ୍ରହ୍ମ । ସେ ନିର୍ଗୁଣ, ନିରଞ୍ଜନ, ନିରାକାର ଓ ନିର୍ବିଶେଷ । ସେ ଏକ ଏବଂ ଅଦ୍ୱିତୀୟ । ତାଙ୍କ ବିନା ଏ ଜଗତରେ ଆଉ କିଛି ନାହିଁ । "ନେହ ନାନାସ୍ତି କିଞ୍ଚନ ।" ଏ ସଂସାରରେ ଯାହା କିଛି ଅଛି ସେ ସବୁ ସେଇ ଜଗନ୍ନାଥ ।

"ଜଗନ୍ନାଥ ଚାରି ଅକ୍ଷର । ଅଟଇ ଅଖିଳ ସଂସାର ॥
ଜକାର ଅଟେ ଜଗନ୍ନାଥ । ଗକାର ବଳଦେବ ଖ୍ୟାତ ॥
ନାକାର ସୁଭଦ୍ରା ମୂରତି । ସୁଦର୍ଶନ ଥ ଅଟନ୍ତି ॥"

[ଜ. ଚ.—୨୨୨]

ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ ଅତିବଡ଼ୀ ସଂପ୍ରଦାୟର ଧର୍ମମତ ଅନୁଯାୟୀ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଏବଂ ସୁଦର୍ଶନ ହେଉଛନ୍ତି ଏକ ଅଦ୍ୱୟ ତତ୍ତ୍ୱର ଚତୁର୍ବିଧ ପ୍ରକାଶ ମାତ୍ର । ଚାରିମୂର୍ତ୍ତି ମଧ୍ୟରୁ ଜକାର ବା ଜଗନ୍ନାଥ ହେଉଛନ୍ତି ସାକ୍ଷାତ ପରଂବ୍ରହ୍ମ । ସେ ଜ୍ୟୋତି ସ୍ୱରୂପ, ନିର୍ଗୁଣ, ନିରାକାର ଓ ନିର୍ବିଶେଷ । ବିଶ୍ୱର ମଙ୍ଗଳ ପାଇଁ ଯେତେବେଳେ ତାଙ୍କଠାରେ ସୃଷ୍ଟିର ଆକାଂକ୍ଷା ଜାଗ୍ରତ

ହୁଏ ସେତେବେଳେ ପରମେଶ୍ୱରଙ୍କର ସେହି ଇଚ୍ଛାକାରିଣୀ ଶକ୍ତି ଯୋଗମାୟା ବା ସୁଭଦ୍ରା ନାମରେ କଥିତ ହୁଅନ୍ତି । ସେ ଜଗତର ମଙ୍ଗଳକାରିଣୀ । ତେଣୁ ତାଙ୍କର ନାମ ସୁଭଦ୍ରା । ଏହି ଅବସ୍ଥାରେ ପରଂବ୍ରହ୍ମ ହିରଣ୍ୟଗର୍ଭ, ସୂତ୍ରାତ୍ମା ବା ବଳଭଦ୍ର ନାମରେ ପରିଚିତ ହୁଅନ୍ତି ।

"ଶ୍ରୀଜଗନ୍ନାଥ ନାମ ସାର । ଦ୍ୱିତୀୟ ବର୍ଣ୍ଣ ଯେ ଗ କାର ॥
ଗୁରୁଗଉର ଯେ ଗରିଷ୍ଠ । ଗଜ ଉଦ୍ଧାରଣେ ବଳିଷ୍ଠ ॥
ଗୋପ ଗୋପୀଗଣାଧୀଶ । ଗୋବିନ୍ଦ ଜ୍ଞାନଗମ୍ୟ ଈଶ ॥"

[ଜ. ଚ.—୨୨୨]

ବ୍ୟକ୍ତ ହେଲେ ହେଁ ସେ ସୂକ୍ଷ୍ମ, ତେଣୁ ଗୁପ୍ତ ଓ ଗହନ ।

"ସେ ଦେବ ଗୁହ୍ୟ ଗୁରୁତର । ଗମ୍ଭୀର ଯେମନ୍ତ ସାଗର ॥
ଅତହିଁ ଗହନ ଯେ ସେହି । ପୁଣି ଗୁପତ ସେ ଅଟଇ ॥"

ଚେତନାଚେତନାତ୍ମକ ଅଖିଳ ବିଶ୍ୱବ୍ରହ୍ମାଣ୍ଡ ହେଉଛି ସୁଦର୍ଶନ ।

"ଅକାର ଦେବ ସୁଦର୍ଶନ । ଥକାର ସ୍ଥିର ବୁଦ୍ଧିମାନ ॥
ସ୍ଥାବର ଜଙ୍ଗମଟି ସେହି । ସ୍ଥିତି ଦ୍ରବ୍ୟ ଯେତେ ଅଛଇ ॥"

[ଜ. ଚ.—୨୨୨]

ଏଠାରେ ଲକ୍ଷ୍ୟ କରିବାର କଥା ଯେ 'ସୁଦର୍ଶନ' ଶବ୍ଦର ଅର୍ଥ—ଯାହା ଆଖିକୁ ଦେଖିବାକୁ ସୁନ୍ଦର । ଏହା ପୁଣି ଚକ୍ର ଅର୍ଥାତ ସତତ ପରିବର୍ତ୍ତନଶୀଳ । ଏହା ସଂସାରଚକ୍ରର ପ୍ରତୀକ । ଏଣୁ ଏହି ବ୍ୟାଖ୍ୟା ଅନୁଯାୟୀ ଚତୁର୍ଦ୍ଧାମୂର୍ତ୍ତି ଏକ ଏବଂ ଅଦ୍ୱିତୀୟ । ଏକ ଅଦ୍ୱୟ ପରମତତ୍ତ୍ୱର ଚତୁର୍ବିଧ ପ୍ରକାଶ ମାତ୍ର । ଏହାକୁ ବ୍ରହ୍ମଙ୍କର ଚତୁଷ୍ପାଦ ବୋଲି କୁହାଯାଇପାରେ । ଅଚ୍ୟୁତାନନ୍ଦଙ୍କ "ଏହି ମନ ସିନା ଚତୁର୍ଦ୍ଧାମୂରତି" ଭଜନ ଜଗନ୍ନାଥ ଦାସଙ୍କର ଏହି ମତବାଦର ପୋଷକତା କରୁଅଛି । ଜଗନ୍ନାଥଙ୍କୁ ଶୁଦ୍ଧ ବ୍ରହ୍ମ ଓଁକାରରୂପେ ଗ୍ରହଣ କଲେ, ଅନ୍ୟ ମୂର୍ତ୍ତିମାନଙ୍କୁ ବିଶ୍ୱ ତୈଜସ ଓ ପ୍ରାଜ୍ଞ ଅଥବା ଅ, ଉ, ମ ରୂପେ ଗ୍ରହଣ କରାଯାଇପାରେ । ଐତିହାସିକ ଓ ପୌରାଣିକ ଦୃଷ୍ଟିରୁ ଜଗନ୍ନାଥ ଯାହା ହୁଅନ୍ତୁ ନା କାହିଁକି, ଦାର୍ଶନିକ ଦୃଷ୍ଟିରୁ ସେ ହେଉଛନ୍ତି ସାକ୍ଷାତ ପରଂବ୍ରହ୍ମ । ଜଗନ୍ନାଥ ଦାସଙ୍କର ପରମତତ୍ତ୍ୱର ଏ ବ୍ୟାଖ୍ୟା ବୈଦାନ୍ତିକ ଓ

ଔପନିଷଦ ବ୍ୟାଖ୍ୟାର ଅନୁରୂପ । ସବୁ ତତ୍ତ୍ୱକୁ ସେ ଜଗନ୍ନାଥ ତତ୍ତ୍ୱରେ ଲୀନକରାଇ ଉତ୍କଳର ଧର୍ମଜଗତରେ ଯେଉଁ ଐକ୍ୟ ଏବଂ ଉନ୍ମାଦନା ସୃଷ୍ଟି କରିଥିଲେ ତାହା ଅତୁଳନୀୟ ।

**ଅବତାରବାଦ** –

' ପରଂବ୍ରହ୍ମ ସ୍ୱରୂପତଃ ନିର୍ଗୁଣ, ନିର୍ବିକାର ଓ ନିରୁପାଧିକ ହେଲେହେଁ, ଲୋକମାନଙ୍କର ହିତ ଓ ବିଶ୍ୱସଂସାରର ମଙ୍ଗଳ ସାଧନ ଉଦ୍ଦେଶ୍ୟରେ ସେ ପ୍ରାଣୀ ତଥା ମାନବ ଶରୀର ଧାରଣପୂର୍ବକ ଧରାଧାମରେ ଅବତୀର୍ଣ୍ଣ ହେବା ବିଷୟ ଶାସ୍ତ୍ର ପୁରାଣରେ ବର୍ଣ୍ଣିତ ଅଛି । ଗୀତାରେ ଭଗବାନ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହୁଅଛନ୍ତି ଯେ, "ଯେତେବେଳେ ଧର୍ମରାଜ୍ୟରେ ଗ୍ଲାନି ଉପସ୍ଥିତ ହୁଏ ସେତେବେଳେ ଧର୍ମର ସଂସ୍ଥାପନ, ସାଧୁପୁରୁଷମାନଙ୍କର ସୁରକ୍ଷା ଓ ଦୁଷ୍ଟର ଦମନ ପାଇଁ ଭଗବାନ ଅବତାର ଗ୍ରହଣ କରନ୍ତି ।" ଶ୍ରୀମଦ୍‌ଭାଗବତରେ ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ରାମ ପରଶୁରାମାଦି ବାଇଶ ଗୋଟି ଲୀଳା ଅବତାର ବିଷୟ ବର୍ଣ୍ଣିତ ହୋଇଅଛି । ଶ୍ରୀମତ୍ ଶଙ୍କରାଚାର୍ଯ୍ୟ ତାହାଙ୍କ ବ୍ରହ୍ମସୂତ୍ର ଭାଷ୍ୟରେ ଲେଖିଅଛନ୍ତି—"ପରମେଶ୍ୱରସ୍ୟାପି ଇଚ୍ଛାବଶାତ୍ ମାୟାମୟଂ ରୂପଂ ସାଧକାନୁଗ୍ରହାର୍ଥମ୍ ।"

[ବ୍ର. ସୂ.—୧-୨୦ ଶାଙ୍କରଭାଷ୍ୟ]

"ସାଧକ ପ୍ରତି ଅନୁଗ୍ରହ ପ୍ରଦର୍ଶନ ନିମିତ୍ତ ପରମେଶ୍ୱର ମଧ୍ୟ ଇଚ୍ଛାକରି ମାୟାମୟରୂପ ପରିଗ୍ରହ କରନ୍ତି ।"

ଅବତାର ଗ୍ରହଣ ପରେ ମଧ୍ୟ ମୂଳତତ୍ତ୍ୱ ଅବିକୃତ ରହେ । ତେଣୁ ସେ ଅବତାରୀ ଏବଂ ଅନ୍ୟମାନେ ଅବତାର । ଚୁମ୍ବକରେ ଏହାହିଁ ହେଉଛି ହିନ୍ଦୁ ଶାସ୍ତ୍ରର ଅବତାରତତ୍ତ୍ୱ । ଜଗନ୍ନାଥ ଦାସ ଓ ଅନ୍ୟାନ୍ୟ ଉତ୍କଳୀୟ ବୈଷ୍ଣବମାନଙ୍କ ମତରେ ଜଗନ୍ନାଥ ହେଉଛନ୍ତି ସ୍ୱୟଂ ପରଂବ୍ରହ୍ମ । ତେଣୁ ସେ ଅବତାରୀ ଏବଂ ରାମକୃଷ୍ଣାଦି ତାହାଙ୍କ ଅବତାର ବା ଅଂଶ ବିଶେଷ । ଏକ ମୂଳ ଅଗ୍ନିକୁଣ୍ଡରୁ ଦୀପ ଲଗି ତହିଁରୁ ସହସ୍ର ଦୀପ ପ୍ରଜ୍ୱଳିତ ହେବା ପରି ପରଂବ୍ରହ୍ମରୂପୀ ଜଗନ୍ନାଥଙ୍କଠାରୁ ଅନ୍ୟ ସମସ୍ତ ଅବତାର ସମୁଦ୍ଭୂତ ହୋଇଅଛନ୍ତି ।

"ଏ ଜଗନ୍ନାଥ ରୂପ ବ୍ରହ୍ମ । ଏ ରୂପୁଁ ସର୍ବ ହୋନ୍ତି ଜନ୍ମ ॥
ଅବ୍ୟକ୍ତ ବ୍ରହ୍ମ ନିରାକାର । ଶ୍ରୀଜଗନ୍ନାଥ ନାମ ଯାର ॥
ଅଗ୍ନି କୁଣ୍ଡରୁ ଲଗି ଦୀପ । ତହିଁରୁ ଯେ ଅନେକ ଦୀପ ॥
ସେପରି ଏହା ତହୁଁ ସର୍ବ । ଜାତ ହୋଇଛୁ ଏହା ଧ୍ରୁବ ॥"

[ଜ. ଚ.—୨୩୩]

ଜଗନ୍ନାଥ ଦାସଙ୍କର ଏହି ମତବାଦ ଗୌଡ଼ୀୟ ବୈଷ୍ଣବ ଦର୍ଶନୋକ୍ତ ମତବାଦର ସମ୍ପୂର୍ଣ୍ଣ ପରିପନ୍ଥୀ । ଗୌଡ଼ୀୟ ବୈଷ୍ଣବ ଦର୍ଶନକାରମାନଙ୍କ ମତାନୁଯାୟୀ ଶ୍ରୀକୃଷ୍ଣ ହେଉଛନ୍ତି ସ୍ୱୟଂ ଭଗବାନ୍, (କୃଷ୍ଣସ୍ତୁ ଭଗବାନ ସ୍ୱୟଂ) ଏବଂ ଅନ୍ୟ ସମସ୍ତେ ତାହାଙ୍କର କଳା ବା ଅଂଶ । ବେଦାନ୍ତ ଦର୍ଶନର 'ତତ୍ତ୍ୱମସି' ମହାବାକ୍ୟ ପରି ଏହା ହେଉଛି ଗୌଡ଼ୀୟ ବୈଷ୍ଣବ ଦର୍ଶନର ମହାବାକ୍ୟ ଏବଂ ଗୌଡ଼ୀୟ ବୈଷ୍ଣବ ଧର୍ମ ଓ ଦର୍ଶନ ଏହାରି ଉପରେ ଅବଲମ୍ବିତ । * "ଜଗନ୍ନାଥଚରିତାମୃତରେ କୃଷ୍ଣଙ୍କର ମହତ୍ତ୍ୱ ସ୍ୱୀକୃତ ହୋଇଥିଲେ ମଧ୍ୟ ତାହାଙ୍କୁ ପରଂବ୍ରହ୍ମ ରୂପୀ ଜଗନ୍ନାଥଙ୍କର ଅବତାର ରୂପେ ଗ୍ରହଣ କରାଯାଇଛୁ ।

"ଶ୍ରୀଜଗନ୍ନାଥ ଷୋଳକଳା । ତହୁଁ କଳାଏ ନନ୍ଦବଳା ॥
କଳାକ ଷୋଳକଳା ହୋଇ । କୃଷ୍ଣ ଜନ୍ମିଲେ ଗୋପେ ଯାଇ ॥"

[ଜ. ଚ.]

ଜଗନ୍ନାଥଚରିତାମୃତର ଏ ଉକ୍ତି ଶାସ୍ତ୍ର ତଥା ଯୁକ୍ତି ଦୃଷ୍ଟିରୁ ସମୀଚୀନ ମନେହୁଏ । ଯେଉଁ ଭାଗବତକୁ ପ୍ରମାଣରୂପେ ଗ୍ରହଣ କରି ଶ୍ରୀମଦ୍ ଜୀବଗୋସ୍ୱାମୀ ଶ୍ରୀକୃଷ୍ଣଙ୍କୁ ସ୍ୱୟଂ ଭଗବାନରୂପେ ଗ୍ରହଣ କରିଅଛନ୍ତି, ସେହି ଭାଗବତର ଏକାଧିକ ସ୍ଥଳରେ ତାହାଙ୍କୁ ହରି ବା ନାରାୟଣଙ୍କର ଏକ ଅବତାରରୂପରେ ବର୍ଣ୍ଣନା କରାଯାଇଛୁ । ଏ ପ୍ରସଙ୍ଗରେ ଭାଗବତର ୪-୧-୫୮ (ହରେରଂଶୌ ଇହାଗତୌ), ୧୦-୧-୧ (ଅଂଶେନା-ବତୀର୍ଣ୍ଣସ୍ୟବିଷ୍ଣୋଃ), ୧୦-୮-୧୯ (ନାରାୟଣସମଗୁଣୈଃ), ୨୦-୪-୨୦ (ଅବତୀର୍ଣ୍ଣୌବିହାଂଶେନ) ଇତ୍ୟାଦି

* Vaishnav faith and movement in Bengal—S. K. De.—Page-244.

ଶ୍ଳୋକ ଦ୍ରଷ୍ଟବ୍ୟ । ମହାଭାରତ ଏବଂ ବିଷ୍ଣୁ ପୁରାଣରେ ଉଲ୍ଲେଖ ଅଛି ଯେ କୃଷ୍ଣ ଏବଂ ବଳରାମ ନାରାୟଣଙ୍କର କୃଷ୍ଣ ଓ ଶୁକ୍ଳ କେଶରୁ ସମ୍ଭୂତ ହୋଇ ଧରାଧାମରେ ଅବତୀର୍ଣ୍ଣ ହୋଇଥିଲେ ।

ଆଚାର୍ଯ୍ୟ ଶଙ୍କର ତାଙ୍କର ସୁପ୍ରସିଦ୍ଧ ଗୀତାଭାଷ୍ୟର ମୁଖବନ୍ଧରେ କୃଷ୍ଣଙ୍କୁ ଭଗବାନଙ୍କର ଅଂଶାବତାରରୂପେ ଗ୍ରହଣ କରିଅଛନ୍ତି (ଅଂଶେନ କିଲ କୃଷ୍ଣ ସମ୍ବଭୂବ) । ଯୁକ୍ତି ଦୃଷ୍ଟିରୁ ବିଚାର କଲେ ମଧ୍ୟ ଜଗନ୍ନାଥଙ୍କ ଅବତାରୀତ୍ୱ ସିଦ୍ଧ ହୁଏ । ଯାହା ଶରୀରଧାରୀ ଓ ବିଗ୍ରହବନ୍ତ ତାହା ସସୀମ, ସାନ୍ତ, ଉପାଧିଯୁକ୍ତ ଓ ଅଚିରସ୍ଥାୟୀ । ରାମ କୃଷ୍ଣାଦି ଲୀଳାବତାରମାନଙ୍କର ଆବିର୍ଭାବ ଓ ତିରୋଭାବ ଶାସ୍ତ୍ରାଦିରେ ବର୍ଣ୍ଣିତ ହୋଇଅଛି । କିନ୍ତୁ ଜଗନ୍ନାଥ ନିରାକାର, ନିର୍ବିକଳ୍ପ, ନିତ୍ୟ ଓ ନିରୁପାଧିକ । ତେଣୁ ସେ କେବଳ ଅବତାରୀ ପଦକୁ ଭାଜନ ଅଟନ୍ତି । ଏକ ଅଗ୍ନିରୁ ଶତସହସ୍ର ସ୍ଫୁଲିଙ୍ଗ ବିଚ୍ଛୁରିତ ହେବା ପରି ତାହାଙ୍କଠାରୁ ଅଗଣିତ ଅବତାର ଜନ୍ମ ଗ୍ରହଣ କରିଥାନ୍ତି ।

**ଧାମ ପ୍ରସଙ୍ଗ—**

ଈଶ୍ବର ସର୍ବବ୍ୟାପୀ । କୌଣସି ନିର୍ଦ୍ଦିଷ୍ଟ ଦେଶ ବା କାଳରେ ସେ ଆବଦ୍ଧ ନୁହନ୍ତି । ବିଶ୍ବର ଅଣୁପରମାଣୁରେ ଯାହାଙ୍କର ବିହାର ତାଙ୍କର ପୁଣି ସ୍ଥାନ ଅସ୍ଥାନ କଣ ଥାଇପାରେ ? ଏ କଥା ସତ୍ୟ ହେଲେହେଁ ଭଗବତ୍ ଲୀଳାର ମାହାତ୍ମ୍ୟ ପ୍ରଖ୍ୟାପନ ଓ ଅଧିକାର ଭେଦରେ ଭକ୍ତମାନଙ୍କ ମଧ୍ୟରେ ତାରତମ୍ୟ ଦର୍ଶାଇବା ଉଦ୍ଦେଶ୍ୟରେ ଶାସ୍ତ୍ର-ପୁରାଣମାନଙ୍କରେ ଭଗବାନଙ୍କର ଧାମର କଳ୍ପନା କରାଯାଇଛି । ପୃଥିବୀର ସବୁ ଧର୍ମରେ ଏହା ଦୃଷ୍ଟ ହୁଏ । ଧାମ ଦ୍ୱିବିଧ । ନିତ୍ୟ ଏବଂ ଅନିତ୍ୟ । ଜଗନ୍ନାଥ ଦାସ ତଥା ଅନ୍ୟାନ୍ୟ ଉତ୍କଳୀୟ ବୈଷ୍ଣବମାନଙ୍କ ମତରେ ପୁରୁଷୋତ୍ତମକ୍ଷେତ୍ର ଭଗବାନଙ୍କର ନିତ୍ୟ ବିହାରସ୍ଥଳୀ । ଏହା ସକଳ ଧାମ ମଧ୍ୟରେ ଶ୍ରେଷ୍ଠ ଏବଂ କଳ୍ପ କଳ୍ପାନ୍ତରରେ ମଧ୍ୟ ଏହାର ବିନାଶ ନାହିଁ ।

"ସୁନ୍ଦର ଏ ନୀଳ ଅଚଳ । ଏହି ଅଟଇ ନିତ୍ୟ ସ୍ଥଳ ॥
ଏ ନିତ୍ୟ ସ୍ଥଳର ବିହାରୀ । ନିତ୍ୟ ଅଟନ୍ତି ସେହିପରି ॥

କୋଟିଏ କୋଟି ଯୁଗଯାଏ । କ୍ଷୀଣ ନୁହନ୍ତି ସେ ଲତାଏ ॥"

[ଜ. ଚ.—୨୩୬]

ଅଯୋଧ୍ୟା, ଦ୍ୱାରକା, ମଥୁରା ଓ ବୃନ୍ଦାବନ ଆଦି ତୀର୍ଥ ଜଗତରେ ବିଖ୍ୟାତ ହେଲେ ହେଁ ସେ ସବୁ ଧାମର ଭକ୍ତ ବହିରଙ୍ଗା । କେବଳ ପୁରୁଷୋତ୍ତମ ଧାମରେ ଅନ୍ତରଙ୍ଗା ଭକ୍ତର ସାଧନା ସମ୍ଭବପର । ଏଠାରେ ଲକ୍ଷ୍ୟ କରିବାର କଥା ଯେ ଯେଉଁ ଭକ୍ତ ସଗୁଣ ତାହା କଦାପି ଅନ୍ତରଙ୍ଗା ପଦ-ବାଚ୍ୟ ହୋଇନପାରେ । ଉତ୍କଳୀୟ ବୈଷ୍ଣବମାନଙ୍କର ଏ ମତ ଗୌଡ଼ୀୟ ମତଠାରୁ ଭିନ୍ନ । ଗୌଡ଼ୀୟ ବୈଷ୍ଣବମାନଙ୍କ ମତରେ ବ୍ରଜ ବା ବୃନ୍ଦାବନ ଧାମହିଁ ଭଗବାନ ଶ୍ରୀକୃଷ୍ଣଙ୍କର ନିତ୍ୟଲୀଳାସ୍ଥଳୀ । ଏହା ଧାମ ମଧ୍ୟରେ ଶ୍ରେଷ୍ଠ ଏବଂ ସ୍ୱରୂପରେ କୃଷ୍ଣଙ୍କ ତନୁ ସଦୃଶ ।

**ଜଗନ୍ନାଥ ଓ ବୁଦ୍ଧ—**

ଜଗନ୍ନାଥ ଦାସ ତାହାଙ୍କ 'ଦାରୁବ୍ରହ୍ମ-ଗୀତା'ରେ ଜଗନ୍ନାଥଙ୍କୁ ବୌଦ୍ଧାବତାର ବୋଲି ବର୍ଣ୍ଣନା କରିଅଛନ୍ତି । ଜଗନ୍ନାଥ ଦାସଙ୍କ ବ୍ୟତୀତ ଅଚ୍ୟୁତାନନ୍ଦ, ଯଶୋବନ୍ତ, ଈଶ୍ୱର ଦାସ ଓ ଚୈତନ୍ୟ ଦାସ ଆଦି ମହାତ୍ମାଗଣ ସ୍ଥଳ ବିଶେଷରେ ଜଗନ୍ନାଥଙ୍କୁ ବୌଦ୍ଧାବତାରରୂପେ ଅଭିହିତ କରିଅଛନ୍ତି । ଏହାର ପ୍ରକୃତ ତାତ୍ପର୍ଯ୍ୟ ହୃଦୟଙ୍ଗମ ନ କରି କେତେକ ଲେଖକ ଜଗନ୍ନାଥ ଦାସ ଓ ଅନ୍ୟାନ୍ୟ ଉତ୍କଳୀୟ ବୈଷ୍ଣବମାନଙ୍କୁ ବୌଦ୍ଧ-ବୈଷ୍ଣବ ବୋଲି କହିଥାନ୍ତି । କିନ୍ତୁ ଏହା ଠିକ୍ ନୁହେଁ । ଉତ୍କଳରେ ବୌଦ୍ଧ ଧର୍ମର ଏକ ଗୌରବମୟ ପରଂପରା ରହିଅଛି । ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ ପର୍ଯ୍ୟନ୍ତ ଉତ୍କଳୀୟ ସମାଜରେ ବୌଦ୍ଧମାନଙ୍କର ପ୍ରତିଷ୍ଠା ଓ ପ୍ରତିପତ୍ତି ଥିଲା । ଅଚ୍ୟୁତାନନ୍ଦଙ୍କ 'ଶୂନ୍ୟସଂହିତା' ଈଶ୍ୱର ଦାସଙ୍କ 'ଚୈତନ୍ୟ ଭାଗବତ' ଓ ଅନ୍ୟାନ୍ୟ ପୁସ୍ତକ ପାଠରୁ ଏହା ଜଣାଯାଏ । ଏବେ ମଧ୍ୟ ଉତ୍କଳର ବହୁ ଅଞ୍ଚଳରେ ବୌଦ୍ଧ ବସତିମାନ ରହିଅଛି । ଦୀର୍ଘକାଳ ପରସ୍ପରର ସନ୍ନିହିତ ହୋଇ ରହିବା ଫଳରେ ହିନ୍ଦୁଧର୍ମ ଓ ବୌଦ୍ଧଧର୍ମ ମଧ୍ୟରେ ଭାବର ଆଦାନ ପ୍ରଦାନ ସ୍ୱାଭାବିକ । ହିନ୍ଦୁଧର୍ମ ବୌଦ୍ଧଧର୍ମକୁ ଗଭୀର ଭାବରେ ପ୍ରଭାବିତ କରିଥିବା ବିଷୟ 'ଘଟଜାତକ' ଏବଂ

ଅଶ୍ୱଘୋଷଙ୍କ 'ବୁଦ୍ଧଚରିତ' ଆଦି ଗ୍ରନ୍ଥରୁ ଜଣାପଡ଼େ । ଅନ୍ୟ ପକ୍ଷରେ ହିନ୍ଦୁଧର୍ମ ମଧ୍ୟ ଆପଣାକୁ ବୌଦ୍ଧଧର୍ମର ପ୍ରଭାବରୁ ମୁକ୍ତ ରଖିପାରିନାହିଁ । ଶ୍ରୀମଦ୍ ଭାଗବତରେ ବୁଦ୍ଧଙ୍କୁ ବିଷ୍ଣୁଙ୍କର ଏକ ଅବତାରରୂପରେ ଗ୍ରହଣ କରି ନିଆଯାଇଅଛି । ରାଗାନୁଗା ମାର୍ଗର ସର୍ବ ପ୍ରଥମ ପ୍ରଚାରକ ପରମ ବୈଷ୍ଣବ ଉତ୍କଳୀୟ କବି ଜୟଦେବ, ତାହାଙ୍କ ପ୍ରସିଦ୍ଧ 'ଦଶାବତାର ସ୍ତୋତ୍ର'ରେ ବୁଦ୍ଧଙ୍କୁ ଏକ ଉଚ୍ଚସ୍ଥାନ ପ୍ରଦାନ କରିଅଛନ୍ତି । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ଜୟଦେବଙ୍କ ସମୟ ଅର୍ଥାତ ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀ ବେଳକୁ ଉତ୍କଳରେ ବୈଷ୍ଣବଧର୍ମ ଓ ବୌଦ୍ଧଧର୍ମ ମଧ୍ୟରେ ଏକ ସଂଶ୍ଳେଷଣ ପ୍ରକ୍ରିୟା ପ୍ରତିଷ୍ଠିତ ହୋଇସାରିଥିଲା । ବୁଦ୍ଧ, ବିଷ୍ଣୁଙ୍କର ଅବତାରରୂପେ ପୂଜିତ ଓ ସମ୍ମାନିତ ହେଉଥିଲେ । ଜଗନ୍ନାଥ ଦାସ ଉତ୍କଳର ଏହି ମହାନ ପରମ୍ପରା ରକ୍ଷାକରି ତାଙ୍କ ଭାଗବତରେ ବୁଦ୍ଧ ଚରିତର ମହତ୍ତ୍ୱ ପ୍ରତିପାଦନରେ ବ୍ରତୀ ହୋଇ-ଅଛନ୍ତି । ଏକାଦଶ ସ୍କନ୍ଧରେ ଅବତାର ବର୍ଣ୍ଣନା ପ୍ରସଙ୍ଗରେ ସେ ଲେଖି-ଅଛନ୍ତି—

"ପ୍ରବୁଦ୍ଧ ବୁଦ୍ଧ ଅବତାରେ । ଜ୍ଞାନ ବିସ୍ତାରେ ଏ ସଂସାରେ ॥"

ଏହି ପ୍ରକ୍ରିୟାର ଅନ୍ୟ ଏକ ଦିଗ ହେଉଛି ଜଗନ୍ନାଥଙ୍କୁ ବୁଦ୍ଧରୂପେ ଚିତ୍ରଣ କରିବାର ପ୍ରୟାସ । ଇନ୍ଦ୍ରଭୂତିଙ୍କର 'ଜ୍ଞାନସିଦ୍ଧି' ଗ୍ରନ୍ଥରେ ଲେଖାଅଛି—

"ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜ୍ଞାନ ବରାର୍ଚ୍ଚିତଂ
ସର୍ବବୁଦ୍ଧମୟଂ ସିଦ୍ଧି ବ୍ୟାପିନୋ ଗଗନୋପମମ୍ ।"

ଏଥିରୁ ସୂଚିତ ହୁଏ ଯେ, ଏହି ସମୟକୁ ଜଗନ୍ନାଥ ଉତ୍କଳର ଏକମାତ୍ର ଜାତୀୟ ପରଦେବତାରୂପେ ପ୍ରତିଷ୍ଠିତ ହୋଇସାରିଥିଲେ ଏବଂ ତାଙ୍କର ଖ୍ୟାତି ସର୍ବତ୍ର ପ୍ରଚାରିତ ହୋଇଥିଲା । ଏଣୁ ସନ୍ଧିଜସ୍ଥା ବୌଦ୍ଧମାନେ ସେମାନଙ୍କ ଧର୍ମକୁ ଜନପ୍ରିୟ କରାଇବା ଉଦ୍ଦେଶ୍ୟରେ ଜଗନ୍ନାଥଙ୍କୁ ବୌଦ୍ଧା-ବତାରରୂପେ ବର୍ଣ୍ଣନା କରିଅଛନ୍ତି । ଏହାଦ୍ୱାରା ଜଗନ୍ନାଥ ବୁଦ୍ଧ ହୋଇ-ନାହାନ୍ତି, ବରଂ ବୁଦ୍ଧ ଜଗନ୍ନାଥଙ୍କର ଅଙ୍ଗୀଭୂତ ହୋଇଯାଇଛନ୍ତି । ପୁନଶ୍ଚ 'ବୁଦ୍ଧ' ଶବ୍ଦର ଅର୍ଥ ହେଉଛି ଜ୍ଞାନୀ । ଜଗନ୍ନାଥ ଦାସ ତାହାଙ୍କ

ଭାଗବତରେ ବୁଦ୍ଧଚରିତର ଏହି ଦିଗଟି ପ୍ରତି ବିଶେଷ ଦୃଷ୍ଟି ଆକର୍ଷଣ କରିଥିବା ବିଷୟ ଉପରେ ଉଲ୍ଲେଖ କରାଯାଇଛି । ଜଗନ୍ନାଥ ପରଂବ୍ରହ୍ମ, ଚୈତନ୍ୟ ଜ୍ଞାନମୟ ବା ବୁଦ୍ଧ । ଏହି ସବୁ କାରଣରୁ ଜଗନ୍ନାଥଙ୍କୁ 'ବଉଧ ରୂପ' ବା 'ବୌଦ୍ଧାବତାର' କହିବାଦ୍ୱାରା ଜଗନ୍ନାଥ ଦାସ ବା ଅନ୍ୟ କେହି ଉତ୍କଳୀୟ ବୈଷ୍ଣବ 'ପ୍ରଚ୍ଛନ୍ନ ବୌଦ୍ଧ' ହୋଇଗଲେ ଏପରି କହିବାରେ କୌଣସି ଯୁକ୍ତି ନାହିଁ ।

**ଜଗନ୍ନାଥ ଓ ରାଧାକୃଷ୍ଣ :**

ଜଗନ୍ନାଥ ଦାସ ତଥା ଅନ୍ୟାନ୍ୟ ଉତ୍କଳୀୟ ବୈଷ୍ଣବଗଣଙ୍କ ମତରେ ଜଗନ୍ନାଥ ହେଉଛନ୍ତି ଅବତାରୀ ଏବଂ ରାମ-ସୀତା, ଲକ୍ଷ୍ମୀ-ନୃସିଂହ, ଶିବ-ପାର୍ବତୀ ଆଦି ସମସ୍ତେ ତାହାଙ୍କ ଅବତାର । ଜଗନ୍ନାଥ ଉତ୍କଳୀୟ ବୈଷ୍ଣବ ଧର୍ମର ପରଦେବତା ବା ପରମତତ୍ତ୍ୱ । ସେ ନିର୍ବିକଳ୍ପ ସ୍ୱରୂପରେ ଦାରୁବ୍ରହ୍ମ ରୂପରେ ବିହାର କରୁଅଛନ୍ତି । ଅନ୍ୟ ଅବତାରଗଣ ତାହାଙ୍କ ଆଜ୍ଞାରେ ଆତଯାତ ହେଉଅଛନ୍ତି ।

"ଯହିଁ ବିଜୟ ଜଗନ୍ନାଥ । ଯେହୁ ଅଟନ୍ତି ପରତତ୍ତ୍ୱ ॥
ନିର୍ବିକଳ୍ପକ ନିରାକାର । ପ୍ରତିମା ରୂପରେ ବିହାର ॥
ଜଗନ୍ନାଥ ଆଜ୍ଞାରେ ସର୍ବେ । ବିହରୁଛନ୍ତି ସ୍ୱ ସ୍ୱଭାବେ ॥"

[ଜ. ଚ—୨୦୩]

ବେଦାନ୍ତର 'ତତ୍ତ୍ୱମସି' ବା ଗୌଡ଼ୀୟ ବୈଷ୍ଣବଧର୍ମର 'କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ' ପରି ଏହା ହେଉଛି ଉତ୍କଳୀୟ ବୈଷ୍ଣବଧର୍ମର ମହାବାକ୍ୟ । ଏହି ମତବାଦ ଅନୁଯାୟୀ ରାଧାକୃଷ୍ଣ-ତତ୍ତ୍ୱ ଜଗନ୍ନାଥ-ତତ୍ତ୍ୱର ଅଙ୍ଗୀଭୂତ । 'ଜଗନ୍ନାଥଚରିତାମୃତ'ରେ ଜଗନ୍ନାଥ ଦାସ ଚୈତନ୍ୟ, ପ୍ରତାପରୁଦ୍ର, ବଳରାମ ଦାସ, ଗୋପାଳ ଗୋସାଇଁ, ଅଚ୍ୟୁତାନନ୍ଦ ଦାସ ଓ ସାର୍ବଭୌମଙ୍କ ନିକଟରେ ବିଭିନ୍ନ ଅବସରରେ ଜଗନ୍ନାଥଙ୍କଠାରେ କପରି ରାଧାକୃଷ୍ଣ ତତ୍ତ୍ୱର ସମୀକରଣ ହୋଇଅଛି ତାହା ବୁଝାଇଥିବା ବିଷୟ ଉଲ୍ଲେଖଅଛି । ଜଗନ୍ନାଥ ଦାସ ତାହାଙ୍କ ସ୍ୱରଚିତ 'ଗୁରୁଚଉପଦୀ' ଓ 'ଷୋଳଚଉପଦୀ' ଗ୍ରନ୍ଥରେ ଏହାର ବିଶଦ ବ୍ୟାଖ୍ୟା କରିଅଛନ୍ତି ।

ଏହି ମତବାଦ ଅନୁଯାୟୀ ରାଧାକୃଷ୍ଣ, ଅଷ୍ଟନାୟିକା, ଷୋଡ଼ଶ ସଖୀ, ଷୋଳ ସହସ୍ର ଗୋପାଙ୍ଗନା ସମସ୍ତେ ନିତ୍ୟରାସ ମଣ୍ଡଳ ନୀଳାଚଳଧାମରେ ନିତ୍ୟ ରାସଲୀଳାରେ ରତଅଛନ୍ତି ।

"ଶୁଣ ହେ ସୁଜନ ଜନେ ଶ୍ରୀକୃଷ୍ଣ ଲୀଳା ଆଖ୍ୟାନେ
ନିତ୍ୟ ସ୍ଥାନେ ନିତ୍ୟ ଖେଳ ଖେଳନ୍ତି ହରି,
କୋଟି ବ୍ରହ୍ମ ନ ଜାଣନ୍ତି ଅନନ୍ତ ଶେଷ ମୂରତି
ସେ ପ୍ରଭୁ ବିଜେ ନିତ୍ୟ ଏ ନୀଳଗିରି ॥"

[ଷୋଳ ଚଉପଦୀ]

ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ ଜଗନ୍ନାଥ ଦାସଙ୍କ ମତରେ ରାଧାକୃଷ୍ଣ ଜଗନ୍ନାଥଙ୍କଠାରୁ ଭିନ୍ନ ନୁହନ୍ତି ।

"ରାଧାଟି ସ୍ୱୟଂ ଜଗନ୍ନାଥ । ରାଧାରୁ ଝରିଛି ଜଗତ ॥
ମାୟା ବ୍ରହ୍ମ ଶ୍ରୀ ପରଂବ୍ରହ୍ମରେ । ଅଛନ୍ତି ଶ୍ରୀ ନୀଳାଚଳରେ ॥
ନୀଳାଚଳରେ ପରଂବ୍ରହ୍ମ । ରାଧାଙ୍କ ସଙ୍ଗେ କୃଷ୍ଣ ଜାଣ ॥"

[ଜ.ଚ]

ଏ କୃଷ୍ଣ ଦେବକୀ ନନ୍ଦନ ବାସୁଦେବ କୃଷ୍ଣ ନୁହନ୍ତି କିମ୍ବା ରାଧା ବୃଷଭାନୁ ନନ୍ଦିନୀ କୃଷ୍ଣ ମନମୋହିନୀ ବ୍ରଜେଶ୍ୱରୀ ରାଧିକା ନୁହନ୍ତି । ଏଠାରେ ରାଧାକୃଷ୍ଣ ପ୍ରକୃତିପୁରୁଷଙ୍କୁ ବୁଝାଉଅଛି ।

"ଏକାଙ୍ଗ ବ୍ରହ୍ମରୂପ ହୋଇ । ରାଧିକା ସଙ୍ଗେ ଭାବଗ୍ରାହୀ ॥
ଗୋଲୋକ ନିତ୍ୟ ଏହା କହି । ଶୂନ୍ୟ ଦେଉଳ ଏ ବୋଲାଇ ॥"

[ତୁଳାଭିଣା]

ଯଥାର୍ଥରେ ଏ ବିଶ୍ୱ ସଂସାର ପ୍ରକୃତିପୁରୁଷର ଲୀଳା ଭିନ୍ନ ଅନ୍ୟ କିଛି ନୁହେଁ । ପରଂବ୍ରହ୍ମ ପୁରୁଷ ଏବଂ ପ୍ରକୃତି ତାଙ୍କର ମାୟାଶକ୍ତି । ଅଗ୍ନିର ଦାହିକା ଶକ୍ତି ଯେପରି ଅଗ୍ନିଠାରୁ ପୃଥକ୍ ନୁହେଁ, ସେହିପରି ପୁରୁଷ ଅର୍ଥାତ୍ ବ୍ରହ୍ମ ଏବଂ ପ୍ରକୃତି ଅର୍ଥାତ୍ ମାୟା ଦୁଇଟି ସ୍ୱତନ୍ତ୍ର ସତ୍ତା ନୁହନ୍ତି । ଅଗ୍ନି କହିଲେ ଯେପରି ତାହାର ଦାହିକାଶକ୍ତିକୁ ବୁଝାଏ, ସେହିପରି ବ୍ରହ୍ମ କହିଲେ ମାୟା ବା ପ୍ରକୃତିକୁ ବୁଝାଏ ଏବଂ ମାୟା କହିଲେ ମାୟାର ଅଧିଷ୍ଠାନ ବ୍ରହ୍ମଙ୍କୁ ମଧ୍ୟ

ବୁଝାଏ । ଏହି ବିଷୟଟିକୁ ଲକ୍ଷ୍ୟକରି ରାମକୃଷ୍ଣ ପରମହଂସ ଠାଏ କହିଅଛନ୍ତି— "କାଳୀ ବ୍ରହ୍ମଙ୍କଠାରୁ ଭିନ୍ନ ନୁହନ୍ତି । କାଳୀ ବା ଆଦ୍ୟାଶକ୍ତି ଯେତେବେଳେ ନିଷ୍କ୍ରିୟ ସେତେବେଳେ ସେ ବ୍ରହ୍ମ । କିନ୍ତୁ ଯେତେବେଳେ ସେ ସୃଷ୍ଟି ସଂହାର ଓ ପାଳନ କର୍ମରେ ନିରତା ସେତେବେଳେ ସେ କାଳୀ । ତେଣୁ ବ୍ରହ୍ମ ଓ କାଳୀ; ଅଗ୍ନି ଓ ତାର ଦାହିକା ଶକ୍ତିପରି ଏକ ଓ ଅଭିନ୍ନ । ଆମେ ଗୋଟିକର କଥା ଚିନ୍ତା କରିବା ବେଳେ ଅନ୍ୟଟିର କଥା ଚିନ୍ତା କରିଥାଉ । ବ୍ରହ୍ମଙ୍କୁ ଗ୍ରହଣ କଲେ କାଳୀଙ୍କୁ ଗ୍ରହଣ କରିବାକୁ ହେବ ଏବଂ କାଳୀଙ୍କୁ ଗ୍ରହଣ କଲେ ବ୍ରହ୍ମଙ୍କୁ ଗ୍ରହଣ କରିବାକୁ ହେବ ।" ଏହି ଅର୍ଥରେ ଜଗନ୍ନାଥ ଏବଂ ରାଧାକୃଷ୍ଣ ଏକ ଏବଂ ଅଭିନ୍ନ । "ରାଧାଙ୍କି ସ୍ୱୟଂ ଜଗନ୍ନାଥ । ରାଧାରୁ କ୍ଷରିଛି ଜଗତ ॥"

[ଜ·ଚ]

ଜଗନ୍ନାଥ ଦାସଙ୍କର ଏହି ରାଧାକୃଷ୍ଣ ତତ୍ତ୍ୱ ବୈଦାନ୍ତିକ ଅଦ୍ୱୈତବାଦର ଅନୁରୂପ । ଏହି ତତ୍ତ୍ୱର ବ୍ୟାଖ୍ୟାନରେ ଜଗନ୍ନାଥ ଦାସ ବେଦାନ୍ତର ଅଦ୍ୱୈତବାଦଦ୍ୱାରା ଗଭୀର ଭାବରେ ପ୍ରଭାବିତ ହୋଇଥିବା ମନେହୁଏ । ଏହା ଗୌଡ଼ୀୟଧର୍ମର ରାଧାକୃଷ୍ଣ ତତ୍ତ୍ୱଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଗୌଡ଼ୀୟ ବୈଷ୍ଣବଶାସ୍ତ୍ର ବର୍ଣ୍ଣିତ କୃଷ୍ଣ ଦେବକୀ ନନ୍ଦନ ଗୋପୀଜନବଲ୍ଲଭମାନବ କୃଷ୍ଣ ଏବଂ ରାଧା ହେଉଛନ୍ତି କାଳିନ୍ଦୀ ତଟବିପିନବିହାରିଣୀ କୃଷ୍ଣ ମନମୋହିନୀ ବୃଷଭାନୁ କେମା ରାଧିକା ।

## (ଖ) ସାଧନା ପ୍ରଣାଳୀ

**ଜ୍ଞାନ ଓ ଭକ୍ତି—**

ଶାସ୍ତ୍ର-ପୁରାଣାଦିରେ ଭଗବତ୍ ପ୍ରାପ୍ତିର ବିବିଧ ମାର୍ଗ ବର୍ଣ୍ଣିତ ହୋଇଅଛି । ଏଗୁଡ଼ିକ ମଧ୍ୟରେ କର୍ମଯୋଗ, ଜ୍ଞାନଯୋଗ ଏବଂ ଭକ୍ତି-ଯୋଗ ପ୍ରଧାନ । କେହି କେହି ଅଷ୍ଟାଙ୍ଗ ଯୋଗକୁ ମଧ୍ୟ ଏକ ସ୍ୱତନ୍ତ୍ର ମାର୍ଗରୂପେ ଗ୍ରହଣ କରିଥାନ୍ତି । ନିତ୍ୟ ନୈମିତ୍ତିକାଦି ବେଦ ବିହିତ କର୍ମାନୁଷ୍ଠାନର ନାମ

* The Life of Ramakrishna—Romain Rolland, Page-66.

କର୍ମଯୋଗ । ସ୍ମରଣ, ମନନ, ନିଦିଧ୍ୟାସନାଦିଦ୍ୱାରା ବ୍ରହ୍ମଚିନ୍ତନ ଓ ବ୍ରହ୍ମ ପ୍ରାପ୍ତିର ନାମ ଜ୍ଞାନଯୋଗ । ଆସନ ପ୍ରାଣାୟାମାଦିର ଅଭ୍ୟାସଦ୍ୱାରା ଚିତ୍ତ-ବୃତ୍ତି ନିରୋଧର ନାମ ଅଷ୍ଟାଙ୍ଗଯୋଗ । ଅଷ୍ଟାଙ୍ଗଯୋଗ ଜ୍ଞାନ ଓ ଭକ୍ତି ଉଭୟର ସହାୟକ ହୋଇଥାଏ । ଈଶ୍ୱରଙ୍କଠାରେ ପରମ ଅନୁରକ୍ତି ବା ଅବ୍ୟଭିଚାରିଣୀ ପ୍ରେମର ନାମ ଭକ୍ତି । କର୍ମଯୋଗର ସଫଳତା ପାଇଁ ଅନାସକ୍ତି ଏବଂ ଜ୍ଞାନ ଓ ଅଷ୍ଟାଙ୍ଗଯୋଗର ସଫଳତା ପାଇଁ ବୈରାଗ୍ୟ ଏକାନ୍ତ ପ୍ରୟୋଜନ । ଏଣୁ ଏହି ତିନୋଟି ମାର୍ଗ ନିଷେଧାତ୍ମକ । କିନ୍ତୁ ଭକ୍ତି ବିଧେୟାତ୍ମକ । ଏଥିରେ ସାଧକର ହୃଦୟବୃତ୍ତିସମୂହକୁ ଦମନ ନ କରି ଭଗବାନଙ୍କଠାରେ ସର୍ବତୋଭାବରେ ନ୍ୟସ୍ତ କରିବାକୁ ହୋଇଥାଏ । ଏଣୁ କର୍ମ, ଜ୍ଞାନ ଓ ଯୋଗ ତୁଳନାରେ ଭକ୍ତି ସହଜ ଓ ଅଧିକ ସାର୍ବଜନୀନ । ଏହା-ଛଡ଼ା ଜ୍ଞାନ ଓ ଯୋଗାଦି ମାର୍ଗରେ ଈଶ୍ୱର-ଅନୀଶ୍ୱର, ଜ୍ଞାତା-ଜ୍ଞେୟ ଓ ସାଧ୍ୟ ସାଧକାଦି ଦ୍ୱୈତ ଭାବନା ବିଦ୍ୟମାନ ଥାଏ । କିନ୍ତୁ ଭକ୍ତିଯୋଗରେ ଭକ୍ତ ଏକ ଅନନ୍ୟ ପ୍ରେମ ଭାବନାରେ ପ୍ରଣୋଦିତ ହୋଇ ଆତ୍ମସତ୍ତା ବିସ୍ମୃତ ହୁଏ ଏବଂ ବିଶ୍ୱର ସର୍ବତ୍ର ନିଜର ହୃଦୟନାଥଙ୍କୁ ଦର୍ଶନ କରି କୃତକୃତ୍ୟ ହୁଏ । ଏହି ସବୁ କାରଣରୁ ଗୀତା, ଭାଗବତ ଆଦି ଶାସ୍ତ୍ରମାନଙ୍କରେ ଭକ୍ତିର ଶ୍ରେଷ୍ଠତା ପ୍ରତିପାଦିତ ହୋଇଅଛି । ଭକ୍ତି ପୁଣି ଜ୍ଞାନ ହେତୁକ କିମ୍ବା ଅହେତୁକୀ ହୋଇ-ପାରେ । ବ୍ରଜବାସିନୀ ଗୋପାଙ୍ଗନା ଏବଂ ଧ୍ରୁବ ପ୍ରହ୍ଲାଦ ଆଦି ଭକ୍ତମାନଙ୍କର ଭକ୍ତି ଅହେତୁକୀ ଭକ୍ତିର ଉଦାହରଣ । ଉଦ୍ଧବ, ସନକ, ସନାତନାଦି ଜ୍ଞାନୀ ଭକ୍ତ । କାହାରି କାହାରି ମତରେ ଜ୍ଞାନୋତ୍ତର ଭକ୍ତିଠାରୁ ଅହେତୁକୀ ଭକ୍ତି ଉଚ୍ଚତର । କିନ୍ତୁ ଏ ବିଚାର ଠିକ୍ ନୁହେଁ । ଈଶ୍ୱରାଭିମୁଖୀ ସ୍ୱତଃସ୍ଫୂର୍ତ୍ତି ଚିତ୍ତ ବୃତ୍ତି ସଦୃଶ ଜ୍ଞାନ ମଧ୍ୟ ଭକ୍ତିର ସହାୟକ । ଭଗବତ୍ ତତ୍ତ୍ୱର ପୁନଃ ପୁନଃ ଚିନ୍ତନ ଓ ବିଶ୍ଳେଷଣଦ୍ୱାରା ଭକ୍ତି ଗାଢ଼ତର ହୁଏ । ପରମତତ୍ତ୍ୱରୂପୀ ଈଶ୍ୱର ସମ୍ବନ୍ଧୀୟ ଜ୍ଞାନ ଯେତିକି ଯେତିକି ଦୃଢ଼ ହୁଏ ଭକ୍ତ ଭଗବାନଙ୍କ ପ୍ରେମ-ସାଗରରେ ସେତିକି ନିମଜ୍ଜିତ ହୁଏ । ଗୀତାରେ ଭଗବାନ ଶ୍ରୀକୃଷ୍ଣ ଭକ୍ତ-ମାନଙ୍କୁ ଚାରିଶ୍ରେଣୀରେ ବିଭକ୍ତ କରିଅଛନ୍ତି; ଯଥା—ଆର୍ତ୍ତ, ଜିଜ୍ଞାସୁ, ଅର୍ଥାର୍ଥୀ ଏବଂ ଜ୍ଞାନୀଭକ୍ତ । ଏମାନଙ୍କ ମଧ୍ୟରେ ଜ୍ଞାନୀଭକ୍ତ ଶ୍ରେଷ୍ଠ । କାରଣ ଜ୍ଞାନମୂଳାଭକ୍ତି ପରାଭକ୍ତିର ଅନ୍ତର୍ଭୁକ୍ତ । ଯେପରି ବିଭିନ୍ନ ଫୁଲରୁ ସଂଗୃହୀତ ମଧୁ ସ୍ୱାଦରେ ଏକ

ଏବଂ ଅଭିନ୍ନ, ସେହିପରି ଜ୍ଞାନୋତ୍ତର ଏବଂ ଅହେତୁକୀ ଭକ୍ତି ସ୍ୱରୂପତଃ ଏକ। ଜଗନ୍ନାଥ ଦାସ କବୀର, ତୁଳସୀ ଦାସ ଏବଂ ଜ୍ଞାନେଶ୍ୱରଙ୍କ ପରି ଜ୍ଞାନୋତ୍ତର ଭକ୍ତିର ଅଧିକାରୀ ଥିଲେ। କେହି କେହି ତାହାଙ୍କୁ ଜ୍ଞାନମିଶ୍ରା ଭକ୍ତିମାର୍ଗର ଉପାସକ ବୋଲି କହିଥାନ୍ତି। ଜ୍ଞାନମିଶ୍ରା ଭକ୍ତି କହିଲେ ଜ୍ଞାନ ଓ ଭକ୍ତି ଉଭୟର ପ୍ରାଧାନ୍ୟ ବୁଝାଏ। କିନ୍ତୁ ଜ୍ଞାନୋତ୍ତର ଭକ୍ତି ଏହାଠାରୁ ସ୍ୱତନ୍ତ୍ର। ଏହା ପରିପୂର୍ଣ୍ଣ ପରାଭକ୍ତି, ଜ୍ଞାନ ଏହାର ସାଧନ କିନ୍ତୁ ପ୍ରେମ ଏହାର ପ୍ରାଣ।

## ଭକ୍ତିର ପ୍ରକାର ଭେଦ—

'ଜଗନ୍ନାଥଚରିତାମୃତ'ରେ ଦ୍ୱିବିଧ ଭକ୍ତିର ଉଲ୍ଲେଖ ଅଛି। ଯଥା: ସାଧନଭକ୍ତି ବା ବୈଧିଭକ୍ତି ଏବଂ ରାଗଭକ୍ତି। ଶାସ୍ତ୍ରାନୁଯାୟୀ କୁଳ ବିହିତ ଧର୍ମାଚରଣ ସଙ୍ଗେ ଦେବାରାଧନା ଏବଂ ଶ୍ରବଣ, କୀର୍ତ୍ତନ, ଭଜନାଦି ଶ୍ରୀହରି ସେବା ବୈଧିଭକ୍ତିର ଅନ୍ତର୍ଗତ। ଏହା ସକାମଭକ୍ତି। ଏଥିରେ ଭୁକ୍ତି, ମୁକ୍ତି ଆଦି ବାସନା ହୃଦୟରେ ଜାଗରୂକଥାଏ ଏବଂ ଭଗବାନଙ୍କର ଐଶ୍ୱର୍ଯ୍ୟ ଭାବ ବା ମହିମାଜ୍ଞାନ ଚିତ୍ତରେ ବିଦ୍ୟମାନଥାଏ। ସକଳ ସାଂସାରିକ ବାସନାରୁ ନିର୍ମୁକ୍ତ ହୋଇ ଚିତ୍ତ ଯେତେବେଳେ ଈଶ୍ୱରଙ୍କଠାରେ ସମ୍ପୂର୍ଣ୍ଣ ଭାବରେ ଅର୍ପିତହୁଏ ସେତେବେଳେ ତାର ନାମ ହୁଏ ରାଗଭକ୍ତି। ସାତ୍ତ୍ୱିକ, ରାଜସିକ ଓ ତାମସିକ ଭେଦରେ ରାଗ ଭକ୍ତି ତ୍ରିବିଧ। ଏ ପ୍ରତ୍ୟେକ ପୁଣି ଉତ୍ତମ, ମଧ୍ୟମ ଏବଂ ଅଧମ ଭେଦରେ ତ୍ରିବିଧ। ଏହା ହିଁ ହେଲା ନବଧା ରାଗ ଭକ୍ତି। ଶ୍ରବଣ, କୀର୍ତ୍ତନ, ସ୍ମରଣ, ପଦସେବନ, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ ଏବଂ ଆତ୍ମନିବେଦନ ଭେଦରେ ଏ ପ୍ରତ୍ୟେକେ ପୁଣି ନଅ ପ୍ରକାର। ଏହିପରି ରାଗ ଭକ୍ତି ଏକାଅଶୀ ପ୍ରକାର। ଶୁଦ୍ଧ ରାଗାନୁଗା ଭକ୍ତିର ଦଶଗୋଟି ଲକ୍ଷଣ ବିଦ୍ୟମାନ। ସେଗୁଡ଼ିକ ହେଲା ଅକ୍ରୋଧ, ବୈରାଗ୍ୟ, ଜିତେନ୍ଦ୍ରିୟତ୍ୱ, କ୍ଷମା, ଦୟା, ସର୍ବଜନପ୍ରିୟତ୍ୱ, ନିର୍ଲୋଭ, ଦାନଶୀଳତା, ଭୀତି ଓ ଶୋକରାହିତ୍ୟ। ରାଗାନୁଗାଭକ୍ତିର ଚରମ ପରିଣତି ହେଉଛି ପ୍ରେମଭକ୍ତି। ଏହା ଭଗବତ୍ ପ୍ରାପ୍ତିର ସହଜ ଓ ସୁଗମ ଉପାୟ। ଉପରି ବର୍ଣ୍ଣିତ ଏଗାରପ୍ରକାର ରାଗଭକ୍ତି ମଧ୍ୟରେ ପ୍ରେମଭକ୍ତି ଶ୍ରେଷ୍ଠ।

"ଯେ ପ୍ରେମ ମାର୍ଗରେ ଭଜନ୍ତି । ସେହୁ ନିକଟେ କୃଷ୍ଣ ପାନ୍ତି ॥"
[ଜ. ଚ.]

ସ୍ୱେଦ, ରୋମାଞ୍ଚ ଆଦି ଅଷ୍ଟ ସାତ୍ତ୍ୱିକ ବିକାର ପରିପୂର୍ଣ୍ଣ ପ୍ରେମଭକ୍ତିର ଶ୍ରେଷ୍ଠ ପରିଚୟସୂଚକ । ହରି-ପ୍ରେମରେ ବିଭୋର ହୋଇ ସାଧକ, ଭକ୍ତ ଯେତେବେଳେ ନିଜକୁ ସଂପୂର୍ଣ୍ଣ ଭୁଲିଯାଏ ସେତେବେଳେ ସେ ଉନ୍ମାଦ ପରି ନୃତ୍ୟକରେ, ଭକ୍ତିଉଦ୍‌ଗତ ଚକ୍ଷୁରେ ଅଶ୍ରୁମୋଚନ କରେ କିମ୍ବା ହରି ପ୍ରେମରେ ଆତ୍ମହରା ହୋଇ ମୂର୍ଚ୍ଛା ଯାଏ । ଜଗନ୍ନାଥ ଦାସଙ୍କ 'ସାଧନା ଓ ସିଦ୍ଧି' ବର୍ଣ୍ଣନା ପ୍ରସଙ୍ଗରେ ଏହାର ସବିସ୍ତାର ଆଲୋଚନା କରାଯାଇଛି ।

**କାନ୍ତା ପ୍ରେମ ବା ସଖୀଭକ୍ତି :**

ଦାସ୍ୟ, ସଖ୍ୟ, ବାତ୍ସଲ୍ୟାଦି ଭେଦରେ ଭକ୍ତି ବହୁବିଧ ହେଲେ ହେଁ କାନ୍ତା ପ୍ରେମ ବା ସଖୀଭକ୍ତି ହେଉଛି ଏହାର ଚରମ ପରିଣତି । ସତୀ ସାଧ୍ୱୀ ପତିବ୍ରତା ରମଣୀ ତାର ହୃଦୟବଲ୍ଲଭର ଆରାଧନାରେ ନିଜକୁ ସମ୍ପୂର୍ଣ୍ଣ ବିଲୀନ କରିଦେବାପରି ସାଧକ ଭକ୍ତ ଯେତେବେଳେ ଅନନ୍ୟ ପ୍ରେମ ଏବଂ ସମ୍ପୂର୍ଣ୍ଣ ଆତ୍ମ ନିବେଦନରେ ଭଗବାନଙ୍କ ପ୍ରେମପ୍ରବାହରେ ନିଜର ଜୀବନସ୍ରୋତକୁ ମିଶାଇ ଏକାକାର କରିଦିଏ ସେତେବେଳେ ତାର ଏହି ହରିପ୍ରେମକୁ କୁହାଯାଏ କାନ୍ତାପ୍ରେମ ବା ସଖୀଭକ୍ତି ।

ପ୍ରକୃତରେ ଦେଖିବାକୁ ଗଲେ ଭଗବତ୍ ପ୍ରେମ ଅନୁପମ ଏବଂ ଅନିର୍ବଚନୀୟ । କୌଣସି ମାନବୀୟ ବସ୍ତୁ ସହିତ ଏହାର ତୁଳନା କରାଯାଇ ନପାରେ । ଭଗବାନଙ୍କ ପ୍ରେମସାଗରର ଏକ ବିନ୍ଦୁ ସହିତ ମଧ ନରନାରୀର ପ୍ରେମ ତୁଳନୀୟ ନୁହେଁ । କିନ୍ତୁ ଯାହା ପ୍ରକାଶାତୀତ ଓ ବାକ୍ୟମନର ଏକାନ୍ତ ଅଗୋଚର ତାହାକୁ ବୋଧଗମ୍ୟ କରାଇବା ପାଇଁ ହରିଭକ୍ତି ସମ୍ବନ୍ଧୀୟ ରସଶାସ୍ତ୍ର ମାନଙ୍କରେ କାନ୍ତାପ୍ରେମକୁ ଏକ ରୂପକ ରୂପେ ଗ୍ରହଣ କରାଯାଇଥାଏ ।

ପ୍ରିୟତମଙ୍କଳନରେ ଭଗବାନଙ୍କଠାରେ ଅବ୍ୟଭିଚାରିଣୀ ଭକ୍ତି ଏବଂ ପରିପୂର୍ଣ୍ଣ ଆତ୍ମନିବେଦନ ଏହାର ଲକ୍ଷ୍ୟ । ଏହା ହିଁ ଥିଲା ଜଗନ୍ନାଥ ଦାସଙ୍କ ଭକ୍ତି ସାଧନର ଆଦର୍ଶ । ଜଗନ୍ନାଥ ଦାସଙ୍କ ସ୍ତ୍ରୀ ଅଙ୍ଗ ପ୍ରାପ୍ତି ଓ ସଖୀଭକ୍ତିର ଏହା ହିଁ ହେଉଛି ଏକମାତ୍ର ତାତ୍ପର୍ଯ୍ୟ ।

"ପୂର୍ବେ ଏ ସେବା କରିଥିଲ । ତ୍ରିଷ୍ଣ ଅଙ୍ଗେ କୃଷ୍ଣ ପାଇଲ ॥
ପୁରୁଷ ପ୍ରାୟେ କଲେ ଭକ୍ତି । ଶ୍ରେଷ୍ଠ କାନ୍ତ ପ୍ରାୟେକ ରତି ॥
ତ୍ରିଷ୍ଣ ପ୍ରେମରେ ଭକ୍ତକଲେ । ମହାପ୍ରେମ ତହୁଁ ଉଦ୍ଭୁଲେ ॥"
[ଜ. ଚ.]

## ସ୍ୱକୀୟା ଓ ପରକୀୟା :

କାନ୍ତାପ୍ରେମ ବା ସଖୀଭକ୍ତି ପୁଣି ସ୍ୱକୀୟା ଓ ପରକୀୟା ଭେଦରେ ଦ୍ୱିବିଧ । ବିବାହିତା ପତିବ୍ରତା ନାରୀର ନିଜର ହୃଦୟବଲ୍ଲଭଙ୍କ ପ୍ରତି ଅବ୍ୟଭିଚାରିଣୀ ପ୍ରୀତି ଓ ଐକାନ୍ତିକ ଆତ୍ମନିବେଦନର ନାମ ସ୍ୱକୀୟା ଭକ୍ତି । ରୁକ୍ମିଣୀ, ସତ୍ୟଭାମା, ସୀତା ଏବଂ ପାର୍ବତୀ ଆଦି ବରେଣ୍ୟା ନାରୀଗଣ ଏହି ପ୍ରେମର ଅଧିକାରିଣୀ ଥିଲେ । ଏ ନିଷ୍ଠା ନିତ୍ୟ ଏବଂ ଚିରସ୍ଥାୟୀ ।

"ନିତ୍ୟ ସ୍ୱକୀୟା ଧର୍ମ ପଥ । ଏ ଯୁଗ ଯୁଗାନ୍ତରେ ଉକ୍ତ ॥"
[ଜ ଚ.—୧୧୧]

ଅବିବାହିତା ଅଥବା ଅନ୍ୟ ସହିତ ବିବାହିତା ନାରୀର ପରପୁରୁଷ ବା ଉପପତି ପ୍ରତି ଯେ ପ୍ରାଣ ଉଚ୍ଛୁଳା ପ୍ରେମ ତାର ନାମ ପରକୀୟା ରତି । ରାଧା ଓ ଅନ୍ୟାନ୍ୟ ବ୍ରଜାଙ୍ଗନାମାନଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ପ୍ରେମ ପରକୀୟା । ପରକୀୟା ପ୍ରେମରେ ପ୍ରେମର ଯେଉଁ ଉନ୍ମତ୍ତତା ଓ ହୃଦୟାବେଗର ଯେଉଁ ତୀବ୍ରତା ବିଦ୍ୟମାନ, ବିବାହ ବନ୍ଧନରେ ଆବଦ୍ଧ ପତି-ପତ୍ନୀ ପ୍ରେମରେ ତାହା ସମ୍ଭବପର ନୁହେଁ । ଏଥିରେ ବାଧାବିଘ୍ନ ବା ଅନନ୍ତ ବିରହର ଅବକାଶ ନାହିଁ । ସେଥିପାଇଁ ଗୌଡ଼ୀୟ ବୈଷ୍ଣବ ଓ ସମ ମତାବଲମ୍ବୀ ଅନ୍ୟ ବୈଷ୍ଣବ ସମ୍ପ୍ରଦାୟର ଶାସ୍ତ୍ରମାନଙ୍କରେ ପରକୀୟା ପ୍ରେମକୁ ଭଗବଦ୍‌ଭକ୍ତିର ଆଦର୍ଶରୂପେ ଗ୍ରହଣ କରା-ଯାଇଥାଏ । 'ଭକ୍ତିସୂତ୍ର' ପ୍ରଣେତା ମହର୍ଷି ନାରଦଙ୍କ ମତରେ ଭଗବାନଙ୍କଠାରେ ପରିପୂର୍ଣ୍ଣ ଆତ୍ମନିବେଦନ ଏବଂ ତାହାଙ୍କ ବିରହରେ ପରମବ୍ୟାକୁଳତା ହେଉଛି ଶ୍ରେଷ୍ଠ ଭକ୍ତିର ଲକ୍ଷଣ । ଏହାର ଶ୍ରେଷ୍ଠ ନିଦର୍ଶନ ହେଉଛି ବ୍ରଜବାସିନୀ ଗୋପାଙ୍ଗନାମାନଙ୍କର ଅନନ୍ୟ କୃଷ୍ଣପ୍ରେମ । "ଯଥା ବ୍ରଜ ଗୋପୀକାନାମ୍ ।"
[ନା. ଭ. ସୂ-୨୧]

କିନ୍ତୁ ଜଗନ୍ନାଥ ଦାସ ଓ ତାହାଙ୍କର ଅନୁଗାମୀମାନଙ୍କ ମତରେ ସ୍ୱକୀୟା ଭକ୍ତି ପରକୀୟା ଭକ୍ତିଠାରୁ ଉଚ୍ଚତର ।

"ସ୍ୱକୀୟା ସ୍ୱଧର୍ମିଟି ଏହି । ଅନ୍ୟ ପୁରୁଷକୁ ନ ଗୃହି ॥
ସେହି ଭଜନ୍ତି ଆଗ୍ରେକର । ଲଭିବ ଭକ୍ତି ନିରନ୍ତର ॥
ପ୍ରେମଭଜନ୍ତି ମଧ୍ୟେ ସେହି । ଶାସ୍ତ୍ରରେ ଶ୍ରେଷ୍ଠ ଯେ ବୋଲଇ ॥"
[ଜ.ଚ.-୧୧୩]

ପରକୀୟା ପ୍ରେମ ଉଦ୍ଦାମ କାମନା ବିଜଡ଼ିତ ଏବଂ ଭୀତି ଓ ଶଙ୍କାରେ ଚିର କଣ୍ଟକିତ । କିନ୍ତୁ ସ୍ୱକୀୟା ସ୍ଥିର, ଅଚଞ୍ଚଳ ଓ ନିଷ୍କାମ । ଏଣୁ ପରକୀୟା ଭକ୍ତିଠାରୁ ଏହା ଶ୍ରେଷ୍ଠ ।

"ଏ ନିଷ୍ଠା ନିତ୍ୟଧର୍ମ ସ୍ଥାୟୀ । ଏ ଭକ୍ତି ନଜାଣନ୍ତି କେହି ॥
ନିତ୍ୟ ସ୍ୱକୀୟା ଧର୍ମ ପଥ । ଏ ଯୁଗ ଯୁଗାନ୍ତରେ ଉକ୍ତ ॥"
[ଜ.ଚ. ୧୧୧]

ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ, ଜଗନ୍ନାଥ ଦାସ ଓ ଅନ୍ୟାନ୍ୟ ଉତ୍କଳୀୟ ବୈଷ୍ଣବଗଣ ପରକୀୟା ଭକ୍ତିର ବିପଜ୍ଜନକ ସାମାଜିକ ପରିଣତି ପ୍ରତି ସଚେତନ ଥିଲେ । ସେଥିପାଇଁ ସେମାନେ ସ୍ୱକୀୟା ଭକ୍ତିର ଜୟଗାନରେ ମୁଖର । ଏହି କାରଣରୁ ମହାରାଷ୍ଟ୍ରୀୟ ବୈଷ୍ଣବ ସମ୍ପ୍ରଦାୟରେ ମଧ୍ୟ ବିଠୋଲ ବା କୃଷ୍ଣ ରୁକ୍ମିଣୀ ପତି ଭାବରେ ଯେତିକି ପରିଚିତ ରାଧାମୋହନ ବା ରାଧାବଲ୍ଲଭ ଭାବରେ ସେତିକି ପରିଚିତ ନୁହନ୍ତି । *

ରାଧାକୃଷ୍ଣ ପ୍ରେମତତ୍ତ୍ୱ ଗୌଡ଼ୀୟ ବୈଷ୍ଣବ ଧର୍ମର ଶେଷ ଏବଂ ସାରକଥା । ରାଧାକୃଷ୍ଣ ପ୍ରେମଲୀଳାର ସ୍ମରଣ, ଭଜନ, କୀର୍ତ୍ତନ ଓ ଆସ୍ୱାଦନ, ଗୋପୀଭାବରେ ମହାଭାବମୟୀ କୃଷ୍ଣ ବିରହିଣୀ ରାଧାଙ୍କର ଭାବାନୁସରଣ ଏବଂ ସର୍ବଶେଷରେ ପବିତ୍ର ବୃନ୍ଦାବନ ଧାମରେ ଗୋପୀତ୍ୱ ପ୍ରାପ୍ତି ଗୌଡ଼ୀୟ ବୈଷ୍ଣବ ସାଧନାର

* Vaisnavism, Saivism and other Minor Religious Systems—Page 127 by Sir R. G. Bhandarkar.

ଚରମ ଲକ୍ଷ୍ୟ । ଶ୍ରୀରାଧା ହେଉଛନ୍ତି ଭଗବାନଙ୍କର ଅପ୍ରାକୃତ ସ୍ୱରୂପ ଶକ୍ତିର ସାରଭୂତା ହ୍ଲାଦନୀ ଶକ୍ତି । ଏହି ହ୍ଲାଦନୀ ଶକ୍ତିରୂପିଣୀ ମହାଭାବମୟୀ ଶ୍ରୀରାଧାଙ୍କ ସହିତ ନିତ୍ୟ ବୃନ୍ଦାବନ ଧାମରେ ଭଗବାନ ଶ୍ରୀକୃଷ୍ଣଙ୍କର ନିତ୍ୟ ପ୍ରେମଲୀଳା । ଭଗବାନ ଶ୍ରୀକୃଷ୍ଣଙ୍କର ସ୍ୱରୂପୋପଲବ୍ଧି ନିମିତ୍ତ ପରମ ପ୍ରେମମୟୀ ଶ୍ରୀରାଧା ହେଉଛନ୍ତି ତାଙ୍କର ଏକମାତ୍ର ଆଶ୍ରୟ । ବୃନ୍ଦାବନଧାମରେ ଶ୍ରୀକୃଷ୍ଣଙ୍କର ଏ ଲୀଳା ସ୍ୱରୂପଲୀଳା । ଜଗତ୍ପ୍ରପଞ୍ଚସୃଷ୍ଟ୍ୟାଦି ଲୀଳା ପରି ଏହା ମାୟିକ ବା ଔପଚାରିକ ନୁହେଁ । ଏହି ସ୍ୱରୂପଲୀଳାର ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଛି ଗୌଡ଼ୀୟ ବୈଷ୍ଣବଧର୍ମର ସାଧନତତ୍ତ୍ୱ । ଗୌଡ଼ୀୟ ବୈଷ୍ଣବମାନଙ୍କ ମତରେ ରାଧାକୃଷ୍ଣ ଭେଦ ଔପଚାରିକ ବା ପ୍ରାତିଭାସିକ ନୁହେଁ—ଏହା ନିତ୍ୟ ଓ ସତ୍ୟ । ରାଧାକୃଷ୍ଣ ଲୀଳା ମଧ୍ୟ ନିତ୍ୟ ଓ ସତ୍ୟ । ଗୌଡ଼ୀୟ ବୈଷ୍ଣବଧର୍ମର ଏ କୃଷ୍ଣ ହେଉଛନ୍ତି ଦେବକୀନନ୍ଦନ କୃଷ୍ଣ ଏବଂ ରାଧା ହେଉଛନ୍ତି ବୃଷଭାନୁ ନନ୍ଦିନୀ ରାଧିକା । ଲୀଳାଭୂମି ବୃନ୍ଦାବନ । ଅପ୍ରାକୃତ ଓ କାମନାବର୍ଜିତ ହେଲେ ହେଁ ରାଧାକୃଷ୍ଣଙ୍କର ଏ ପ୍ରେମଲୀଳା ପରକୀୟା । ଶ୍ରୀ ରାଧା ଓ ବ୍ରଜାଙ୍ଗନାଗଣ ପରୋଢ଼ା ବା କନ୍ୟକା ନାୟିକା । ଶ୍ରୀକୃଷ୍ଣ ହେଉଛନ୍ତି ସେମାନଙ୍କର ଜାର ପୁରୁଷ ବା ଉପପତି । ରସର ପ୍ରାବଲ୍ୟ ହେତୁ ପରକୀୟା ରତି କାନ୍ତାପ୍ରେମର ଶ୍ରେଷ୍ଠ ଅଭିବ୍ୟକ୍ତି ଏବଂ ଏହାର ଚରମ ପରିଣତି ହେଉଛି ରାଧାକୃଷ୍ଣ ପ୍ରେମ ।

"ପରକୀୟା ଭାବେ ଅତି ରସେର ଉଲ୍ଲାସ ।
ବ୍ରଜବିନା ଏହାର ଅନ୍ୟତ୍ର ନାହିଁ ବାସ ॥
ବ୍ରଜବଧୂଗଣେର ଏହି ଭାବ ନିରବଧି ।
ତାର ମଧ୍ୟେ ଶ୍ରୀ ରାଧାର ଭାବେର ଅବଧି ॥"

[ଚୈ. ଚ.-ଆଦି-୪ର୍ଥ]

ମନସ୍ତାତ୍ତ୍ୱିକ ଓ ଆଧ୍ୟାତ୍ମିକ ଦୃଷ୍ଟିରୁ ସମ୍ପୂର୍ଣ୍ଣ ଗ୍ରହଣୀୟ ହେଲେ ହେଁ ସାମାଜିକ ଦୃଷ୍ଟିରୁ ବୈଷ୍ଣବ ପରକୀୟା ତତ୍ତ୍ୱର ବାଞ୍ଛନୀୟତା ଏକ ବିବଦମାନ ପ୍ରଶ୍ନରେ ପରିଣତ ହୋଇଛି ।* ସ୍ୱୟଂ ଭାଗବତକାର ଏହାର ସୁଦୂର ପରିଣତି

* ଶ୍ରୀ ରାଧାର କ୍ରମବିକାଶ—ପୃ ୨୨୮ ଶଶୀଭୂଷଣ ଦାସଗୁପ୍ତ ।

ସମ୍ବନ୍ଧରେ ସଚେତନ ଥିବା ପରି ମନେହୁଏ । ଭାଗବତ ଦଶମସ୍କନ୍ଧରେ ରାସଲୀଳା ବର୍ଣ୍ଣନ ଅବସରରେ ମହାରାଜା ପରୀକ୍ଷିତ ଶୁକଦେବଙ୍କୁ ପ୍ରଶ୍ନ କରିଅଛନ୍ତି—"ଧର୍ମର ସଂସ୍ଥାପନ ଓ ଅଧର୍ମର ପ୍ରଶମନ ନିମିତ୍ତ ଜଗତର ଈଶ୍ବର ଭଗବାନ ଶ୍ରୀକୃଷ୍ଣ ଧରାଧାମରେ ଅବତୀର୍ଣ୍ଣ ହୋଇଥିଲେ । ଧର୍ମସେତୁ ସମ୍ଭହର ବକ୍ତା, କର୍ତ୍ତା ଓ ଅଭିରକ୍ଷିତା ହୋଇ ସେ କିପରି ପରଦାରାଭିମର୍ଷଣ ରୂପ ପ୍ରତିକୂଳ ଆଚରଣ ପ୍ରଦର୍ଶନ କଲେ ?" [ଭା. ୧୦-୩୩-୨୭]

ଶ୍ରୀ ଶୁକଦେବ ଏହି ପ୍ରଶ୍ନର ଉତ୍ତରରେ ଯାହା କହିଥିଲେ ତାହା ଯେପରି ସରଳ ଓ ସୁସ୍ପଷ୍ଟ ସେହିପରି ତାତ୍ପର୍ଯ୍ୟପୂର୍ଣ୍ଣ । ସେ କହିଲେ— "ତେଜସ୍ବୀଗଣଙ୍କ ପକ୍ଷରେ ଦୋଷାବହ ହୋଇ କିଛି ନାହିଁ । ସର୍ବଭୁକ୍ ଅଗ୍ନିଙ୍କୁ ଯେପରି ପାପ ଓ ମାଳିନ୍ୟ ସ୍ପର୍ଶକରେ ନାହିଁ, ତେଜସ୍ବୀ ପୁରୁଷଙ୍କୁ ସେହିପରି ଦୋଷ ଛୁଇଁ ପାରେ ନାହିଁ । ଈଶ୍ବରଗଣଙ୍କର ବାକ୍ୟ ହିଁ ସତ୍ୟ, ଆଚରଣ ସର୍ବଦା ସତ୍ୟ ନୁହେଁ । ସେମାନଙ୍କର ଯେଉଁ ଯେଉଁ ଆଚରଣ ବଚନ ସହିତ ସଙ୍ଗତ ତାହାହିଁ ବୁଦ୍ଧିମାନ ଲୋକମାନଙ୍କର ଆଚରଣୀୟ । ପୁନଶ୍ଚ ଭଗବାନ ଅଖିଳ ପ୍ରାଣୀଜଗତର ଅନ୍ତର୍ଯ୍ୟାମୀ ରୂପେ ଦେହ ଓ ମନରେ ବିଦ୍ୟମାନ ରହି ନିରନ୍ତର ରମଣ କରୁଅଛନ୍ତି । ତାଙ୍କ ସମ୍ବନ୍ଧରେ ପରଦାରାଭିମର୍ଷଣ ପ୍ରଶ୍ନ ଉଠି ପାରେନା ।" ଏଥିରୁ ସୂଚିତ ହୁଏ ଯେ ଭାଗବତ ରଚନା ବେଳକୁ ରାଧାକୃଷ୍ଣ ପରକୀୟା ପ୍ରେମ ଏକ ତତ୍ତ୍ବର ରୂପ ଗ୍ରହଣ କରିନଥିଲା । ନିମ୍ବାର୍କ, ବଲ୍ଲଭାଚାର୍ଯ୍ୟ ଏବଂ ଚୈତନ୍ୟ ପ୍ରତିଷ୍ଠିତ ବୈଷ୍ଣବ ସମ୍ପ୍ରଦାୟରେ ଏହା ସର୍ବ-ପ୍ରଥମେ ଏକ ତତ୍ତ୍ବ ରୂପରେ ପ୍ରତିଷ୍ଠିତ ହେଲା । ଗୌଡ଼ୀୟ ଷଡ଼ଗୋସ୍ବାମୀଙ୍କ ମଧ୍ୟରୁ ଶ୍ରୀମତ୍ ଜୀବଗୋସ୍ବାମୀ ରାଧାକୃଷ୍ଣ ପରକୀୟା ପ୍ରେମତତ୍ତ୍ବର ବିପଜ୍ଜନକ ସାମାଜିକ ପରିଣତି ହୃଦୟଙ୍ଗମ କରି ତଦୀୟ 'ଗୋପାଳଚମ୍ପୂ' କାବ୍ୟର ଉତ୍ତର ଚମ୍ପୂରେ ରାଧାକୃଷ୍ଣଙ୍କର ବିବାହ ସମ୍ପାଦନ କରାଇ ଅଛନ୍ତି ଏବଂ ସ୍ବକୀୟାତ୍ବ ହିଁ ରାଧାକୃଷ୍ଣ ପ୍ରେମତତ୍ତ୍ବର ଚରମ ଉତ୍କର୍ଷ ବୋଲି ପ୍ରତିପାଦନ କରି ଅଛନ୍ତି । ତାହାଙ୍କ ମତରେ ଗୋପୀମାନେ କୃଷ୍ଣବଧୂ ଅର୍ଥାତ୍ କୃଷ୍ଣପତ୍ନୀ । କାରଣ ସେମାନେ କୃଷ୍ଣଙ୍କୁ ପତିରୂପରେ ପାଇବା ପାଇଁ କାତ୍ୟାୟନୀଙ୍କୁ ବର

ପ୍ରାର୍ଥନା କରିଥିବା ବିଷୟ ଭାଗବତରେ ଉଲ୍ଲେଖ ଅଛି । 'ଚୈତନ୍ୟ ଚରିତାମୃତ'ର ଲେଖକ କୃଷ୍ଣଦାସ କବିରାଜ ପ୍ରାକୃତ ଭାଷାରେ ପରକୀୟା ପ୍ରେମତତ୍ତ୍ୱ ପ୍ରଚାର କରିଥିବା ହେତୁ ଜୀବଗୋସ୍ୱାମୀ ତାହାଙ୍କୁ ତିରସ୍କାର କରିଥିବା ବିଷୟ ସହଜିୟା ବୈଷ୍ଣବଗ୍ରନ୍ଥ 'ବିବର୍ତ୍ତବିଳାସ'ରେ ଉଲ୍ଲେଖ ଅଛି ।* କିନ୍ତୁ ଜୀବଗୋସ୍ୱାମୀଙ୍କ ଏ ପ୍ରକାର ମତାମତ ସତ୍ତ୍ୱେ ପରକୀୟାବାଦ ଗୌଡ଼ୀୟ ବୈଷ୍ଣବଧର୍ମର ପରମତତ୍ତ୍ୱରୂପେ ସ୍ୱୀକୃତ ହୋଇଅଛି । ପରମ ବୈଷ୍ଣବ ବିଶ୍ୱନାଥ ଚକ୍ରବର୍ତ୍ତୀ ଉଭୟ ପ୍ରକଟ ତଥା ଅପ୍ରକଟ ଲୀଳାରେ ପରକୀୟା ପ୍ରେମତତ୍ତ୍ୱର ସତ୍ୟତା ପ୍ରତିପାଦନ କରିଅଛନ୍ତି ।

ଐତିହାସିକମାନଙ୍କ ମତରେ ରାଧାକୃଷ୍ଣ ପରକୀୟା ପ୍ରେମତତ୍ତ୍ୱ ଆଭୀର ନାମକ ଏକ ଯାଯାବର ଜାତି ସହିତ ଆର୍ଯ୍ୟମାନଙ୍କର ସଂସ୍ରବର ଫଳ । ଅନ୍ୟ କେତେକଙ୍କ ମତରେ ଏହା ବୈଷ୍ଣବ ଧର୍ମ ଉପରେ ବୌଦ୍ଧ ସହଜଯାନୀ ଓ ବଜ୍ରଯାନୀମାନଙ୍କର ପ୍ରଭାବର ପ୍ରତିକ୍ରିୟା । ସେମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ଯୌନ ସ୍ୱେଚ୍ଛାଚାର ଓ ଇନ୍ଦ୍ରିୟପରତନ୍ତ୍ରତାର କବଳରୁ ଜନ ଜୀବନକୁ ରକ୍ଷା କରିବା ପାଇଁ ବୈଷ୍ଣବଗଣ ପରକୀୟା ପ୍ରେମତତ୍ତ୍ୱକୁ ଏକ ଆଧ୍ୟାତ୍ମିକ ରୂପ ପ୍ରଦାନ କରିଥିଲେ ।

ସେ ଯାହାହେଉ ଉଭୟ ତତ୍ତ୍ୱ ଦୃଷ୍ଟିରୁ ଏବଂ ବାସ୍ତବ ସାମାଜିକ ଜୀବନରେ ବିପଜ୍ଜନକ ପରିଣତି ଦୃଷ୍ଟିରୁ ଜଗନ୍ନାଥ ଦାସ ଏବଂ ତାହାଙ୍କର ଅନୁଗାମୀ ବୈଷ୍ଣବଗଣ ବୃନ୍ଦାବନଧାମର ନିତ୍ୟତା, ଶ୍ରୀକୃଷ୍ଣଙ୍କର ଔପପତ୍ୟ ଏବଂ ରାଧାଙ୍କର ପରକୀୟାତ୍ୱ ପ୍ରତ୍ୟାଖ୍ୟାନ କରି ରାଧାକୃଷ୍ଣ ପ୍ରେମତତ୍ତ୍ୱକୁ ଏକ ନୂତନ ଦୃଷ୍ଟିକୋଣରୁ ବ୍ୟାଖ୍ୟା କରିଥିଲେ । ଏହା ପୂର୍ବରୁ ଆଲୋଚିତ ହୋଇଅଛି । ରାଧାକୃଷ୍ଣପ୍ରେମସର୍ବସ୍ୱ ଗୌଡ଼ୀୟ ବୈଷ୍ଣବଧର୍ମର ଜନପ୍ରିୟତା ପ୍ରତି ଲକ୍ଷ୍ୟ ରଖି ଜନସାଧାରଣଙ୍କର ସରଳ ତରଳ ମନକୁ ପୁଣି ଜଗନ୍ନାଥ ଧର୍ମ ଆଡ଼କୁ ଟାଣି ଆଣିବାପାଇଁ ସେ ଏହା କରିଥିବା ଅନୁମିତ ହୁଏ ।

---

* Post Chaitanya Sahajiya Cult of Bengal—Page-206, M. M. Bose.

ବେଦାନ୍ତର ନିର୍ଗୁଣ ବ୍ରହ୍ମବାଦ ସଙ୍ଗେ ବୈଷ୍ଣବ ଭକ୍ତିବାଦର ଅପୂର୍ବ ସମନ୍ୱୟ ବିଧାନକରି ସେ ଉତ୍କଳର ଧର୍ମରାଜ୍ୟରେ ଏକ ନୂତନ ଜାଗରଣ ସୃଷ୍ଟି କରିଥିଲେ ଏବଂ ଉତ୍କଳର ଐତିହ୍ୟ ଓ ପରଂପରାକୁ ପୁନଃ ପ୍ରତିଷ୍ଠା କରିବାରେ ସହାୟକ ହୋଇଥିଲେ । ତାହାଙ୍କର ଏହି ଉଦ୍ୟମ ଫଳରେ ଜଗନ୍ନାଥ ଧର୍ମରେ ରାଧାକୃଷ୍ଣ ପଶି ମଧ୍ୟ ପଶି ପାରିନାହାନ୍ତି । ସନ୍ଥକବି କବୀରଙ୍କର ରାମଙ୍କ ପରି ଜଗନ୍ନାଥ ନିର୍ଗୁଣ ଏବଂ ନିରଞ୍ଜନ । ସେ ଏକ ଏବଂ ଅଦ୍ୱିତୀୟ ।

**ଐଶ୍ୱର୍ଯ୍ୟ ଏବଂ ମାଧୁର୍ଯ୍ୟ :**

ଗୌଡ଼ୀୟ ବୈଷ୍ଣବଶାସ୍ତ୍ର ଓ ସାହିତ୍ୟ ଅନୁଯାୟୀ ଶ୍ରୀକୃଷ୍ଣଙ୍କର ବ୍ରଜଲୀଳା ହେଉଛି ମାଧୁର୍ଯ୍ୟଲୀଳା । କିନ୍ତୁ 'ଜଗନ୍ନାଥଚରିତାମୃତ' ଅନୁଯାୟୀ ପୁରୁଷୋତ୍ତମ ଲୀଳା ହେଉଛି ମାଧୁର୍ଯ୍ୟାଶ୍ରିତ ଏବଂ ବୃନ୍ଦାବନ ଲୀଳା ଐଶ୍ୱର୍ଯ୍ୟାଶ୍ରିତ—

"ବୃନ୍ଦାବନ ସେ ଐଶ୍ୱର୍ଯ୍ୟ । ପୁରୁଷୋତ୍ତମଟି ମାଧୁର୍ଯ୍ୟ !"

[ଜ. ଚ. ୨୧୯]

ଏହାର ଏକ କାରଣ ହେଉଛି ଏହି ମତବାଦ ଅନୁଯାୟୀ ଯାହା ସକାମ ତାହା ଐଶ୍ୱର୍ଯ୍ୟ ଏବଂ ଯାହା ସ୍ପୃହା ଓ କାମନାହୀନ ତାହା ମାଧୁର୍ଯ୍ୟ । ବୃନ୍ଦାବନର ପରକୀୟା ପ୍ରେମ ସକାମ । ତେଣୁ ଏହା ଐଶ୍ୱର୍ଯ୍ୟ ।

"ନନ୍ଦ ନନ୍ଦନ ସ୍ୱରୂପରେ । ଗୋପେ ଗୋପାଙ୍ଗନା ସଙ୍ଗରେ ॥
ପ୍ରଚୁର ପରକୀୟା ରସ । ପ୍ରେମ ଐଶ୍ୱର୍ଯ୍ୟ ପରକାଶ ॥"

[ମ. ଚ. ୨୧୯]

ମତ୍ସ୍ୟ, କୂର୍ମ, ବରାହ, ରାମ, ପରଶୁରାମ, ନୃସିଂହ, ବାମନ ଓ କୃଷ୍ଣ ବଳରାମାଦି ଅବତାରଗଣଙ୍କର ପ୍ରଧାନ ଲକ୍ଷ୍ୟ ହେଉଛି ଧରାଭାର ନିବାରଣ ଏବଂ ବିବିଧ ପ୍ରକାର ବିଭୂତି ପ୍ରଦର୍ଶନଦ୍ୱାରା ଭଗବତ୍ତ ମହିମା ପ୍ରଖ୍ୟାପନ । ତେଣୁ ଏ ସବୁ ଅବତାର ସଗୁଣ ଏବଂ ସକାମ ଏବଂ ଯାହା ସଗୁଣ ଏବଂ ସକାମ ତାହା ମାଧୁର୍ଯ୍ୟ ପଦବାଚ୍ୟ ହୋଇନପାରେ ।

"ଏ ଆଦି ଯେତେ ଅବତାର । ସବୁ କାମ୍ୟ ରୂପବର୍ଗର ॥" [ଜ. ଚ.]

ଜଗନ୍ନାଥ ନିର୍ଗୁଣ ଏବଂ ନିସ୍ପୃହ । ତେଣୁ ତାଙ୍କର ପୁରୁଷୋତ୍ତମ ଲୀଳା ହେଉଛି ମାଧୁର୍ଯ୍ୟ ଲୀଳା ।

"ମାଧୁର୍ଯ୍ୟ ଭାବେ ବିଦ୍ୟମାନ । ନିସ୍ପୃହ ଜଗନ୍ନାଥ ଜାଣ ॥
ଏଣୁ ମଧୁର ଆସ୍ୱାଦନ । କୋଟି ସ୍ୱର୍ଗରେହିଁ ସମାନ ॥
କେବଳ ପରବ ତଥିରେ । ଐଶ୍ୱର୍ଯ୍ୟବେଶ ଦେଖା ମିଳେ ॥
ତାହା ତାଙ୍କର ଅବାଞ୍ଛିତ । ଭକତ ପାଇଁ ହୁଅନ୍ତି ତ ॥"
[ଜ. ଚ. ୨୧୧]

ଶ୍ରୀକୃଷ୍ଣ ବୃନ୍ଦାବନ ଲୀଳାରେ ଗୋବର୍ଦ୍ଧନ ଧାରଣ, କାଳୀୟ ଦମନ, ବସ୍ତ୍ରାହରଣ ଏବଂ ରାସଲୀଳାରେ ଷୋଳ ସହସ୍ର ଗୋପବାଳୀଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ଏକ ସମୟରେ ନିଜର ସାନ୍ନିଧ ପ୍ରଦାନ ଆଦି ନାନା ବିଭୂତି ପ୍ରଦର୍ଶନ କରିଥିଲେ । ତେଣୁ ତାଙ୍କର ଏ ଲୀଳା ଐଶ୍ୱର୍ଯ୍ୟ ଲୀଳା । ଜଗନ୍ନାଥ ନିର୍ଗୁଣ, ନିରାକାର ଓ ନିରଞ୍ଜନ । ସୁତରାଂ ତାହାଙ୍କର ପୁରୁଷୋତ୍ତମ ଲୀଳା ମାଧୁର୍ଯ୍ୟାଶ୍ରିତ । ଉତ୍କଳୀୟ ବୈଷ୍ଣବମାନଙ୍କର ଏ ଯୁକ୍ତି କଦାପି ନିରାଧାର ହୋଇନପାରେ ।

**ଭକ୍ତର ଶ୍ରେଣୀ ବିଭାଗ :**

'ଜଗନ୍ନାଥଚରିତାମୃତ'ରେ ଭକ୍ତମାନଙ୍କୁ ତିନିଗୋଟି ଶ୍ରେଣୀରେ ବିଭକ୍ତ କରାଯାଇଅଛି । ଯଥା : ନିତ୍ୟସିଦ୍ଧ, ସାଧନସିଦ୍ଧ ଏବଂ କୃପାସିଦ୍ଧ । ଯେଉଁମାନେ ନିର୍ଗୁଣ ପୁରୁଷୋତ୍ତମ ଭଜନରେ ରତ ସେମାନେ ନିତ୍ୟସିଦ୍ଧ, ଯେଉଁମାନେ ରାମାଦି ଅବତାରମାନଙ୍କ ଭଜନରେ ରତ ସେମାନେ ସାଧନସିଦ୍ଧ ଏବଂ ଯେଉଁମାନେ ସର୍ବଘଟରେ ହରିଦର୍ଶନ କରନ୍ତି ସେମାନେ କୃପାସିଦ୍ଧ । ଉତ୍କଳୀୟ ବୈଷ୍ଣବ ଧର୍ମର ଇତିହାସରେ ଜଗନ୍ନାଥ ଦାସ ନିତ୍ୟସିଦ୍ଧ ଏବଂ ବଳରାମ ଦାସ କୃପାସିଦ୍ଧ ଭକ୍ତ ଭାବରେ ସୁପରିଚିତ ।

## (ଗ) ବାହ୍ୟାଚାର

ଧର୍ମ ମୁଖ୍ୟତଃ ଅପରୋକ୍ଷାନୁଭୂତିର ବିଷୟ ହେଲେ ମଧ୍ୟ ସବୁ ଧର୍ମରେ କେତେକ ବାହ୍ୟ ଆଚାର ଅନୁଷ୍ଠାନ ପ୍ରତି ଗୁରୁତ୍ୱ ଆରୋପ କରାଯାଇଥାଏ ।

ଜଗନ୍ନାଥ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ଅତିବଡ଼ୀ ସମ୍ପ୍ରଦାୟର ମଧ୍ୟ କେତେକ ବିଶିଷ୍ଟ ଆଚରଣ ବିଧି ଅଛି । ଜଗନ୍ନାଥ ଦାସଙ୍କ 'ବୈଷ୍ଣବାଗମର ପଦ୍ଧତି', 'ନିତ୍ୟାଗମର ପଦ୍ଧତି' ଏବଂ ଦିବାକର ଦାସଙ୍କର 'ଜଗନ୍ନାଥ ଚରିତାମୃତ' ଆଦି ଗ୍ରନ୍ଥରେ ଏଗୁଡ଼ିକର ସବିଶେଷ ବିବରଣୀ ପ୍ରଦତ୍ତ ହୋଇଅଛି । ଏହି ଆଗମର ଅନୁଷ୍ଠାନମାନଙ୍କ ମଧ୍ୟରେ ସବୁଠାରୁ ଉଲ୍ଲେଖଯୋଗ୍ୟ ହେଉଛି ହରେରାମାଦି ଷୋଡ଼ଶାକ୍ଷରଯୁକ୍ତ ମନ୍ତ୍ରର ଜପ ଓ ଭଜନ ।

"ହେ ଷୋଳ ଶିଷ୍ୟ ଶୁଣ ମୋର । ଏ ମନ୍ତ୍ରରାଜ ହୃଦେ ଧର ॥
ଲେଉଟି ଜନମ ନୋହିବ । ନିତ୍ୟେ ନିତ୍ୟସୁଖ ପାଇବ ॥"

[ଜ. ଚ. ୨୦୨]

ଏହା ବ୍ୟତୀତ ନିତ୍ୟ ନିର୍ମାଲ୍ୟସେବନ, ତୁଳସୀମାଳାଧାରଣ, ମସ୍ତକରେ ହରିମନ୍ଦିର ଏବଂ ବାହୁଦ୍ୱୟରେ ଶଙ୍ଖ-ଚକ୍ର-ଚିହ୍ନିତ ତିଳକ-ଧାରଣ, ଯୁଗଳ ଗାୟତ୍ରୀ ଜପ, ସ୍ତୁତିପାଠ ଏବଂ ନାମ ସଙ୍କୀର୍ତ୍ତନ ଆଦି ଆଚରଣ ବିଧି ଅତିବଡ଼ୀ ସମ୍ପ୍ରଦାୟର ଭକ୍ତମାନଙ୍କର ଅବଶ୍ୟ ପାଳନୀୟ । ଦିବାକର ଦାସ ଏଥି ସମ୍ପର୍କରେ ଜଗନ୍ନାଥ ଦାସଙ୍କ ସାଧନପ୍ରଣାଳୀ ସମ୍ବନ୍ଧରେ ଉଲ୍ଲେଖ କରିବାକୁ ଯାଇ କହିଅଛନ୍ତି ।

"ଦେବେ ପାଇଲେ ଜଗନ୍ନାଥ । ଋଷେ ପାଇଲେ ପ୍ରେମପଥ ॥
ସ୍ୱକୀୟା ଧର୍ମ ଆଶ୍ରେ କଲେ । ସଂସାରେ ଉଦିତ ହୋଇଲେ ॥"

ଏହା ହିଁ ହେଉଛି ଜଗନ୍ନାଥ ଦାସଙ୍କ ସାଧନ ପ୍ରଣାଳୀର ସାରସତ୍ୟ ।

## (ଘ) ଦର୍ଶନ

ଧର୍ମର ମୂଳଭିତ୍ତି ହେଉଛି ଦର୍ଶନ; କାରଣ ତତ୍ତ୍ୱଜିଜ୍ଞାସା ବିନା ଧର୍ମ-ଜିଜ୍ଞାସାର କୌଣସି ଅର୍ଥ ନାହିଁ । ଦର୍ଶନର ଆଲୋକରେ କେବଳ ବିଧି-ନିଷେଧାତ୍ମକ ଶୁଷ୍କ ଓ ନୀରସ ଧର୍ମାଗମସମୂହ ଅର୍ଥବାନ୍ ଏବଂ ପ୍ରାଣବନ୍ତ ହୋଇଥାଏ । କୌଣସି ଧର୍ମର ପ୍ରକୃତ ସ୍ୱରୂପ ହୃଦୟଙ୍ଗମ କରିବାକୁ ହେଲେ ସେହି ଧର୍ମର ଅନ୍ତର୍ନିହିତ ଦର୍ଶନର ଅନୁଶୀଳନ ଏକାନ୍ତ ଆବଶ୍ୟକ । ଉଦାହରଣ ସ୍ୱରୂପ ରାମାନୁଜଙ୍କ ଦ୍ୱାରା ପ୍ରତିଷ୍ଠିତ ଶ୍ରୀବୈଷ୍ଣବ ସମ୍ପ୍ରଦାୟର

'ପ୍ରତିବିମ୍ବବାଦ'ର ଯଥାର୍ଥତା ହୃଦୟଙ୍ଗମ କରିବାକୁ ହେଲେ ବଶିଷ୍ଟାଦ୍ୱୈତବାଦର ମୂଳତତ୍ତ୍ୱ ସମ୍ବନ୍ଧରେ କିଞ୍ଚିତ୍ ଧାରଣା ଥିବା ଆବଶ୍ୟକ । 'ଅଚିନ୍ତ୍ୟ-ଭେଦାଭେଦବାଦ୍' ସମ୍ବନ୍ଧରେ ଧାରଣା ନ ଥିଲେ ଗୌଡ଼ୀୟ ବୈଷ୍ଣବ ଧର୍ମ ପ୍ରତିପାଦିତ ରାଧାକୃଷ୍ଣ ପ୍ରେମଲୀଳାର ସାରବତ୍ତା ହୃଦୟଙ୍ଗମ କରିବା ମଧ୍ୟ କଠିନ । ତେଣୁ ଜଗନ୍ନାଥ ଦାସଙ୍କ ଦ୍ୱାରା ପ୍ରଚାରିତ ଧର୍ମମାର୍ଗର ମହତ୍ତ୍ୱ ପ୍ରତିପାଦନ ନିମିତ୍ତ ତାହାଙ୍କ ଦାର୍ଶନିକ ମତବାଦର ଅନୁଶୀଳନ ଏକାନ୍ତ ପ୍ରୟୋଜନୀୟ । ଏହି ଅଧ୍ୟାୟରେ ପରଦେବତା ନିରୂପଣ ପ୍ରସଙ୍ଗରେ ଏ ସମ୍ବନ୍ଧରେ କିଞ୍ଚିତ୍ ଆଭାସ ଦିଆଯାଇଛି । ଏହି ମତାନୁଯାୟୀ ଉତ୍କଳୀୟ ବୈଷ୍ଣବ ଧର୍ମର ପରଦେବତା ଜଗନ୍ନାଥ ହେଉଛନ୍ତି ବେଦାନ୍ତ ଓ ଉପନିଷଦ୍ ପ୍ରତିପାଦିତ ପରଂବ୍ରହ୍ମ ।

"ସେ ଯେଉଁ ନାଦ ବିନ୍ଦୁ ଯୁକ୍ତ । ଓଁକାର ସ୍ୱୟଂ ମୂର୍ତ୍ତିମନ୍ତ ॥
ଶୂନ୍ୟରେ ରହି ବିହରନ୍ତ । ସେହି ପରମ ବ୍ରହ୍ମମୂର୍ତ୍ତି ॥
ପାଦପାଣ୍ଟୁ ସ୍କନ୍ଧ ଉର । ଉଦର ବକ୍ଷ ଗ୍ରୀବା ଶିର ॥
ନଥାଇ କେବଳ ଅକ୍ଷର । ରୂପରେ ଅଛନ୍ତି ବିସ୍ତର ॥"

ଇ. ଚ. ୩୦୨]

ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ ଜଗନ୍ନାଥ ଦାସ ବେଦାନ୍ତର ଅଦ୍ୱୈତବାଦୀ ଚିନ୍ତାଧାରାଦ୍ୱାରା ଗଭୀରଭାବରେ ପ୍ରଭାବିତ ହୋଇଥିଲେ । ତାହାଙ୍କ ରଚିତ ଭାଗବତ, ଷୋଳଚଉପଦୀ, ତୁଳାଭିଣା ଓ ଅର୍ଥ କୋଇଲି ଆଦି ଗ୍ରନ୍ଥର ଅଧ୍ୟୟନରୁ ମଧ୍ୟ ଏହା ସ୍ପଷ୍ଟ ପ୍ରତିପାଦିତ ହୁଏ । ବେଦାନ୍ତର ଅଦ୍ୱୈତବାଦ ଅନୁଯାୟୀ ଏ ବିଶ୍ୱ ସୃଷ୍ଟିର ଚରମ ସତ୍ୟ ଏବଂ ପରମତତ୍ତ୍ୱ ହେଉଛି ବ୍ରହ୍ମ । ବ୍ରହ୍ମ ଛଡ଼ା ଆଉ କିଛି ନାହିଁ (ନେହ ନାନାସ୍ତି କିଞ୍ଚନ) । ସେ ଏକ ଏବଂ ଅଦ୍ୱିତୀୟ । ଏ ବିଶ୍ୱବ୍ରହ୍ମାଣ୍ଡରେ ଯାହା କିଛି ଅଛି, ସେସବୁ ବ୍ରହ୍ମ । (ସର୍ବଂମିଦଂ ଖଳୁବ୍ରହ୍ମ—ଛାନ୍ଦୋଗ୍ୟ) । "ତୁମ୍ଭେ ସେହି ବ୍ରହ୍ମ" । "ଏହି ଆତ୍ମା ସେହି ବ୍ରହ୍ମ ।" ଜୀବାତ୍ମା ଏବଂ ପରମାତ୍ମା ଏକ ଏବଂ ଅଭିନ୍ନ । ଘଟାକାଶ ଯେପରି ମହାକାଶଠାରୁ ଭିନ୍ନ ନୁହେଁ ଏବଂ ଜଳରେ ପ୍ରତିବିମ୍ବିତ ଚନ୍ଦ୍ର ଯେପରି ମୂଳଚନ୍ଦ୍ରଠାରୁ ଭିନ୍ନ ନୁହେଁ, ସେହିପରି ଜୀବାତ୍ମା ପରମାତ୍ମା ବା ବ୍ରହ୍ମଙ୍କଠାରୁ ଭିନ୍ନ ନୁହେଁ ।

ବ୍ରହ୍ମ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି-ସ୍ଥିତି-ଲୟର ମୂଳ କାରଣ । ସେ ବିଶ୍ୱବ୍ରହ୍ମାଣ୍ଡର ନିମିତ୍ତ ଓ ଉପାଦାନ କାରଣ ଅଟନ୍ତି । ଯେପରି ହାଣ୍ଡି ମାଟିରୁ ଭିନ୍ନ ନୁହେଁ କିମ୍ବା କୁଣ୍ଡଳାଦି ସ୍ୱର୍ଣ୍ଣାଳଙ୍କାର ସୁନାଠାରୁ ଭିନ୍ନ ନୁହେଁ, ବିଶ୍ୱବ୍ରହ୍ମାଣ୍ଡ ସେହିପରି ବ୍ରହ୍ମରୁ ଅଭିନ୍ନ । ତାହା ବ୍ରହ୍ମରୁ ଉତ୍ପନ୍ନ, ବ୍ରହ୍ମରେ ଧୃତ ଏବଂ ବ୍ରହ୍ମରେ ବିଲୀନ ହୁଏ । ବିଶ୍ୱବ୍ରହ୍ମାଣ୍ଡ ମୂଳତଃ ବ୍ରହ୍ମ ଏବଂ ବ୍ରହ୍ମ ଉପରେ ନିର୍ଭରଶୀଳ । ବ୍ରହ୍ମ ବିନା ଏହାର କୌଣସି ଅସ୍ତିତ୍ୱ ନାହିଁ । ଆଚାର୍ଯ୍ୟ ଶଙ୍କରଙ୍କ ମତରେ ଅଳଙ୍କାର ଯେପରି ସୁନାର ରୂପାନ୍ତର କିମ୍ବା ହାଣ୍ଡି ଯେପରି ମାଟିର ରୂପାନ୍ତର, ବିଶ୍ୱବ୍ରହ୍ମାଣ୍ଡ ସେହିପରି ବ୍ରହ୍ମଙ୍କର ରୂପାନ୍ତର ବା ପରିଣାମ ନୁହେଁ । ରଜ୍ଜୁରେ ସର୍ପଭ୍ରମ ପରି ଏହି ନାମରୂପାତ୍ମକ ବିଶ୍ୱବ୍ରହ୍ମାଣ୍ଡ ଏକ ଅଧ୍ୟାସ ବା ଭ୍ରମ ମାତ୍ର । ଏହା ସତ୍ୟ ବୋଲି ଜଣାପଡ଼ିଲେ ମଧ୍ୟ ସତ୍ୟ ନୁହେଁ । ଦାର୍ଶନିକ ଭାଷାରେ କହିଲେ ଏ ବିଶ୍ୱସୃଷ୍ଟି ବ୍ୟାବହାରିକ ସତ୍ୟ; ପାରମାର୍ଥିକ ସତ୍ୟ ନୁହେଁ । ଅଜ୍ଞାନତା ହେତୁ ରଜ୍ଜୁ ଯେପରି ସର୍ପ ସଦୃଶ ପ୍ରତୀତ ହୁଏ, ଏକ ଏବଂ ଅଦ୍ୱିତୀୟ ବ୍ରହ୍ମ ସେହିପରି ଅବିଦ୍ୟା କାରଣରୁ ନାମ ରୂପାତ୍ମକ ବିଶ୍ୱବ୍ରହ୍ମାଣ୍ଡ ରୂପରେ ପ୍ରତିଭାତ ହୁଅନ୍ତି । ଦର୍ଶନଶାସ୍ତ୍ରରେ ଏହାକୁ ବିବର୍ତ୍ତବାଦ (ଏକ ବସ୍ତୁରେ ଅନ୍ୟ ବସ୍ତୁର ଆଭାସ) କୁହାଯାଏ । ରଜ୍ଜୁ ଯେପରି ଭ୍ରମାତ୍ମକ କଳ୍ପିତ ସର୍ପର ଆଶ୍ରୟଭୂମି, ବ୍ରହ୍ମ ସେହିପରି ପରିଦୃଶ୍ୟମାନ ମିଥ୍ୟା ଜଗତର ମୂଳରେ ରହି ତାହାକୁ ସତ୍ୟର ସାଦୃଶ୍ୟ ପ୍ରଦାନ କରନ୍ତି । ସଂସାର ମିଥ୍ୟା (ଅସତ୍) ମାତ୍ର, ସତ୍ୟରୂପୀ ବ୍ରହ୍ମଙ୍କଠାରୁ ଉଦ୍ଭୂତ ଅବିଦ୍ୟା ବା ମାୟା ସଙ୍ଗେ ସଂଯୁକ୍ତ ହୋଇ ଏହା ସତ୍ୟ ଭଳି ପ୍ରତୀୟମାନ ହୁଏ । ଏହାର ନାମ ଅଧ୍ୟାସ ଅର୍ଥାତ୍ ବସ୍ତୁ ନ ଥିବାଠାରେ ଥିବା ପରି ଦେଖାଯିବା । ମାୟା ହେଉଛି ଭଗବାନଙ୍କର ଶକ୍ତି । ଏହା ତ୍ରିଗୁଣାତ୍ମିକା ଏବଂ ଅବିଚିନ୍ତ୍ୟ । ଏହା ଅବିଦ୍ୟା ଓ ପ୍ରକୃତି ନାମରେ ମଧ୍ୟ ପରିଚିତ । ମାୟାର ଶକ୍ତି ଦ୍ୱିବିଧ; ଯଥା: ଆବରଣ ଏବଂ ବିକ୍ଷେପ । ମାୟା ଆବରଣ ଶକ୍ତିଯୁକ୍ତ ହେଲେ ତାର ନାମ ହୁଏ ଅବିଦ୍ୟା ଏବଂ ତାହା ହେଉଛି ଜୀବର ଉପାଧି । କିନ୍ତୁ ମାୟା ବା ପ୍ରକୃତି ବିକ୍ଷେପଶକ୍ତି ଯୁକ୍ତହେଲେ ତାର ନାମ ହୁଏ ମାୟା । ମାୟା ଈଶ୍ୱରଙ୍କର ଉପାଧି । ଜୀବକୁ ଆଚ୍ଛନ୍ନ କରି ରଖିଥିବା ମାୟା ଯବନିକା ଅପସାରିତ ହେଲେ ଜୀବ ନିଜକୁ ବ୍ରହ୍ମଙ୍କ ସହିତ

ଏକ ଏବଂ ଅଭିନ୍ନ ବୋଲି ଜାଣିପାରେ । ଏହାର ନାମ ବ୍ରହ୍ମପ୍ରାପ୍ତି ବା ବ୍ରାହ୍ମୀସ୍ଥିତି । ତେଣୁ ବ୍ରହ୍ମ ହିଁ ଏକମାତ୍ର ସତ୍ୟ ଏବଂ ତାଙ୍କ ବ୍ୟତୀତ ଅନ୍ୟ ସମସ୍ତ ଦ୍ୱୈତଭାବନା ଅଳୀକ, ମିଥ୍ୟା ଓ ପ୍ରାତିଭାସିକ । ଏ ବିଶ୍ୱ ବ୍ରହ୍ମମୟ । ସେ ବିଭୁ ଓ ସର୍ବବ୍ୟାପକ । ବିଶ୍ୱର ଅଧଃଊର୍ଦ୍ଧ୍ୱ, ଉତ୍ତର ଦକ୍ଷିଣ, ପୂର୍ବ-ପଶ୍ଚିମ, ଅଣୁ ପରମାଣୁ ସର୍ବତ୍ର ସେ ପୂରିରହିଛନ୍ତି । ସେ ସଚ୍ଚିଦାନନ୍ଦ । ତାଙ୍କର ରୂପ, ଗୁଣ, ଆକାର, କ୍ଷୟବୃଦ୍ଧି କିଛି ନାହିଁ । ସେ ସର୍ବଦା ସମ ଓ ପୂର୍ଣ୍ଣ । ତେଣୁ ନିର୍ଗୁଣ ଓ ନିରାକାର ହୋଇ ମଧ୍ୟ ସକଳ ଗୁଣ ଓ ସୌନ୍ଦର୍ଯ୍ୟର ଆଧାର । ଏପରି ପରସ୍ପରବିରୋଧୀ ଧର୍ମସମୂହର ସଂଯୋଗ କେବଳ ତାଙ୍କଠାରେ ସମ୍ଭବ । ଏହି ମତାନୁଯାୟୀ ପରିଦୃଶ୍ୟମାନ ନାମରୂପାତ୍ମକ ଜଗତର କୌଣସି ସ୍ୱତନ୍ତ୍ର ପାରମାର୍ଥିକ ସତ୍ତା ନାହିଁ । ଏହାର ଅସ୍ତିତ୍ୱ ବ୍ରହ୍ମ ବା ଆତ୍ମା ଉପରେ ନିର୍ଭରଶୀଳ । ଅବିଦ୍ୟା ବା ଅଜ୍ଞାନତା ହେତୁ ଆମେ ଏହାକୁ ସତ୍ୟ ବୋଲି ମନେକରିଥାଉ । ପୁନଶ୍ଚ ଜୀବାତ୍ମା କୌଣସିମତେ ପରମାତ୍ମାଙ୍କଠାରୁ ଭିନ୍ନ ନୁହେଁ । ଭ୍ରାନ୍ତି ଓ ଅଜ୍ଞାନରେ ମୁହ୍ୟମାନ ହୋଇ ସେ ନିଜକୁ ଚିହ୍ନିପାରେ ନାହିଁ । ଏହାହିଁ ଶଙ୍କର-ପ୍ରତିପାଦିତ ମାୟାବାଦ ।

ଚୈତନ୍ୟ ପ୍ରବର୍ତ୍ତିତ ଅଚିନ୍ତ୍ୟ ଭେଦାଭେଦବାଦଠାରୁ ଏହା ଭିନ୍ନ । ଏହି ମତାନୁଯାୟୀ ଅଦ୍ୱୈତବାଦ ପ୍ରତିପାଦିତ ଜୀବେଶ୍ୱର ଐକ୍ୟ ଗ୍ରହଣୀୟ ନୁହେଁ । ଜୀବ ଚିତ୍ (ବ୍ରହ୍ମ) ସଦୃଶ-ନିତ୍ୟ ହେଲେହେଁ ଈଶ୍ୱରଙ୍କର ବିଭୁତ୍ୱାଦି ଗୁଣ ତା'ଠାରେ ସମ୍ଭବପର ନୁହେଁ । ଈଶ୍ୱର ମାୟାଧୀଶ ଏବଂ ବିଭୁଚୈତନ୍ୟରୂପ । କିନ୍ତୁ ଜୀବ ମାୟାଧୀନ ଏବଂ ଅଣୁଚୈତନ୍ୟରୂପ । ଏଣୁ ଜୀବ ଈଶ୍ୱରଙ୍କଠାରୁ ସ୍ୱରୂପତଃ ଭିନ୍ନ । ପୁଣି ଜୀବ ଓ ଈଶ୍ୱରଙ୍କର ଏହି ଭେଦ ଘଟାକାଶ ଓ ମହାକାଶ କିମ୍ବା ବିମ୍ବ ପ୍ରତିବିମ୍ବ ପରି ପ୍ରାତିଭାସିକ ନୁହେଁ । ବ୍ରହ୍ମ ରୂପାଦିଧର୍ମ ଶୂନ୍ୟ ଏବଂ ସର୍ବବ୍ୟାପକ ହୋଇ ଥିବାରୁ ତାଙ୍କଠାରେ ବିମ୍ବ ପ୍ରତିବିମ୍ବ ଭାବ ସମ୍ଭବପର ନୁହେଁ । ଜୀବ ସ୍ୱରୂପ ଏବଂ ସାମର୍ଥ୍ୟ ଉଭୟ ଦୃଷ୍ଟିରୁ ଈଶ୍ୱରଙ୍କଠାରୁ ଭିନ୍ନ । ଈଶ୍ୱର ସେବ୍ୟ, ଜୀବ ସେବକ । ଈଶ୍ୱର ଉପାସ୍ୟ, ଜୀବ ଉପାସକ । ଏହି ଜୀବେଶ୍ୱର ଭେଦ ବାସ୍ତବ ଏବଂ ନିତ୍ୟ । ସାଧନାଦ୍ୱାରା ମାୟାର ଅବସାନ ପରେ ମଧ୍ୟ ଏ ଭେଦ ବିଦ୍ୟମାନଥାଏ । ଏହି ମତବାଦ 'ଅଚିନ୍ତ୍ୟଭେଦାଭେଦବାଦ'

ନାମରେ ପରିଚିତ । ଚିତ୍ ସ୍ୱରୂପରେ ଜୀବ ଈଶ୍ୱରଙ୍କଠାରୁ ଅଭିନ୍ନ ହେଲେହେଁ ଅଣୁତ୍ୱ ଏବଂ ମାୟାଧୀନତା ହେତୁ ତାଙ୍କ ଠାରୁ ଭିନ୍ନ । ଯଥାର୍ଥରେ ଜୀବେଶ୍ୱର ସମ୍ବନ୍ଧ ଐକାନ୍ତିକ ଭେଦ ନୁହେଁ କିମ୍ବା ପରିପୂର୍ଣ୍ଣ ଅଭେଦ ମଧ୍ୟ ନୁହେଁ । ଏହା ଏକ ଅଚିନ୍ତ୍ୟ ଭେଦାଭେଦ ସମ୍ବନ୍ଧ । * ଅଚିନ୍ତ୍ୟ ଭେଦାଭେଦବାଦ ଅନୁଯାୟୀ ବିଶ୍ୱସୃଷ୍ଟି-ରଜ୍ଜୁରେ ସର୍ପଭ୍ରମ ପରି ଅଳୀକ ବା ମିଥ୍ୟା ନୁହେଁ । ଏହା ସତ୍ୟ ଏବଂ ପରଂବ୍ରହ୍ମ ତତ୍ତ୍ୱର ବାସ୍ତବ ପରିଣାମ । ମୂଳତତ୍ତ୍ୱ ଅବିକୃତ ରହି ଅନ୍ୟରୂପ ପ୍ରାପ୍ତ ହେଲେ ତାହାକୁ ପରିଣାମ କହନ୍ତି । ବିଶ୍ୱବ୍ରହ୍ମାଣ୍ଡ ପରମତତ୍ତ୍ୱ ବ୍ରହ୍ମଙ୍କର ପରିଣାମ । ଏହା ବାସ୍ତବ ଏବଂ ସତ୍ୟ, ଅଧ୍ୟାସ ମାତ୍ର ନୁହେଁ; ବେଦାନ୍ତର ଏକଜୀବବାଦ ଅଚିନ୍ତ୍ୟଭେଦାଭେଦବାଦୀମାନେ ସ୍ୱୀକାର କରନ୍ତି ନାହିଁ ।

ଗୌଡ଼ୀୟ ବୈଷ୍ଣବମାନେ ଜଗନ୍ନାଥ ଦାସଙ୍କୁ ମାୟାବାଦୀରୂପେ ଅଭିହିତ କରୁଥିବାବେଳେ କେତେକ ଉତ୍କଳୀୟ ତାହାଙ୍କୁ ଅଚିନ୍ତ୍ୟ-ଭେଦାଭେଦବାଦୀ ବୋଲି ପ୍ରମାଣିତ କରିବାକୁ ବ୍ୟଗ୍ର । କିନ୍ତୁ ଦିବାକର ଦାସଙ୍କ 'ଜଗନ୍ନାଥ ଚରିତାମୃତ' ଏବଂ ଜଗନ୍ନାଥ ଦାସଙ୍କ 'ଭାଗବତ ଓ ତୁଳାଭିଣା' ଆଦି ଗ୍ରନ୍ଥ ପାଠରୁ ଜଣାଯାଏ ଯେ ସେ ଚୈତନ୍ୟପ୍ରବର୍ତ୍ତିତ ଅଚିନ୍ତ୍ୟ-ଭେଦାଭେଦବାଦର ଅନୁଯାୟୀ ନ ଥିଲେ । ଦର୍ଶନ ଦୃଷ୍ଟିରୁ ସେ ଥିଲେ, ଅଦ୍ୱୈତବାଦୀ ଏବଂ ସାଧନାରେ ସେ ଥିଲେ ଭକ୍ତ । ସେଥିପାଇଁ ସେ ଭାଗବତ ରଚନାରେ ପ୍ରଖ୍ୟାତ ଅଦ୍ୱୈତବାଦୀ ଶ୍ରୀଧରସ୍ୱାମୀଙ୍କ ଭାଗବତ ଟୀକା ଭାବାର୍ଥ-ଦୀପିକାର ଅନୁସରଣ କରିଅଛନ୍ତି । ଶ୍ରୀଧରସ୍ୱାମୀ ପୁରୀ ଗୋବର୍ଦ୍ଧନ ମଠର ମହନ୍ତ ଥିଲେ ଏବଂ ଅଦ୍ୱୈତବାଦର ପରମ ଆଚାର୍ଯ୍ୟ ଶଙ୍କରଙ୍କର ଅନୁଯାୟୀ ଥିଲେ । ତାହାଙ୍କ ଭାଗବତ ଟୀକାରେ ସେ ଶଙ୍କରଙ୍କ ଅଦ୍ୱୈତବାଦ ସହିତ ଭକ୍ତିବାଦର ସମନ୍ୱୟ ସାଧନ କରିଅଛନ୍ତି । ଅବଶ୍ୟ ଗୌଡ଼ୀୟ ବୈଷ୍ଣବଗଣ ତାହାଙ୍କୁ ଅଚିନ୍ତ୍ୟଭେଦାଭେଦବାଦୀ ବୋଲି ପ୍ରମାଣ କରିବାକୁ ବହୁ ଆୟାସ ସ୍ୱୀକାର କରିଅଛନ୍ତି । ଶ୍ରୀମତ୍ ଜୀବ ଗୋସ୍ୱାମୀଙ୍କ ମତରେ, ଶ୍ରୀଧର ମାୟାବାଦୀ-ମାନଙ୍କୁ ଭକ୍ତିବାଦ ପ୍ରତି ଆକୃଷ୍ଟ କରିବା ଉଦ୍ଦେଶ୍ୟରେ ସ୍ଥଳ ବିଶେଷରେ

---

*ତତ୍ତ୍ୱସନ୍ଦର୍ଭ—ଜୀବଗୋସ୍ୱାମୀ-ପୃ ୮୯

ଭାଗବତର ଅଦ୍ୱୈତବ୍ୟାଖ୍ୟା କରିଅଛନ୍ତି । କିନ୍ତୁ ଏହା ଠିକ୍ ନୁହେଁ । ଶ୍ରୀଧରସ୍ୱାମୀଙ୍କ ପରି ପରମ ବୈଷ୍ଣବଙ୍କ ପକ୍ଷରେ ଏ ପ୍ରକାର କପଟାଚରଣ ସମ୍ଭବପର ନୁହେଁ ।

ଜଗନ୍ନାଥ ଦାସ ଶ୍ରୀଧରଙ୍କ ପଦାଙ୍କ ଅନୁସରଣ କରି ତାହାଙ୍କ ଭାଗବତରେ ଅଦ୍ୱୈତବ୍ରହ୍ମବାଦ ଏବଂ ଜୀବେଶ୍ୱର ଅଭେଦତ୍ୱ ପ୍ରତିପାଦନ କରିଅଛନ୍ତି । ଶ୍ରୀମଦ୍ ଭାଗବତର ପ୍ରଥମ ଶ୍ଳୋକରେ ପରଦେବତା ନିର୍ଣ୍ଣୟ ପ୍ରସଙ୍ଗରେ ସେ ଲେଖିଅଛନ୍ତି ।

"ନମଇଁ ନୃସିଂହ ଚରଣ । ଅନାଦି ପରମ କାରଣ ॥
ଯା ବିନୁ ଆଦି ମଧ୍ୟ ଅନ୍ତ । ବିଶ୍ୱରେ ନ ଘଟେ ଜଗତ ॥
ଇନ୍ଦ୍ରିୟ ଅର୍ଥ ଯେ ଜାଣଇ । ସ୍ୱତେଜେ ନିତ୍ୟ ପ୍ରକାଶଇ ॥
ଆନନ୍ଦ ମନେ ବେଦ ସାର । ବ୍ରହ୍ମାରେ କଲା ଯେ ବିସ୍ତାର ॥
ଯାହାର ରୂପ ହୃଦେ ଚିନ୍ତି । ବେଦ ପୁରୁଷ ନ ଜାଣନ୍ତି ॥
ମୃତ୍ତିକା ବିକାର ଯେମନ୍ତ । ଜଳରେ ହୁଅଇ କଳିତ ॥
ଜଳେ ଉପଳ ବୁଦ୍ଧି କରି । ମୃଗତୃଷ୍ଣାରେ ଯେହ୍ନେ ବାରି ॥
ରୂପ ଅରୂପ ସ୍ଥିତି ଭିନ । ଯାହା ଗୋଚରେ ଅନୁମାନ ॥
ସ୍ୱଭାବେ ନୋହେ ସେ ତେମନ୍ତ । ଏ ସାଙ୍ଖ୍ୟ ଯୋଗୀଙ୍କର ମତ ॥
ଆତ୍ମା ପ୍ରକାଶେ ସଦା ଥାଇ । ନିରସ୍ତ କୁହକ ବୋଲଇ ॥
ସତ୍ୟ ପରମାନନ୍ଦ ହରି । ଯା ଭାବେ ଭବ ସତ୍ୟ କରି ॥
ଏମନ୍ତ ସତ୍ୟ ରୂପ ସାର । ତା ପାଦେ ମୋର ନମସ୍କାର ॥"

ଏହାର ତାତ୍ପର୍ଯ୍ୟ ହେଉଛି ଯେ, ଏକ ଏବଂ ଅଦ୍ୱିତୀୟ ପରମତତ୍ତ୍ୱ ବ୍ରହ୍ମ ହିଁ ଏକମାତ୍ର ସତ୍ୟ । ବ୍ରହ୍ମ ବିନା ଆଉ ସବୁ ଅର୍ଥାତ୍ ଏହି ପରିଦୃଶ୍ୟମାନ ସୃଷ୍ଟିସ୍ଥିତିଲୟାତ୍ମକ ଜଗତ ମିଥ୍ୟା ବା ଭ୍ରମ । ଯେପରି ତେଜର ବିକାର ମୃଗତୃଷ୍ଣା ଓ ମୃତ୍ତିକାର ବିକାର କାଚ୍ଚଦରେ ଜଳ ଭ୍ରମ ଏବଂ ଜଳର ବିକାର କରକାରେ ଉପଳ ଭ୍ରମ ଅସତ୍ୟ ହେଲେ ହେଁ ତେଜ, ଜଳ ଓ ମୃତ୍ତିକାର ଆପାତସତ୍ୟତା ହେତୁ ସତ୍ୟ ବୋଲି ପ୍ରତୀତ ହୋଇଥାଏ, ସେହିପରି

ବ୍ରହ୍ମଙ୍କର ସତ୍ୟତା ହେତୁ ଏହି ମିଥ୍ୟା ଜଗତ ସତ୍ୟସଦୃଶ ପ୍ରତୀୟମାନ ହୋଇଥାଏ । ବିଶ୍ୱବ୍ରହ୍ମାଣ୍ଡ ବସ୍ତୁତଃ ମିଥ୍ୟା ବା ଅସତ୍ ହୋଇ ମଧ୍ୟ ସତ୍ୟ ବୋଲି ପ୍ରତୀୟମାନ ହେବାର କାରଣ ହେଉଛି ମାୟା ବା ଅବିଦ୍ୟା । ଏହାଦ୍ୱାରା ଜଗନ୍ନାଥ ଦାସ ବେଦାନ୍ତ ପ୍ରତିପାଦିତ ଅଦ୍ୱୈତବାଦ ଓ ମାୟାବାଦକୁ ଗ୍ରହଣ କରିବା ସଙ୍ଗେ ସଙ୍ଗେ ସାଙ୍ଖ୍ୟ ପ୍ରତିପାଦିତ ପ୍ରକୃତି-ପରିଣାମବାଦକୁ ପ୍ରତ୍ୟାଖ୍ୟାନ କରିଦେଇଅଛନ୍ତି । ଶୁକଦେବାଚାର୍ଯ୍ୟ ତାଙ୍କ ଶ୍ରୀମଦ୍ ଭାଗବତର ଟୀକା— 'ସିଦ୍ଧାନ୍ତ ପ୍ରଦୀପ'ରେ 'ଜଗତ୍ ସତ୍ୟମ୍' ବୋଲି କହିଅଛନ୍ତି । କିନ୍ତୁ ଜଗନ୍ନାଥ ଦାସ ଶ୍ରୀଧରଦର୍ଶିତ ସରଣି ଅନୁସରଣ ପୂର୍ବକ ମୂଳ ଭାଗବତର ଆଶୟ ଅନୁଯାୟୀ ଦ୍ୱୈତବାଦୀ ଓ ଅଚିନ୍ତ୍ୟଭେଦାଭେଦବାଦୀମାନଙ୍କର ପରିଣାମ-ବାଦକୁ ପ୍ରତ୍ୟାଖ୍ୟାନ କରିଦେଇଅଛନ୍ତି ଏବଂ ଶଙ୍କର ପ୍ରତିପାଦିତ ଅଦ୍ୱୈତ-ବାଦୀ ବ୍ୟାଖ୍ୟା ଗ୍ରହଣ କରିଅଛନ୍ତି । ପ୍ରଥମ ସ୍କନ୍ଧ ଦ୍ୱିତୀୟ ଅଧ୍ୟାୟରେ ଧର୍ମ ଜିଜ୍ଞାସା ଓ ତତ୍ତ୍ୱ ଜିଜ୍ଞାସା ପ୍ରସଙ୍ଗରେ ଜଗନ୍ନାଥ ଦାସ ଲେଖିଅଛନ୍ତି—

"ଜୀବର ତତ୍ତ୍ୱ ଜାଣିବାର । କେବଳ ପରମାର୍ଥ ସାର ॥
ତତ୍ତ୍ୱ ବିଚାର ଜ୍ଞାନୀ ଯେତେ । ଜ୍ଞାନ କହନ୍ତି ଏ ଜଗତେ ॥
କେହୁ କହନ୍ତି ବ୍ରହ୍ମତତ୍ତ୍ୱ । କେହୁ ବା କହେ ପରମାତ୍ମ ॥
କେହୁ କହନ୍ତି ଭଗବାନ । ନିର୍ମଳ ଅଦ୍ୱୟ ଯେ ଜ୍ଞାନ ॥"

[ଭା ୧-୨-୧୨]

ଅର୍ଥାତ ଏକ ପରମ ତତ୍ତ୍ୱକୁ ଜ୍ଞାନୀମାନେ ବ୍ରହ୍ମ, ଯୋଗୀମାନେ ପରମାତ୍ମା ଓ ଭକ୍ତମାନେ ଭଗବାନ ନାମରେ ଅଭିହିତ କରିଥାନ୍ତି । ଏକ ଦୁଧ ଆଖିକୁ ଧଳା ଦିଶିବା ଓ ପାଟିକୁ ମିଠା ଲାଗିବା ପରି ଉପାସକର ଦୃଷ୍ଟିଭଙ୍ଗୀ ଅନୁଯାୟୀ ଏକ ଅଦ୍ୱୟ ଜ୍ଞାନ ବିବିଧ ସଂଜ୍ଞାରେ ସଞ୍ଜିତ ହୋଇଥାଏ । ଅଚିନ୍ତ୍ୟ ଭେଦାଭେଦବାଦୀମାନେ 'ଅଦ୍ୱୟ' ଶବ୍ଦକୁ ଏକ ଏବଂ ଅଦ୍ୱିତୀୟ ଅର୍ଥରେ ଗ୍ରହଣ ନ କରି ଯାହାଙ୍କ ସଦୃଶ ଦ୍ୱିତୀୟ କେହି ନାହିଁ, ଅର୍ଥରେ ଗ୍ରହଣ କରିଅଛନ୍ତି । ସ୍ୱମତ ପ୍ରତିପାଦନ ପାଇଁ ସେମାନେ ଏପରି କରିଅଛନ୍ତି । ଜଗନ୍ନାଥ ଦାସ "ନିର୍ମଳ ଅଦ୍ୱୟ ଯେ ଜ୍ଞାନ" କହିବାଦ୍ୱାରା ବୈଦାନ୍ତିକ

ଅଦ୍ୱୈତବାଦର ସମର୍ଥନ କରିଅଛନ୍ତି । ପ୍ରଥମ ସ୍କନ୍ଧ ତୃତୀୟ ଅଧ୍ୟାୟ ୩୩ ଶ୍ଳୋକରେ ଜୀବେଶ୍ୱର ଐକ୍ୟ ପ୍ରତିପାଦନ କରିବାକୁ ଯାଇ ସେ କହିଅଛନ୍ତି—

"ଏ ସ୍ଥୂଳ ସୂକ୍ଷ୍ମ ରୂପ ଯେତେ । ସମ୍ଭବେ ବିଷ୍ଣୁ ମାୟା ଗତେ ॥
ଆତ୍ମାରେ କଳ୍ପିତ ଶରୀର । ଏ ତତ୍ତ୍ୱ ବ୍ରହ୍ମର ବିଗ୍ରହ ॥
ମାୟା ମିଶ୍ରିତ ଭାବ ଯେବେ । ନିରସ୍ତ ହୋଇ ଜ୍ଞାନ ଭାବେ ॥
ଜୀବ ପରମ ଏକ ଦେଖେ । ନିଷ୍ଟଳେ ମହିମା ନିରେଖେ ॥"

ବିଶ୍ୱ ବ୍ରହ୍ମାଣ୍ଡର ସ୍ଥୂଳ ସୂକ୍ଷ୍ମାଦି ଯାବତୀୟ ରୂପ ଏବଂ ଦେହାଭିମାନର ମୂଳ କାରଣ ମାୟା ବା ଅବିଦ୍ୟା । ଶ୍ରବଣ, ମନନ ଓ ଆରାଧନାଦି ଦ୍ୱାରା ଜ୍ଞାନର ଉଦୟରେ ଏହି ମାୟାଯବନିକା ଅପସାରିତ ହୋଇଗଲେ ଜୀବ ବ୍ରହ୍ମତ୍ୱ ପ୍ରାପ୍ତ ହୁଏ । ଏହାକୁ ବ୍ରହ୍ମଦର୍ଶନ କହନ୍ତି ।

"ଜୀବ ବ୍ରହ୍ମୈବ ଭବତୀତ୍ୟର୍ଥଃ, କଥଂଭୂତମ୍ ।
ଦର୍ଶନଂ ଜ୍ଞାନୈକସ୍ୱରୂପମ୍-ଶ୍ରୀଧର ॥"

'ବେଦାନ୍ତ ସାର' ଗ୍ରନ୍ଥରେ ଜୀବର ଏହି ବ୍ରହ୍ମପ୍ରାପ୍ତି ବିଷୟକୁ ଆହୁରି ସ୍ପଷ୍ଟ କରି କହାଯାଇଛି । "ମୁଁ ଶୁଦ୍ଧ ବୁଦ୍ଧ, ମୁକ୍ତ; ସତ୍ୟ ସ୍ୱଭାବ, ପରମାନନ୍ଦ, ଅନନ୍ତ, ଅଦ୍ୱୟ ବ୍ରହ୍ମ ଅଟେ—ଏହି ପ୍ରକାର ଅଖଣ୍ଡାକାର ଚିତ୍ତବୃତ୍ତି ଜାଗ୍ରତ ହୁଏ ।" [ବେ.ସା ୮୧] କିନ୍ତୁ ବିଶିଷ୍ଟାଦ୍ୱୈତବାଦୀ, ଅଚିନ୍ତ୍ୟ ଭେଦାଭେଦବାଦୀ ଓ ଦ୍ୱୈତବାଦୀମାନଙ୍କ ପକ୍ଷରେ ଏ ପ୍ରକାର ଅର୍ଥ ଗ୍ରହଣୀୟ ନୁହେଁ । ସେମାନେ ଜୀବ ବ୍ରହ୍ମର ଅଭେଦତ୍ୱ ସ୍ୱୀକାର କରନ୍ତି ନାହିଁ । ଅଚିନ୍ତ୍ୟ-ଭେଦାଭେଦବାଦୀ ଗୌଡ଼ୀୟ ଗୋସ୍ୱାମୀ ବିଶ୍ୱନାଥ ଚକ୍ରବର୍ତ୍ତୀ ଭାଗବତର ଏହି ଶ୍ଳୋକର "ବ୍ରହ୍ମଦର୍ଶନ" ଶବ୍ଦକୁ ବ୍ରହ୍ମସାକ୍ଷାତକାର ବା ସାମିପ୍ୟ ମୁକ୍ତି ଅର୍ଥରେ ଗ୍ରହଣ କରିଅଛନ୍ତି । ଅର୍ଥାତ୍ ଜୀବ ସେତେବେଳେ ନିଜର ଏବଂ ଭଗବତ୍ ସ୍ୱରୂପର ନିତ୍ୟତ୍ୱ ଉପଲବ୍ଧି କରେ । କିନ୍ତୁ "ଜୀବ ପରମ ଏକ ଦେଖେ" କହି ଜଗନ୍ନାଥ ଦାସ ଶ୍ରୀଧର ପ୍ରତିପାଦିତ ଅଦ୍ୱୈତ ମତ ଗ୍ରହଣ କରିଅଛନ୍ତି । ଏହି ଭାବକୁ ଆହୁରି ପରିସ୍ଫୁଟ କରିବାକୁ ଯାଇ ସେ ପୁଣି କହିଅଛନ୍ତି—

"ଏ ମାୟା ଈଶ୍ୱରୁ ପ୍ରକାଶ । ଯେବେ ସେ ହୁଅଇ ବିନାଶ ॥
ପରମାନନ୍ଦ ରୂପେ ଚିତ୍ତ । ତେବେ ସେ ହୁଅଇ ସ୍ଥିରତ ॥
ତହୁଁ ସମ୍ପନ୍ନ ବ୍ରହ୍ମଜ୍ଞାନ । ତତ୍ତ୍ୱ ଜାଣଇ ଜ୍ଞାନୀ ଜନ ॥"

ମାୟା ଈଶ୍ୱରଙ୍କର ଶକ୍ତି ବିଶେଷ । ଏହି ମାୟା ବା ଅବିଦ୍ୟା ଦ୍ୱାରା ଆଚ୍ଛନ୍ନ ହୋଇ ଜୀବ ଅସତ୍ୟକୁ ସତ୍ୟ ବୋଲି ମନେକରେ । କିନ୍ତୁ ଭଗବତ୍ ପ୍ରେମ ସାଧନା ବଳରେ ତାର ଜ୍ଞାନୋଦୟ ହେଲେ ଇନ୍ଧନଶୂନ୍ୟ ଅଗ୍ନି ଆପେ ଆପେ ଲିଭିଯିବା ପରି ମାୟାପଟଳ ଅପସାରିତ ହୋଇଯାଏ ଏବଂ ଜୀବ ବ୍ରହ୍ମ ସ୍ୱରୂପ ପ୍ରାପ୍ତ ହୁଏ । "ବ୍ରହ୍ମ ସ୍ୱରୂପଂ ପ୍ରାପ୍ତ—ଶ୍ରୀଧର ।" ଏହି ସମୟରେ ବ୍ରହ୍ମଙ୍କର ପରମାନନ୍ଦ ସ୍ୱରୂପରେ ଚିତ୍ତ ବିହାର କରେ । ଏହାର ନାମ ବ୍ରହ୍ମଜ୍ଞାନ । ଶ୍ରୀମଦ୍‌ଭଗବଦ୍ ଗୀତାରେ ଏହାକୁ ବ୍ରାହ୍ମୀ ସ୍ଥିତି ବୋଲି କୁହାଯାଇଛି । ଦ୍ୱିତୀୟ ସ୍କନ୍ଧ ନବମ ଅଧ୍ୟାୟ ୩୨-୩୩ ଶ୍ଳୋକରେ ଭଗବତ୍-ତତ୍ତ୍ୱର ସ୍ୱରୂପ ନିରୂପଣ ପ୍ରସଙ୍ଗରେ କହୁଅଛନ୍ତି—

"ସୃଷ୍ଟିର ଅଗ୍ରେ ମୁହିଁ ଏକ । ମୋ ତହୁଁ ପ୍ରକାଶ ଅନେକ ॥
ସତ ଅସତ ପର ମୁହିଁ । ଯେ ଅବଶେଷ ଶେଷ ରହି ॥
ଏଣୁ ଏ ଆଦି ମଧ୍ୟ ଅନ୍ତେ । ମୋ ତହୁଁ ଅନ୍ୟ କେ ଜଗତେ ॥
ଆତ୍ମା ସର୍ବଦା ସର୍ବଠାବେ । ଅନ୍ୱୟ ବ୍ୟତିରେକ ଭାବେ ॥
ଏହା ଜାଣନ୍ତି ତତ୍ତ୍ୱଜ୍ଞାନୀ । ମାୟା ସଂସାରେ ଅନୁମାନି ॥"

ଏହାର ଆଶୟ ହେଉଛି ଯେ ସୃଷ୍ଟିର ପୂର୍ବେ କେବଳ ବ୍ରହ୍ମ ହିଁ ବିଦ୍ୟମାନ ଥିଲେ । ଅନ୍ୟ କୌଣସି ବସ୍ତୁ ନଥିଲା । ମାୟା ମଧ୍ୟ ନ ଥିଲା । ଅସତ୍ ଅର୍ଥାତ କାରଣାତ୍ମକ ସୂକ୍ଷ୍ମ ଭାବ ଏବଂ ସତ୍ ଅର୍ଥାତ କାର୍ଯ୍ୟାତ୍ମକ ସ୍ଥୂଳ ଭାବ ନ ଥିଲା । ଏ ଉଭୟର କାରଣ ରୂପ ପ୍ରଧାନ ମଧ୍ୟ ନ ଥିଲା । ତାହା ବ୍ରହ୍ମଙ୍କଠାରେ ଲୀନ ହୋଇ ରହିଥିଲା । ସୃଷ୍ଟି ପରେ ବିଶ୍ୱବ୍ରହ୍ମାଣ୍ଡର ସର୍ବତ୍ର ସେ ପରିବ୍ୟାପ୍ତ ଅଛନ୍ତି । ପ୍ରଳୟ କାଳରେ ସବୁ ଲୀନ ହୋଇଯିବା ପରେ ବ୍ରହ୍ମ ହିଁ ଅବଶେଷ ରହିବେ । ଏଥିରୁ ସ୍ପଷ୍ଟ ପ୍ରତୀତ ହେଉଅଛି ଯେ ନିର୍ଗୁଣ ସଗୁଣ, ଜୀବ ଓ ଜଗତ ସବୁ ବ୍ରହ୍ମ । ସ୍ୱରୂପତଃ ବ୍ରହ୍ମ ନିର୍ଗୁଣ । ମାୟା

ଯୋଗେ ସେ ସଗୁଣବନ୍ତ ପ୍ରତୀୟମାନ ହୁଅନ୍ତି । ବ୍ରହ୍ମ ପ୍ରତିବିମ୍ବ ରୂପରେ ଜୀବ ଏବଂ ବିବର୍ତ୍ତି ରୂପରେ ଜଗତ୍ ସଦୃଶ ପ୍ରତିଭାତ ହୁଅନ୍ତି । ଚୈତନ୍ୟ ହିଁ ଭଗବାନଙ୍କର ପ୍ରକୃତ ସ୍ୱରୂପ । ଯେତେବେଳେ ସେ ସତ୍ତ୍ୱଗୁଣ ରୂପ ଉପାଧି ଦ୍ୱାରା ଅନବଚ୍ଛିନ୍ନ ସେତେବେଳେ ସେ ନିରାକାର । ଭଗବାନଙ୍କର ଏହି ଅବ୍ୟକ୍ତ ନିରାକାର ରୂପକୁ କହନ୍ତି ନିର୍ଗୁଣ ବ୍ରହ୍ମ । କିନ୍ତୁ ଯେତେବେଳେ ସେ ସତ୍ତ୍ୱଗୁଣ ରୂପ ଉପାଧି ଦ୍ୱାରା ଅବଚ୍ଛିନ୍ନ ସେତେବେଳେ ସେ ଆକାରବନ୍ତ ଓ ସଗୁଣ । ବସ୍ତୁତଃ ସାକାର ନିରାକାର ଓ ସଗୁଣ ନିର୍ଗୁଣ ଏକ ବସ୍ତୁ । ପରମ-ତତ୍ତ୍ୱର ଏ ବ୍ୟାଖ୍ୟା ବ୍ରହ୍ମସୂତ୍ର ଶାଙ୍କର ଭାଷ୍ୟର ଅନୁରୂପ । ଦଶମ ସ୍କନ୍ଧ ତୃତୀୟ ଅଧ୍ୟାୟ ୨୪ ଶ୍ଳୋକରେ ଶ୍ରୀକୃଷ୍ଣ ସ୍ତୁତି ବର୍ଣ୍ଣନା ପ୍ରସଙ୍ଗରେ କହୁଅଛନ୍ତି—

"ହେ ନାଥ ନିସ୍ତରଳ ମୁହିଁ । ତୋହର ଆଦି ଅନ୍ତ ନାହିଁ ॥
ମନ ବଚନେ ହେଁ ନପାଇ । ପ୍ରସନ୍ନ ହୁଅ ନାଥ ଶୁଦ୍ଧ ॥
ଜ୍ୟୋତି ସ୍ୱରୂପ ନିରଞ୍ଜନ । ପୂର୍ଣ୍ଣ୍ୟ ନିର୍ମଳ ଭଗବାନ ॥"

ଅର୍ଥାତ୍ ଭଗବାନ ହେଉଛନ୍ତି ନିର୍ଗୁଣ, ନିର୍ବିଶେଷ, ନିରଞ୍ଜନ, ଜ୍ୟୋତିରୂପ ଓ ଜ୍ଞାନସ୍ୱରୂପ । ସଗୁଣ ଦୃଷ୍ଟିରୁ ସେ ଜଗତର ଉପାଦାନ ଓ ନିମିତ୍ତ କାରଣ । କିନ୍ତୁ ନିର୍ଗୁଣ ଦୃଷ୍ଟିରୁ ସେ କାରଣ ନୁହନ୍ତି କି କାର୍ଯ୍ୟ ନୁହନ୍ତି । ସେ ଗୁଣାତୀତ ଏବଂ କାଳ ଦ୍ୱାରା ଅପରିଚ୍ଛିନ୍ନ । ସେ ଅଦ୍ୱୟ ଏବଂ ଶାନ୍ତ । ଉପନିଷଦ୍‌ର ଭାଷାରେ ସେ "ନେତି ନେତି—ଏହା ନୁହନ୍ତି ଏହା ନୁହଁନ୍ତି ।" ଏହାହିଁ ବିଷ୍ଣୁଙ୍କର ପରମ ପଦ ।

"ଏ ଯେଉଁ ବୈକୁଣ୍ଠର ଧାମ । ପରମ ପଦ ଯାର ନାମ ॥
ଦେବେ ନ ପାନ୍ତି ଯାହା ଚିନ୍ତି । ନ ଜାଣ୍ତି ନ ଜାଣ୍ତି ବୋଲନ୍ତି ॥"

ଭାଗବତ ଦଶମ ସ୍କନ୍ଧ (ଦ୍ୱାରକା ଲୀଳା) ୯୩ ଅଧ୍ୟାୟରେ ନ୍ୟାୟ ବୈଶେଷିକାଦି ମୀମାଂସବାଦ ବିଭିନ୍ନ ମତବାଦ ଖଣ୍ଡନ ପୂର୍ବକ ଜଗତର ମିଥ୍ୟାତ୍ୱ ଏବଂ ଜୀବ ବ୍ରହ୍ମ ଐକ୍ୟ ପ୍ରତିପାଦନ କରିବାକୁ ଯାଇ କହୁଅଛନ୍ତି—

"କର୍ମ ବେଦର ମୀମାଂସକେ । ଜଗତ ସତ୍ୟ ତାଙ୍କ ଲେଖେ ॥
ଏ ଭ୍ରାନ୍ତ ଶାସ୍ତ୍ର ମାର୍ଗେ ଭ୍ରମି । ବିବାଦେ ହୋନ୍ତି ପଥଶ୍ରମୀ ॥
କାହୁଁ ଜାଣିବେ ନିଜ ବ୍ରହ୍ମେ । ଭ୍ରମେ ଭ୍ରମନ୍ତି ବହୁ ଶ୍ରମେ ॥
ଯେଣୁ ଏ ଜୀବ ଗୁଣମୟେ । ଏଣୁ ବସ୍ତୁର ଭେଦ ରହେ ॥
ଅଜ୍ଞାନ ତୋ ଭେଦ ବସ୍ତୁର । ତୁ ସଙ୍ଗୀ ନୋହୁ ନା କାହାର ॥
ପ୍ରପଞ୍ଚ ତ୍ରିଗୁଣ ଜଗତ । ଜାଣିଲେ ନଷ୍ଟେ ନୋହେ ସତ୍ୟ ॥
ମନ ବିଳାସ ମାତ୍ର ଏହି । ଅସତ୍ୟ ସତ୍ୟେ ଆଭାସଇ ॥
× × ×
ଅସତ୍ୟ ସତ୍ୟପ୍ରାୟ ଦିଶେ । ଛାୟା ଦର୍ପଣେ ଯେସନ୍ତେ ଦିଶେ ॥"

ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ସୂଚିତ ହୁଏ ଯେ ଜଗନ୍ନାଥ ଦାସ ଅଦ୍ୱୈତବାଦୀ ଥିଲେ ଏବଂ ଦ୍ୱୈତବାଦୀ, ବିଶିଷ୍ଟାଦ୍ୱୈତବାଦୀ ଓ ଅଚିନ୍ତ୍ୟ ଭେଦାଭେଦବାଦୀମାନଙ୍କ ମତବାଦକୁ ପ୍ରତ୍ୟାଖ୍ୟାନ କରି ଶ୍ରୀଧର ଦର୍ଶିତ ଓ ଶଙ୍କର ପ୍ରତିପାଦିତ ମାୟାବାଦ ବା ଆଦର୍ଶବାଦକୁ ଗ୍ରହଣ କରିଥିଲେ । ଯଥାର୍ଥରେ ଦେଖିବାକୁ ଗଲେ ଶ୍ରୀମଦ୍ ଭାଗବତ ହେଉଛି ଅଦ୍ୱୈତବାଦ ଏବଂ ଭକ୍ତିବାଦର ସୁମଧୁର ସମନ୍ୱୟ । ଏହାର ଅଧ୍ୟାତ୍ମ ଦିଗ ହେଉଛି ଅଦ୍ୱୈତ ଏବଂ ସାଧନା ଦିଗ ଭକ୍ତି । ଭାଗବତ ପ୍ରଥମ ସ୍କନ୍ଧ ଦ୍ୱିତୀୟ ଅଧ୍ୟାୟ ଦ୍ୱାଦଶ ଶ୍ଳୋକର ଆଲୋଚନାରୁ ଏହା ସ୍ପଷ୍ଟ ପ୍ରତିପାଦିତ ହୁଏ ।

"ସେ ବୋଲେ ଶ୍ରଦ୍ଧା ଯେ ବହନ୍ତି । ଜ୍ଞାନ ବୈରାଗ୍ୟ ଆଚରନ୍ତି ॥
କରନ୍ତି ବିଷ୍ଣୁରେ ଭକତି । ଆତ୍ମାରେ ଆତ୍ମାକୁ ଦେଖନ୍ତି ॥"

"ଆତ୍ମାରେ ଆତ୍ମାକୁ ଦେଖନ୍ତି" ଏହି ଉକ୍ତି ଦ୍ୱାରା ଜୀବ ବ୍ରହ୍ମ ଐକ୍ୟ ଅର୍ଥାତ ବେଦାନ୍ତର 'ତତ୍ତ୍ୱମସି' ମହାବାକ୍ୟ ଗୃହୀତ ହୋଇଅଛି । ଏହି ଶ୍ଳୋକର ବ୍ୟାଖ୍ୟାରେ ଶ୍ରୀଧର ସ୍ୱାମୀ ଉକ୍ତ ବିଷୟଟି ସୁସ୍ପଷ୍ଟ କରି କହିଅଛନ୍ତି—

"ତଚ ତତ୍ତ୍ୱମାତ୍ମନି ପଶ୍ୟନ୍ତି ।
କିଂ ତତ୍ ଆତ୍ମାନଂ ପରମାତ୍ମନମ୍ ।"

---

*ଭାଗବତ ସଂପ୍ରଦାୟ—ବଳଦେବ ଉପାଧ୍ୟାୟ

ଉପରୋକ୍ତ ଅଧ୍ୟାୟର ୨୧ ଶ୍ଳୋକରେ ଏହି କଥାକୁ ଆହୁରି ସ୍ପଷ୍ଟକରି କୁହାଯାଇଛି—

"ଅଶେଷ ଜନ୍ମ ଗ୍ରନ୍ଥି ବନ୍ଧ । ଏଣେ ଛିଣ୍ଡିଇ ସର୍ବ ଦ୍ୱନ୍ଦ୍ୱ ॥
ସର୍ବ ସଂଶୟ ତୁଟେ କର୍ମ । ତୁଟଇ ବିଶ୍ୱ ମାୟା ଭ୍ରମ ॥
ଆତ୍ମାରେ ଆତ୍ମାକୁ ଦେଖନ୍ତି । ଜନ୍ମ ମରଣେ ନାହିଁ ଖ୍ୟାତି ॥"

ଏଠାରେ "ତୁଟଇ ବିଶ୍ୱମାୟାଭ୍ରମ" କହିବାଦ୍ୱାରା ଶଙ୍କର ପ୍ରତିପାଦିତ ମାୟାବାଦ ବା ଆଦର୍ଶବାଦକୁ ଗ୍ରହଣ କରାଯାଇଛି । ଯଥାର୍ଥରେ ମାୟା ବା ଆଦର୍ଶବାଦ ଭକ୍ତିର ପରିପନ୍ଥୀ ନୁହେଁ କିମ୍ବା ଶ୍ରୀମଦ୍‌ଭାଗବତ ଶଙ୍କର ପ୍ରତିପାଦିତ ଅଦ୍ୱୈତବାଦର ପ୍ରତିକୂଳ ନୁହେ । ସେଥିପାଇଁ ଭାଗବତକାର ସାଂଖ୍ୟର ପ୍ରକୃତି ପରିଣାମବାଦକୁ ସମ୍ପୂର୍ଣ୍ଣ ଭାବରେ ଗ୍ରହଣ ନ କରି ଶଙ୍କର ପ୍ରତିପାଦିତ ଅଦ୍ୱୈତ-ବାଦ ଅନୁଯାୟୀ ସୃଷ୍ଟିତତ୍ତ୍ୱର ବ୍ୟାଖ୍ୟା କରିଅଛନ୍ତି, * "ସ୍ୱଭାବେ ନୋହେ ସେ ତେମନ୍ତ ଏ ସାଂଖ୍ୟ ଯୋଗୀଙ୍କର ମତ" ଏହି ଉକ୍ତିଦ୍ୱାରା ଜଗନ୍ନାଥ ଦାସ ଏହାକୁ ସ୍ପଷ୍ଟତର କରିଦେଇ ଅଛନ୍ତି । ସୁତରାଂ ଭକ୍ତି ଏବଂ ମାୟାବାଦ ଏ ଦୁଇଟିକୁ ପରସ୍ପର ବିରୋଧୀ ବୋଲି ବିଚାରିବା ମଧ୍ୟ ଠିକ୍ ନୁହେଁ, ବ୍ରହ୍ମପ୍ରାପ୍ତି ପାଇଁ ଭକ୍ତିର ଆବଶ୍ୟକତା ଶଙ୍କର ତାଙ୍କର ଅମର ଗ୍ରନ୍ଥ ବିବେକଚୂଡ଼ାମଣିରେ ସ୍ୱୀକାର କରିଛନ୍ତି । ବିଷ୍ଣୁ ପୁରାଣରେ ଶଙ୍କର ପ୍ରତିପାଦିତ ମାୟାବାଦକୁ ଅସତ୍ ଶାସ୍ତ୍ର ବୋଲି କୁହାଯାଇଥିବା ହେତୁ ବୋଧହୁଏ ଦ୍ୱୈତବାଦୀ ଓ ଅଚିନ୍ତ୍ୟ-ଭେଦାଭେଦବାଦୀ ବୈଷ୍ଣବଗଣ ମାୟାବାଦ ବା ଆଦର୍ଶବାଦ ପ୍ରତି ବିମୁଖତା ପ୍ରଦର୍ଶନ କରିଥାନ୍ତି । "ମାୟାବାଦମସତ୍ ଶାସ୍ତ୍ରଂ ବ୍ରାହ୍ମଣରୂପିଣା ମାୟା ପ୍ରଚରିତମ୍ । (ବି.ପୁ) (ମୁଁ ବ୍ରାହ୍ମଣରୂପେ (ଶଙ୍କର) ମାୟାବାଦ ରୂପ ଅସତ୍-ଶାସ୍ତ୍ରକୁ ପ୍ରଚାରକଲି ।" ସୁତରାଂ ଜଗନ୍ନାଥ ଦାସ କବୀର, ତୁଳସୀ ଦାସ ଓ ଜ୍ଞାନେଶ୍ୱରଙ୍କ ପରି ନିର୍ଗୁଣ ଭକ୍ତିର ଉପାସକ ଥିବା ସୂଚିତହୁଏ । ଉତ୍କଳରେ ମଧ୍ୟ ନିର୍ଗୁଣ ଭକ୍ତିବାଦର ଏକ ଉଜ୍ଜ୍ୱଳ ପରଂପରା ରହିଅଛି ।

---

*Lord of the Autumn months by R. K. Mukherjee. Page 93.

## ପିଣ୍ଡବ୍ରହ୍ମାଣ୍ଡତତ୍ତ୍ୱ :

ଜଗନ୍ନାଥ ଦାସଙ୍କ ଦ୍ୱାରା ରଚିତ "ତୁଳାଭିଣା" ଓ ଅନ୍ୟାନ୍ୟ କେତେକ ଗ୍ରନ୍ଥରେ ପିଣ୍ଡ ବ୍ରହ୍ମାଣ୍ଡ ଓ ଯୋଗର ଉଲ୍ଲେଖ ଦେଖି କେହି କେହି ମନେ କରିଥାନ୍ତି ଯେ ସେ ବୌଦ୍ଧତନ୍ତ୍ରର କାୟାସାଧନା ଓ ନାଥପନ୍ଥୀ ଯୋଗସାଧନଦ୍ୱାରା ପ୍ରଭାବିତ ହୋଇଥିଲେ । ଏହା ଠିକ୍ ନୁହେଁ । ଯଥାର୍ଥରେ ଦେଖିବାକୁ ଗଲେ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱର ମୂଳରେ ଅଛି ଉପନିଷଦୀୟ ଚିନ୍ତାଧାରା । 'କଠୋପନିଷଦ'ରେ ଉଲ୍ଲେଖ ଅଛି ନବଦ୍ୱାର ଯୁକ୍ତ ପୁରରେ (ଦେହ) ଦେହୀ ବା ଆତ୍ମା ବାସ କରୁଅଛନ୍ତି । 'ଶ୍ୱେତାଶ୍ୱେତାର' ଉପନିଷଦରେ ମଧ୍ୟ ଦେହରୂପ ବୃକ୍ଷରେ ଜୀବାତ୍ମା ଓ ପରମାତ୍ମାରୂପ ପକ୍ଷୀଦ୍ୱୟ ବାସ କରୁଥିବା ବିଷୟ ବର୍ଣ୍ଣିତ ହୋଇ ଅଛି, ସୁତରାଂ ଏହି ଦେହ ବା ପିଣ୍ଡ ହେଉଛି ବ୍ରହ୍ମାଣ୍ଡପତି ପରମାତ୍ମାଙ୍କର ନିବାସ ସ୍ଥଳ, ଏଣୁ ବ୍ରହ୍ମାଣ୍ଡରେ ଯାହାଅଛି ଦେହରେ ମଧ୍ୟ ତାହାଅଛି । ଗୀତା ଓ ଭାଗବତରେ ଯୋଗ (ଅଷ୍ଟାଙ୍ଗ ଯୋଗ) ଭକ୍ତିର ସାଧନ ବିଶେଷ ରୂପେ ବର୍ଣ୍ଣିତ ହୋଇଅଛି । ଭକ୍ତିବାଦର ପ୍ରତିଷ୍ଠାତା ମହର୍ଷି ଶାଣ୍ଡିଲ୍ୟ ଯୋଗକୁ ଭକ୍ତିର ସାଧନ ରୂପେ ଗ୍ରହଣ କରିଅଛନ୍ତି ।

## ଶୂନ୍ୟବାଦ :

ଜଗନ୍ନାଥ ଦାସଙ୍କର କେତେକ ଲେଖାରେ 'ଶୂନ୍ୟ' ଶବ୍ଦର ଉଲ୍ଲେଖ ଦେଖି କେହି କେହି ତାହାଙ୍କୁ ପ୍ରଚ୍ଛନ୍ନ ବୌଦ୍ଧ ବା ବୌଦ୍ଧ ବୈଷ୍ଣବ ବୋଲି କହିବାର ଶୁଣାଯାଏ । କିନ୍ତୁ ଏହା ସମୀଚୀନ ନୁହେଁ । 'ତୁଳାଭିଣା' ପଞ୍ଚମ ଅଧ୍ୟାୟରେ ଲେଖାଅଛି "ବେଦଶୂନ୍ୟ । ଜୀବଜନ୍ତୁ ଶୂନ୍ୟ । ଏସବୁ ଶୂନ୍ୟରେ ଅଛନ୍ତି । ବୃକ୍ଷମାନେ ଶୂନ୍ୟରେ ଅଛନ୍ତି । ପାଷାଣ ଚନ୍ଦ୍ର, ସୂର୍ଯ୍ୟ ଏ ସମସ୍ତ ଶୂନ୍ୟରେ ଅଛନ୍ତି । ପର୍ବତ ଚଉଦ ବ୍ରହ୍ମାଣ୍ଡ ସମସ୍ତେ ଶୂନ୍ୟରେ ଅଛନ୍ତି ।" ଉକ୍ତ ଗ୍ରନ୍ଥର ଅନ୍ୟତ୍ର ପୁଣି ଲେଖାଅଛି "ଅଞ୍ଜନନାସ୍ତି । ପରମଞ୍ଜନ ସତ୍ୟ । ବାହାର ଭଜନନାସ୍ତି । ପରମ ଭଜନ ସତ୍ୟ । ତୀର୍ଥନାସ୍ତି, ବ୍ରତନାସ୍ତି, ଉପାସନା ନାସ୍ତି ।" ଏ ଦୁଇଟିକୁ ମିଳାଇ ପଢ଼ିଲେ ସ୍ପଷ୍ଟ ଜଣାଯାଏ ଯେ ଜଗନ୍ନାଥ ଦାସ 'ଶୂନ୍ୟ' ଶବ୍ଦକୁ ସର୍ବବ୍ୟାପକତା ଅର୍ଥରେ ପ୍ରୟୋଗ କରିନାହାନ୍ତି ।

ଶୂନ୍ୟ ଏଠାରେ ପରମତତ୍ତ୍ୱ ବା ବ୍ରହ୍ମ ଅର୍ଥରେ ବ୍ୟବହୃତ ହୋଇଅଛି । ବ୍ରହ୍ମଙ୍କୁ ଚତୁଷ୍କୋଟି ବହିର୍ଭୂତ ବା ପଞ୍ଚମ କୋଟିମାତ୍ର ବୋଲି ବୁଝାଯାଏ । କାରଣ ଅସ୍ତି, ନାସ୍ତି, ଅସ୍ତି-ନାସ୍ତି ଏବଂ ନାସ୍ତି-ନାସ୍ତି ଏହି ଚାରି କୋଟି ମଧ୍ୟରୁ କୌଣସି ଗୋଟିଏ କୋଟି ବ୍ରହ୍ମଙ୍କ ପ୍ରତି ପ୍ରଯୁଜ୍ୟ ନୁହେଁ । ଶଙ୍କର ସେଥିପାଇଁ ଏହି ଚାରି କୋଟିକୁ ବ୍ରହ୍ମଙ୍କର ଆବରଣ ବୋଲି କହିଅଛନ୍ତି । ଯଥାର୍ଥରେ ବ୍ରହ୍ମ ଅବାଙ୍ଗ୍ ମନସ ଗୋଚର । ତେଣୁ ତାହାଙ୍କୁ ଭାଷାରେ ପ୍ରକାଶ କରିବାପାଇଁ ଶୂନ୍ୟ, ଶାନ୍ତାକାର, ଗଗନ ସଦୃଶ (ଶାନ୍ତାକାରଂ ଗଗନ ସଦୃଶଂ ମେଘବର୍ଣ୍ଣଂ) ଆଦି ଶବ୍ଦ ବ୍ୟବହାର କରାଯାଇଥାଏ । ଜଗନ୍ନାଥ ଦାସଙ୍କ ମତରେ ଶୂନ୍ୟ ଓ ବ୍ରହ୍ମ ଏକାର୍ଥ ବାଚକ ଶବ୍ଦ । ଅଚ୍ୟୁତାନନ୍ଦାଦି ଅନ୍ୟ ଉତ୍କଳୀୟ ବୈଷ୍ଣବମାନେ ମଧ୍ୟ 'ଶୂନ୍ୟ' ଶବ୍ଦକୁ ଏହି ଅର୍ଥରେ ପ୍ରୟୋଗ କରିଥାଆନ୍ତି । "ଶୂନ୍ୟ ପୁରୁଷ ଶୂନ୍ୟରେ ରହିଛି । ଶୂନ୍ୟ ପରେ ରହି ଲୀଳା କରୁଛି ।" (ଶୂ-ସଂ.)

ଜଗନ୍ନାଥ ଦାସ ଜଣେ ଯୋଗଜନ୍ମା ମହାପୁରୁଷ ଥିଲେ । ବହିରାଗତ ସଭ୍ୟତା ଓ ସଂସ୍କୃତିର ପ୍ରବଳ ଚାପ ଓ ସଂଘର୍ଷ ଫଳରେ ଯେତେବେଳେ ଉତ୍କଳର ଧର୍ମ, ସଭ୍ୟତା ଓ ସଂସ୍କୃତି ଘୋର ବିପଦାପନ୍ନ ଏବଂ ଧାର୍ମିକସଂସ୍ଥା ଓ ଧର୍ମତତ୍ତ୍ୱ ସମୂହ ଯେତେବେଳେ ଏକ କ୍ଷୁଦ୍ର ଶିଷ୍ଟମଣ୍ଡଳୀ ମଧ୍ୟରେ ସୀମାବଦ୍ଧ ଠିକ୍ ସେତିକିବେଳେ ଉତ୍କଳର ପୁଣ୍ୟଭୂମିରେ ଅବତୀର୍ଣ୍ଣ ହୋଇ ଜଗନ୍ନାଥ ଦାସ ସ୍ୱୀୟ ପ୍ରତିଭା ଓ ସାଧନା ବଳରେ ଜାତି-ବର୍ଣ୍ଣ-ସମ୍ପ୍ରଦାୟ ନିର୍ବିଶେଷରେ ସମସ୍ତଙ୍କ ପାଇଁ ଧର୍ମର ରୁଦ୍ଧଦ୍ୱାର ଉନ୍ମୁକ୍ତ କରିଦେଲେ ଏବଂ ବେଦବିଦ୍ୟା, ବ୍ରହ୍ମବିଦ୍ୟା, ଯୋଗ ଓ ତପ ପ୍ରଭୃତି ବିଭିନ୍ନ ମତବାଦ ସହିତ ବୈଷ୍ଣବ ଭକ୍ତିବାଦର ଅପୂର୍ବ ସମନ୍ୱୟ ବିଧାନକରି ସମଗ୍ର ଉତ୍କଳରେ ଏକ ମହାନ୍ ଗଣଧର୍ମର ପ୍ରାଣ ପ୍ରତିଷ୍ଠା କଲେ । ସମଗ୍ର ହିନ୍ଦୁ ଶାସ୍ତ୍ର ଓ ଦର୍ଶନକୁ ତାଙ୍କର ଅଦ୍ୱିତୀୟ ଜଗନ୍ନାଥ ତତ୍ତ୍ୱରେ ଏକୀଭୂତ କରି ସେ ପୁରୁଷୋତ୍ତମ କ୍ଷେତ୍ରକୁ ବିଚ୍ଛିନ୍ନ ଭାରତୀୟ ଜନତାର ସାର୍ବଭୌମ ଧର୍ମ ପୀଠରେ ପରିଣତ କରିଦେଲେ । ଭାରତୀୟ ଧର୍ମ ସଭ୍ୟତା ଓ ସଂସ୍କୃତିର ଇତିହାସରେ ତାଙ୍କର ଏ ଦାନ ଚିରସ୍ମରଣୀୟ ହୋଇ ରହିବ ।



# ଅଷ୍ଟମ ଅଧ୍ୟାୟ

## କବି ପ୍ରତିଭା

ଜଗନ୍ନାଥ ଦାସ ବହୁ ପୁସ୍ତକର ପ୍ରଣେତା ହେଲେ ହେଁ ତାଙ୍କର ଭାଗବତ ପାଇଁ କେବଳ ସେ ଓଡ଼ିଆ ସାହିତ୍ୟର ଇତିହାସରେ ଚିରସ୍ମରଣୀୟ ହୋଇ ରହିବେ । ଭାଗବତ ଓଡ଼ିଆ ସାହିତ୍ୟର ଏକ ଅଦ୍ୱିତୀୟ କାବ୍ୟଗ୍ରନ୍ଥ । ଉତ୍କୃଷ୍ଟ ଭାବସମ୍ପଦ ସଙ୍ଗେ ଅନୁପମ କବିତ୍ୱକଳାର ଅପୂର୍ବ ସମାବେଶ ଏଥିରେ ଯେପରି ଦୃଷ୍ଟ ହୁଏ ଅନ୍ୟତ୍ର ତାହା ବିରଳ । ଦୀର୍ଘପାଞ୍ଚଶତ ବର୍ଷ ହେଲା ଏହା ଉତ୍କଳର ଆବାଳବୃଦ୍ଧବନିତା ଅଗଣିତ ନରନାରୀଙ୍କର ହୃଦୟକୁ ଦିବ୍ୟ ଅଧ୍ୟାତ୍ମଚେତନାର ଅମୃତମୟ ରସରେ ଅଭିସେଚିତ କରି ଆସୁଅଛି । କାଳ ଏହାର ଜ୍ୟୋତି ବା ରସ ହରଣ କରିବା ପାଇଁ ସମର୍ଥ ହୋଇନାହିଁ ।

ଜଗନ୍ନାଥ ଦାସଙ୍କ ଭାଗବତ ଏକ ମୌଳିକ ରଚନା ନୁହେଁ । ଏହା ବେଦବ୍ୟାସକୃତ ସଂସ୍କୃତ ଭାଗବତର ଓଡ଼ିଆ ଅନୁବାଦ । ମୂଳ ସଂସ୍କୃତ ଭାଗବତର ଭାବଧାରାକୁ ଅନୁସରଣ କରି ସେ ଏହାକୁ ସ୍ୱାଧୀନ ଭାବରେ ଅନୁବାଦ କରି ଯାଇଛନ୍ତି । କିନ୍ତୁ ଅନୁବାଦ ହେଲେହିଁ ଭକ୍ତକବିଙ୍କ ଲେଖନୀର କାଞ୍ଚନ ସ୍ପର୍ଶରେ ଏହାର ପ୍ରତ୍ୟେକ ସ୍ଥଳ ଏପରି ସରସ, ସୁନ୍ଦର ଓ ମଧୁର ହୋଇଅଛି ଯେ ଏହାକୁ ଅନୁବାଦ ବୋଲି କହିବାର ଉପାୟ ନାହିଁ । ଏକ ଉଚ୍ଚାଙ୍ଗ ମୌଳିକ ଗ୍ରନ୍ଥର ସକଳ ସୁଷମାରେ ଏହାର କଳେବର ମଣ୍ଡିତ । ଗ୍ରନ୍ଥର ଆରମ୍ଭରେ କବି ଲେଖି ଅଛନ୍ତି ।

"ସକଳ ବେଦ ହୋଇ ବୃକ୍ଷେ । ଫଳ ଫଳିଲେ ଅନ୍ତରୀକ୍ଷେ ॥
କେତେ ହେଁ ଦିନେ ପାଚିଲେକ । ବୃନ୍ତୁ ପଡ଼ିଲେ ବାୟୁବଳେ ॥
ଶୁକ ଧାଇଁଲେ ତାହା ଦେଖି । ପକ୍ଷୀଙ୍କ ସଙ୍ଗତ ଉପେକ୍ଷି ॥
ତୋଷେ ଅଧର କ୍ଷତ କଲା । ଭିତର ସୁରଙ୍ଗ ଦେଖିଲା ॥
ତହୁଁ ଗଳିଲା ରସସାର । କ ଅବା ଦେବା ପଟାନ୍ତର ॥
ଅମୃତ ଜିଣେ ସ୍ୱାଦୁଗୁଣେ । ସୁଜନେ ପିବ ଅନୁକ୍ଷଣେ ॥

କବିଙ୍କର ମଧୁ ଦ୍ରାବୀ ଲେଖନୀ ସ୍ପର୍ଶରେ ସମଗ୍ର ରଚନାଟି ଠିକ୍ ଏହିପରି ମଧୁମୟ ହୋଇ ଉଠିଛି । ଭକ୍ତକବି ମଧୁସୂଦନଙ୍କ ରଚନାର ଏକ ଅଂଶର ପୁନରାବୃତ୍ତି କରି ଏ ରଚନା ସମ୍ବନ୍ଧରେ ଆମେ କେବଳ ଏତିକି କହି ପାରିବା "ମଧୁମୟ ସୃଷ୍ଟି ସୁଧାମୟ ବୃଷ୍ଟି ଏ ସୃଷ୍ଟି ଅମୃତମୟ ହେ ।"

**ବିଚିତ୍ରଚିତ୍ରଣ**—ଜଗନ୍ନାଥ ଦାସଙ୍କ ଭାଗବତର ପ୍ରଧାନ ବିଶେଷତ୍ୱ ହେଉଛି ତାର ଅନୁପମ ଭାବଚିତ୍ରଣ ପରିପାଟୀ । ବେଦ, ବେଦାନ୍ତ, ସାଂଖ୍ୟ, ଯୋଗ ଆଦି ଗ୍ରନ୍ଥ ପ୍ରତିପାଦିତ କଠିନ ଆଧ୍ୟାତ୍ମିକ ଓ ଦାର୍ଶନିକ ତଥ୍ୟ ସମୂହକୁ ଭାଙ୍ଗି ସରଳ ଓ ସହଜବୋଧ ଭାଷାରେ ସେ ଏପରି ସୁନ୍ଦର ଭାବରେ ବ୍ୟକ୍ତ କରିଅଛନ୍ତି ଯେ ତାହା ପଢ଼ିବା କିମ୍ବା ଶୁଣିବା ମାତ୍ରେ ପାଠକ ବା ଦର୍ଶକର ଗଭୀରତମ ଅନ୍ତଃସ୍ଥଳକୁ ଭେଦ କରିଯାଏ । ସାରଲ୍ୟ ଓ ମାଧୁର୍ଯ୍ୟ ସଙ୍ଗେ ଗାମ୍ଭୀର୍ଯ୍ୟର ଏପରି ଅପୂର୍ବ ସମାବେଶ କ୍ୱଚିତ ଦୃଷ୍ଟ ହୁଏ । ନିମ୍ନରେ ସାମାନ୍ୟ କେତୋଟି ମାତ୍ର ଉଦାହରଣ ଦିଆ ଯାଉଛି । ମାୟାଧୀନ ଜୀବର ଅସହାୟତା ବର୍ଣ୍ଣନା କରିବାକୁଯାଇ କହୁଅଛନ୍ତି—

"ଶ୍ରୀନୃପ ! ଶୋକ ତୁ ନକର । ଈଶ୍ୱର ବଶ ଏ ସଂସାର ।।
ପ୍ରାଣୀ ଭିଆଇ ମାୟା ଯୋଗେ । ଖେଳଇ ସଂଯୋଗ ବିଯୋଗେ ।।
ଗୋରୁ ନାସିକା ଯେହ୍ନେ ବନ୍ଧ । ଆକର୍ଷି ଚର୍ମରଜ୍ଜୁ ବାନ୍ଧ ।।
ସେ ଯେହ୍ନେ ପ୍ରଭୁ ଆଜ୍ଞା ବହେ । ଅନ୍ତରେ ଦୁଃଖ ଖେଦ ସହେ ।।
କ୍ରୀଡ଼ାକନ୍ଦୁକ କ୍ରୀଡ଼ା ସଙ୍ଗେ । ଭଜଇ ସଂଯୋଗ ବିଯୋଗେ ।।
ଯେ ଦାନ ପଡ଼ଇ ଯେମନ୍ତେ । କନ୍ଦୁକ ଚଳେ ସେହିମତେ ।।
ଈଶ୍ୱର ଇଚ୍ଛାରୁ ସଂସାର । ଏ ଗୁରୁଦୀକ୍ଷା ପଥ ସାର ।।"

[ଭା. ୧-୧୩-୪୧-୪୬]

ଜ୍ଞାନହୀନ ବ୍ୟକ୍ତିର ବୃଥା ଦେହାଭିମାନ ପ୍ରତି ଲକ୍ଷ୍ୟ କରି କହୁ ଅଛନ୍ତି—

"ଯେସନେ ମେଘ ଶୂନ୍ୟେ ଥାଇ । ପବନ ବଳେ ସେ ଉଡ଼ଇ ।।
ପାର୍ଥିବରେଣୁ ଏ ଯେମନ୍ତେ । ଉଡ଼ନ୍ତେ ପବନ ବିଘାତେ ।।

ଆକାଶ ଧୂସର ଦିଶଇ । ନାନା ବର୍ଣ୍ଣରେ ଆଶ୍ରୟଇ ॥
ତାହାକୁ ଦୃଷ୍ଟିଭେଦେ ଦେଖି । ଯେ ସତ୍ୟ ପ୍ରାୟେ ଉପଲକ୍ଷି ॥
ସେ ରୂପେ ଆତ୍ମାରେ ଶରୀର । କଳନା କରନ୍ତି ଯେ ନର ॥
ତାହାକୁ ବୋଲି ଜ୍ଞାନହୀନ । ଏବେ ହୋ ଶୁଣ ମୁନିଜନ ॥"

[ଭା ୧-୩-୩୦]

ବୈଦିକ କର୍ମକାଣ୍ଡର ନିଷ୍ଫଳତା ପ୍ରତିପାଦନ କରିବାକୁ ଯାଇ କହୁଅଛନ୍ତି—

"ବେଦର ତତ୍ତ୍ୱ ଯେ ନ ଜାଣେ । ସେ ଫଳଶ୍ରୁତି ପରିମାଣେ ॥
ରୋଗ ବିନାଶ ହେତୁ ଯେହ୍ନେ । ଔଷଧି ବୈଦ୍ୟର ବଚନେ ॥
ଖଣ୍ଡଶାକର ହସ୍ତେ ଘେନି । ପୁତ୍ରକୁ ଯେସନେ ଜନନୀ ॥
ବୋଲଇ ମଧୁର ବଚନ । ତୁ ବେଗେ କର ଏହା ପାନ ॥
ଏ ଖଣ୍ଡ ଦେବି ତୋତେ ମୁହିଁ । ଭକ୍ଷଣ ନ କଲେ ନ ଦେଇ ॥
ଏ ଫଳଶ୍ରୁତି ଏହି ମତେ । ମୂର୍ଖକୁ ଭଣନ୍ତି ଜଗତେ ॥
ନାନାପ୍ରକାରେ ପ୍ରବର୍ତ୍ତାଇ । ପୁତ୍ରକୁ ମାତା ପ୍ରାୟେ ହୋଇ ॥"

ସଂସାରର ଅସାରତା ପ୍ରତିପାଦନ କରି କହୁଅଛନ୍ତି—

"ଏ ଭବ ସଂସାର ସାଗର । ବିଷ୍ଣୁର କ୍ରୀଡ଼ାର ମନ୍ଦିର ॥
ଏ ଭବେ କିଛି ସ୍ଥିର ନୋହେ । ପଥେ ପଥିକ ଜନପ୍ରାୟେ ॥
ତୃଷାର୍ତ୍ତି ତୃଷା ନିବାରଣେ । ଯେହ୍ନେ ମିଳନ୍ତି ଜଳସ୍ଥାନେ ॥
ପୁଣି ଚଳନ୍ତି ଶ୍ରମ ସାରି । ସେ ଜଳ ନୁହଇ କାହାରି ॥
ଆତ୍ମା କେବେହେଁ ନାଶ ନୋହେ । ପ୍ରବେଶ କରେ ସହୁଁ ଦେହେ ॥"

[ ଭା: ୭-୨-୨୩ ]

ଉଦାର ଭାବରାଜିର ମନୋଜ୍ଞ ପ୍ରକାଶ ଏହିପରି ଭାଗବତର ସର୍ବତ୍ର ଦେଖିବାକୁ ମିଳେ । ଭାବଚୟନର ସାରଲ୍ୟ ଓ ମନୋହାରିତାରେ କବି ବହୁସ୍ଥଳରେ ମୂଳ ଭାଗବତକାରଙ୍କୁ ମଧ୍ୟ ବଳିଯାଇଛନ୍ତି । ସମଗ୍ର ଓଡ଼ିଆ ସାହିତ୍ୟରେ ଏ ଭାବସମ୍ପଦ ଅତୁଳନୀୟ ।

**ଚରିତ୍ରଚିତ୍ରଣ :**

ଭାଗବତ ଚାରିତ୍ରିକ ସମ୍ପଦର ଏକ ଅକ୍ଷୟ ଭଣ୍ଡାର । ଏକାଙ୍ଗ ଚକ୍ରବର୍ତ୍ତୀ ରାଜା ମହାରାଜାଙ୍କଠାରୁ ଆରମ୍ଭ କରି ଦୀନଦୁଃଖୀ, କୃଷକ, ଶ୍ରମିକ ଓ ଗୋରକ୍ଷକ ପର୍ଯ୍ୟନ୍ତ ସମାଜର କୌଣସି ଚରିତ୍ର ଏଥିରୁ ବାଦ୍ ଯାଇନାହିଁ । ଅବଶ୍ୟ ବହୁ ସ୍ଥଳରେ ପୌରାଣିକ ଅତିରଞ୍ଜନ ଓ ଭକ୍ତିକ ମିଥ୍ୟାର ଅବତାରଣାଦ୍ୱାରା ଚରିତ୍ରଗୁଡ଼ିକର ସ୍ୱାଭାବିକ ବିକାଶଧାରା ବ୍ୟାହତ ହୋଇଛି । ପୁଣି କେତେକ ସ୍ଥଳରେ ଚରିତ୍ରଗୁଡ଼ିକ ଏକାନ୍ତ ରୂପକଧର୍ମୀ ହୋଇଅଛି । ପିଙ୍ଗଳା ଓ ପୁରଞ୍ଜନ ଆଦି ଏହି ଶ୍ରେଣୀର ଚରିତ୍ର । ଏଗୁଡ଼ିକରେ ମାନବ ଚରିତ୍ର-ଚିତ୍ରଣ ଅପେକ୍ଷା ରୂପକ ମାଧ୍ୟମରେ କଠିନ ଆଧ୍ୟାତ୍ମିକ ତତ୍ତ୍ୱ ସମୂହର ବିଶ୍ଳେଷଣ ପ୍ରାଧାନ୍ୟ ଲାଭ କରିଅଛି । ହେଲେହେଁ ପୌରାଣିକ ଆବେଷ୍ଟନୀର ସଙ୍କଳ ଗତାନୁଗତିକତା ମଧ୍ୟରେ କବି ମାନବମନସ୍ତତ୍ତ୍ୱର ଯେଉଁ ମନୋଜ୍ଞ ଚିତ୍ର ପ୍ରଦାନ କରିଅଛନ୍ତି ତଦ୍ୱାରା ସଂପୃକ୍ତ ଚରିତ୍ର-ଗୁଡ଼ିକ ଅତ୍ୟନ୍ତ ମାନବୀୟ ଓ ବାସ୍ତବ ହୋଇଅଛି । ଉଦାହରଣସ୍ୱରୂପ ମାତୃହୀନ ଅରକ୍ଷ ମୃଗଶାବକଟିର ବିରହରେ ସଂସାର ବିରାଗୀ, ଯୋଗୀବର ଭରତଙ୍କର ହୃଦୟର ଉତ୍କଣ୍ଠା ଓ ଉଦ୍‌ବେଗର ଚିତ୍ର ଦେବାକୁ ଯାଇ କବି କହୁଅଛନ୍ତି—

"ହେମନ୍ତ ପ୍ରାୟ ମହୀପାଳ । କ୍ଷଣେ ନ ଦେଖି ମୃଗବାଳ ॥
ବିହ୍ୱଳେ ହୃଦୟକାତର । ଲୋଡ଼ଇ ମୃଗର କୁମର ॥
ଭ୍ରମେ ବୋଲଇ ବାକ୍ୟମାନ । ମଲା ବା ମୃଗର ନନ୍ଦନ ॥
କି କର୍ମ କଲି ମୁଁ କରାତ । କେଣେ ମୋ ଗଲା ମୃଗସୁତ ॥
ମୃଗ ବାଳକ ସୁକଲ୍ୟାଣେ । ଚରୁ କି ଥିବ ଉପବନେ ॥
ପ୍ରଭୁ କି ରଖିଥିବେ ତାରେ । ଦେଖିବି ନୟନ ଗୋଚରେ ॥
କେଣେ ସେ ମୃଗବାଳ ମୋର । ଭକ୍ଷିଲା ବ୍ୟାଘ୍ର ବା କୁକୁର ॥
ରବିର ଅସ୍ତକାଳ ହୋଇ । ଏବେହେଁ ମୃଗବାଳ ନାହିଁ ॥
ଶୋକେ ଆକୁଳ ମୋର ଦେହୀ । ସେ ଶଶିମୁଖକୁ ନ ଚାହିଁ ॥"

[ଭା-୫-୧୭-୮]

ଏହି ଅଂଶଟିକ ପାଠକଲାବେଳେ ଭରତଙ୍କର କରୁଣ କାତର ମୂର୍ତ୍ତି ପାଠକର ଚକ୍ଷୁସମକ୍ଷରେ ବିଗ୍ରହବନ୍ତ ହୋଇ ଛିଡ଼ାହେଲା ପରି ମନେହୁଏ । ଆଧ୍ୟାତ୍ମିକ ଦୃଷ୍ଟିରୁ ଏହା ସାଧକପକ୍ଷରେ ସ୍ଖଳନ ହୋଇପାରେ, କିନ୍ତୁ ଏହି ଦୁର୍ବଳତା ବା ସ୍ଖଳନହିଁ ଏହି ଚରିତ୍ରଟିକୁ ଏପରି ମାନବୀୟ ଓ ହୃଦୟସ୍ପର୍ଶୀ କରିଅଛି । ଆସନ୍ନପ୍ରସବା ଦେବକୀଙ୍କୁ ହତ୍ୟା କରିବା ପାଇଁ ଉଦ୍ୟମ କରୁଥିବା ସମୟରେ କଂସର ପାଷାଣ ହୃଦୟରେ ଆତ୍ମସ୍ୱାର୍ଥ ଓ ଭଗିନୀ-ପ୍ରୀତି ମଧ୍ୟରେ ଘୋର ସଂଘର୍ଷ ଦେଖାଦେଇଛି ଏବଂ ଏହି ସଂଘର୍ଷ ଏହି ନିଷ୍ଠୁର ଓ ଦୁଷ୍ଟ ଚରିତ୍ରକୁ ମଧ୍ୟ କ୍ଷଣେକ ପାଇଁ ହେଲେ ମାନବିକତାର ମହନୀୟ ସ୍ପର୍ଶରେ ମଣ୍ଡିତ କରିଛି ।

"ଜୀବନ ନାଶିବ ଏ ମୋର । ଦେବକୀ ବଢ଼ଇ ସୁନ୍ଦର ॥
ଏ ଯେତେ ଗର୍ଭ ପ୍ରସବିଲା । ଏମନ୍ତ କେହି ନ ଦିଶିଲା ॥
କି ବୁଦ୍ଧି କରିବଇଁ ଆଜ । ମାରଣ କରିବଇଁ କାର୍ଯ୍ୟ ॥
ହସ୍ତରେ ଅଛି ମୋ ଉପାୟ । ଛାଡ଼ିଲେ ନ ପାଇବି ଅୟ ॥
ଦେବକୀ ପକାଇବି ମାରି । ଗର୍ଭ ନାଶିବ ପେଟ ଚିରି ॥
ପୁଣି ବିଚାରୁଅଛି ମନେ । ଏ କର୍ମ କରିବି କେସନେ ॥
ଜୀବନ ପାଇଁ ଏଡ଼େ ପାପ । କରି ପାଇବି ମନେ ତାପ ॥
ଜୀବମାରଣେ ସୁଖ ନାହିଁ । ନରକେ ପଡ଼ିବିନା ଯାଇ ॥
ଇହଲୋକରେ ଅପଯଶ । ମଲେ ନରକେ ପରବେଶ ॥
ଏମନ୍ତ ମନେ ବିଚାରିଲା । ଖଡ଼ଗ ଘେନି ବାହାରିଲା ॥"

ଶ୍ରୀକୃଷ୍ଣଙ୍କ ଦ୍ୱାରା ତିରସ୍କୃତା ଓ ପ୍ରତ୍ୟାଖ୍ୟାତା ସରଳା, କୃଷ୍ଣଗତପ୍ରାଣା ଗୋପବଧୂଗଣଙ୍କର କରୁଣା-କାତର ଆତ୍ମନିବେଦନ ଓ ପରିପୂର୍ଣ୍ଣ ଆତ୍ମସମର୍ପଣ କିପରି ଏହି ଚରିତ୍ରସମୂହକୁ ଧୂଳିମଳିନ ସଂସାରର ସକଳ ଇତରତାରୁ ମୁକ୍ତ କରି ପ୍ରେମର ମହନୀୟ ପଦବୀରେ ଉପନୀତ କରିଅଛି, ତାହା ନିମ୍ନୋକ୍ତ ଉଦାହରଣରୁ ଅନୁମେୟ ।

"ଯାହାର ପାଇଁ ଗୃହବାସ । ଛାଡ଼ିଲୁ ଜୀବନର ଆଶ ॥
ତାର ନିଷ୍ଠୁର କଥା ପାଇ । ଜୀବନ ଦଣ୍ଡେ ନ ରହଇ ॥
ନୀଳକଲେବର ଘଷି କରେ । କୃଷ୍ଣଙ୍କୁ ଚାହିଁଲେ ସଧୀରେ ॥

ପାଦେ ପଡ଼ିଲେ ଏକାବେଳେ । କହନ୍ତି ଜୀବନବକଳେ ॥
ଶିର ଲଗାଇ ପଦ୍ମପାଦେ । କହନ୍ତି ଶୋକ ଗଦଗଦେ ॥
ହେ ନାଥ ! ପ୍ରଭୁ ଭାବଗ୍ରାହୀ । ଏମନ୍ତ ବୋଲୁ କାହିଁ ପାଇଁ ॥
ତୁ ନୋହୁଁ ଯଶୋଦାନନ୍ଦନ । ଅନାଦି ପ୍ରଭୁ ନିରଞ୍ଜନ ॥
ଆମ୍ଭେ ଅଭାଗୀ ଗୋପନାରୀ । ଆଉ କି ଯିବୁ ଗୋପପୁରୀ ॥
ଛାଡ଼ିଲୁ ବିଷୟ ବିଷାଦ । ପାଇ ତୋହର ପଦ୍ମପାଦ ॥
ଆମ୍ଭଙ୍କ ତେଜ କାହିଁପାଇଁ । ତୋ ବିନୁ ଅନ୍ୟ ଗତି ନାହିଁ ॥
ତୋ ପାଦପଙ୍କଜର ମୂଳେ । ଜ୍ଞାନୀ ଚଳନ୍ତି ଅନ୍ତକାଳେ ॥
ସେ ପାଦପଦ୍ମ ଆମ୍ଭେ ପାଇ । କାହିଁକି ଯିବୁ ଭାବଗ୍ରାହୀ ॥
ତୋହର ପାଇଁ ଦାମୋଦର । ଛାଡ଼ିଲୁ ସୁତ ପତି ଘର ॥"

ଯୁଦ୍ଧରେ କ୍ଷତବିକ୍ଷତ ଛିନ୍ନହସ୍ତ ବୃତ୍ରାସୁରର ପରାଜିତ ଓ ପଳାୟନରତ ଚରଣଦ୍ୱୟ ଦେବାଧିରାଜ ଇନ୍ଦ୍ରଙ୍କ ପ୍ରତି ବିବେଚିତ ଉକ୍ତି ଏହି ଚରଣଟିକୁ ଅପୂର୍ବ ଗୁଣନିକ ସୂକ୍ଷ୍ମମାରେ ମଣ୍ଡିତ କରିଅଛି ।

"ଇନ୍ଦ୍ରଙ୍କୁ ଚାହିଁ ବୃତ୍ରାସୁର । ବଚନ କହଇ ମଧୁର ॥
ମନରେ ବିଷାଦ ନ କର । ବଜ୍ର ଉଚ୍ଛିତ ବେଗେ ମାର ॥
ଯୁଦ୍ଧ ଇଚ୍ଛଇ ଯେଉଁ ଶୂର । ଜୟ ଦୁଃସ୍ଥିତି ତାହାର ॥
ଯେ ଜନ ରଣେ ସ୍ଥିତ ହୋଇ । କଷ୍ଟର ଲେଶ ତାର ନାହିଁ ॥
× × ×
ସର୍ବଙ୍କ ଆଦି ସନାତନ । ଅଖିଳ ପୁରୁଷ ପୁରାଣ ॥
ତା ବିନୁ ଜୟ ବା ଅଜୟ । କାହାର ବୋଲେ ହୋଇ କହ ॥
× × ×
କାଷ୍ଠର ପିତୁଳା ଯେସନ । ଜଗତ ତାହାର ଭିଆଣ ॥
ଯେମନ୍ତେ ପଞ୍ଜରସ୍ଥ ମୃଗ । ପ୍ରାଣୀ ତା ବଶେ ମହାଭାଗ ॥
× × ×
ସୁଖ ଦୁଃଖ ମୃତ୍ୟୁ ଜୀବିତ । ଏ ସର୍ବ ଈଶ୍ୱର ଆୟତ୍ତ ॥
ଏ ଯେଣୁ ଇନ୍ଦ୍ର ସମ ହୁଅ । ହର୍ଷ ବିଷାଦକୁ ନ ପାଅ ॥
× × ×

ରଣରେ କ୍ଷୀଣଭୂଜ ହୋଇ । ହେ ଇନ୍ଦ୍ର ! ଦେଖ ମୁଁ ଅଛଇ ॥
ଜୟ ବା ଅଜୟ କାହାର । ଜାଣିବ କେ ବିନା ଈଶ୍ୱର ॥
ଶର ସମୂହ ପଣାକାଠି । ଏ ଚତୁରଙ୍ଗ ବଳ ଗୋଟି ॥
ଜୀବନ ହୁଡ଼ ଜୁଆ ରଣେ । କେଜାଣି କେ ହାରେ କେ ଜିଣେ ॥"
(ସ୍କ: ୬-୧୬)

ଏହିପରି ବହୁ ସ୍ଥଳରେ ଜଗନ୍ନାଥ ଦାସ ମାନବଚରିତ୍ର-ଚିତ୍ରଣରେ ଅପୂର୍ବ ସିଦ୍ଧହସ୍ତତାର ପରିଚୟ ଦେଇଅଛନ୍ତି । ତାଙ୍କର ଅମୃତସ୍ରାବୀ ଲେଖନୀ ସ୍ପର୍ଶରେ ନିହାତି ନିରସ ଓ ଶୁଷ୍କ ଚରିତ୍ର ମଧ୍ୟ ସଚଳ ଓ ସଜୀବ ହୋଇଉଠିଛି । ସମସ୍ତ ସମୟରେ ଗୋଟିଏ ଗୋଟିଏ କ୍ଷୁଦ୍ର ବାକ୍ୟ-ମାଧ୍ୟମରେ ସେ ଚରିତ୍ରଗୁଡ଼ିକୁ ଯେପରି ମହୋଜ୍ଜ୍ୱଳ ବର୍ଣ୍ଣରେ ଅଙ୍କିତ କରିଅଛନ୍ତି ତାହା ଦେଖିଲେ ବିସ୍ମିତ ନ ହୋଇ ରହି ପାରିବ ନାହିଁ । ଶ୍ରୀମଦ୍ ଭାଗବତରେ ବୃଦ୍ଧଙ୍କ ସମ୍ବନ୍ଧରେ ଯାହା କୁହାଯାଇଛି ତହିଁରୁ ପାଠକର ବୁଦ୍ଧଙ୍କ ସମ୍ବନ୍ଧରେ କୌଣସି ଉଚ୍ଚ ଧାରଣା ଜନ୍ମେ ନାହିଁ ।

କିନ୍ତୁ ଜଗନ୍ନାଥ ଦାସ "ପ୍ରବୁଦ୍ଧ ଅବତାରେ । ଜ୍ଞାନ ବିସ୍ତାରେ ଏ ସଂସାରେ ॥" ଏହି ଗୋଟିଏ ମାତ୍ର ବାକ୍ୟରେ ବୁଦ୍ଧଚରିତ୍ରର ସକଳ ସୌନ୍ଦର୍ଯ୍ୟ ମହନୀୟତା ଉଦ୍‌ଘାଟିତ କରିଦେଇଅଛନ୍ତି । ଜଗନ୍ନାଥ ଦାସଙ୍କ ନାରୀଚରିତ୍ର ସୁଷମା ଓ ଶାଳୀନତାର ଏକ ଅପୂର୍ବ ସମନ୍ୱୟ । ପୁତ୍ରଶୋକକାତରା ପ୍ରତିହିଂସାପରାୟଣା ଦ୍ରୌପଦୀଙ୍କର ହୃଦୟରେ ବିଶ୍ୱମାତୃତ୍ୱର ସନ୍ଧାନ ଦେଇ ସେ ଏହି ଚରିତ୍ରଟିକୁ ବିଶ୍ୱର ଚିରନ୍ତନୀ ନାରୀସୃଷ୍ଟିର ଆଦର୍ଶସ୍ଥାନୀୟା କରି-ଦେଇଛନ୍ତି । ଦ୍ରୌପଦୀଙ୍କ ପଞ୍ଚପୁତ୍ରର ହତ୍ୟାକାରୀ ଅଶ୍ୱତ୍ଥାମାଙ୍କୁ ଅର୍ଜୁନ ବାନ୍ଧି ଆଣି ଶେଷ ବିଚାର ପାଇଁ ଦ୍ରୌପଦୀଙ୍କ ସମକ୍ଷରେ ଉପସ୍ଥାପିତ କରି କହିଲେ—

"ତକ୍ଷଣେ ଉଠି ବୀର ପାର୍ଥ । ବଧ ନ କର ଗୁରୁସୁତ ॥
ଦ୍ରୌପଦୀ ଆଗେ ନେଇ ଦେଲା । 'ତୋ ରିପୁ ସମ୍ଭାଳ' ବୋଇଲା ॥
ଦ୍ରୌପଦୀ ତାର ମୁଖ ଚାହିଁ । ତକ୍ଷଣେ ଚିତ୍ତେ ଦୟାବହି ॥

ପୁଣ ଙ୍କ ଶପୁ ଏ ନୟତ । ସ୍ୱଭାବେ ଦ୍ରୋଣ ଗୁରୁସୁତ ॥
ଅନ୍ତରେ ନମସ୍କାର କଲା । ଅର୍ଜୁନ ମୁଖକୁ ଗୃହିଲା ॥
ବୋଲଇ ବେନିକର ଯୋଡ଼ି । ବନ୍ଧନ ଦଅ ବେଗେ ଫେଡ଼ି ॥
ସ୍ୱଭାବେ ବିପ୍ରଗୁରୁଜନ । ବିଶେଷେ ଦ୍ରୋଣଙ୍କ ନନ୍ଦନ ॥

× × ×

ଏ ତୋର ଧର୍ମ ଗୁରୁକୁଳ । ଏହାଙ୍କୁ ଭଲେ ପୂଜାକର ॥
ଏହାର ଗଉତମୀ ମାତା । ସେ ପୁଣ୍ୟବନ୍ତି ପତିବ୍ରତା ॥
ବେଦନ ନ କରୁ ସେ ଶୋକେ । ମୋହର ପ୍ରାୟେ ଅଶ୍ରୁମୁଖେ ॥"

(ଭା ୧-୭-୭୪)

ଉତ୍ତରାର ଗର୍ଭସ୍ଥ ସନ୍ତାନର ବିନାଶ ପାଇଁ ଅଶ୍ୱତ୍ଥାମାଦ୍ୱାରା ନିକ୍ଷିପ୍ତ ବ୍ରହ୍ମାସ୍ତ୍ରର କରାଳରୂପ ଦର୍ଶନରେ ଏକାନ୍ତ ଭୀତା ଓ ଶୋକବିହ୍ୱଳା ଉତ୍ତରାର ସ୍ୱଜୀବନ ବିନିମୟରେ ଗର୍ଭସ୍ଥ ସନ୍ତାନର ଜୀବନରକ୍ଷା ପାଇଁ ଶ୍ରୀକୃଷ୍ଣଙ୍କଠାରେ କରୁଣ-କାତର ନିବେଦନ ଏହି ଚରିତ୍ରଟିକୁ ଅନନ୍ତ ମାତୃତ୍ୱର ଗୌରବରେ ମଣ୍ଡିତ କରିଅଛି—

"ଗଗନେ ଆସୁଅଛି କ୍ଷେପି । ଉତ୍ତରା ଭୟେ ତାହା ଦେଖି ॥
ଧାଇଁ ଇ ପ୍ରାଣର ବିକଳେ । କେଶ ବସନ ଅସମ୍ଭାଳେ ॥
ବିକଳେ ବେନିକର ତୋଳି । ଡାକଇ ରଖ ବନମାଳି ॥
ହେ ଦେବ ଦେବଜଗନ୍ନାଥ । ଭବ ନିବାରେ ତୁହି ଜାତ ॥
ଅନାଥନାଥ ଭବତ୍ରାହି । ମୋତେ ସଙ୍କଟୁ କର ଥାହି ॥
ତୋ ତହୁଁ ନ ଜାଣଇ ଆନ । ଅଭୟ ସଙ୍କଟ ଭଞ୍ଜନ ॥
ଏ ଯେ ଗଗନମାର୍ଗେ ଶର । ଆସଇ ଯେହ୍ନେ ଦିବାକର ॥
ପାଣ୍ଡବକୁଳ ଏ ହରିବ । ଏହାକୁ କେବା ନିବାରିବ ॥
ତୋର ଶରଣ ଗଲି ମୁହିଁ । ମୋ ଗର୍ଭ ରଖ ଭବତ୍ରାହି ॥
ଏ ଗର୍ଭ ରବିତଳେ ଥାଉ । ମୋର ଜୀବନ ପଛେ ଯାଉ ॥"

(ଭା ୧-୧୦-୮)

ସତୀ ସାଧ୍ୱୀ ରାଜରାଣୀଠାରୁ ସମାଜପତିତା ବାରାଙ୍ଗନା ପର୍ଯ୍ୟନ୍ତ ନାନା ଶ୍ରେଣୀର ନାରୀଚରିତ୍ରରେ ଭାଗବତ ପୃଷ୍ଠାରାଜି ମଣ୍ଡିତ, ହେଲେହେଁ ନାରୀର କଲ୍ୟାଣମୟୀ ଜଗଦ୍ଧାତ୍ରୀ ଜନନୀମୂର୍ତ୍ତିଟିକୁ ଜଗନ୍ନାଥ ଦାସ ସର୍ବଶ୍ରେଷ୍ଠ ଆସନ ପ୍ରଦାନ କରିଅଛନ୍ତି । ବିଶ୍ୱମାତୃତ୍ୱର ଜୟଗାନରେ ତାଙ୍କର ଲେଖନୀ ମୁଖର ହୋଇଉଠିଛି । କୁନ୍ତୀ, ଗାନ୍ଧାରୀ, ଦେବକୀ, ଯଶୋଦା, ସୁନୀତି ଆଦି ଚରିତ୍ରଗୁଡ଼ିକ ଏହାର ସମୁଜ୍ଜ୍ୱଳ ନିଦର୍ଶନ । ଜଗନ୍ନାଥ ଦାସ ଥିଲେ ଭଗବାନଙ୍କର ପରମଭକ୍ତ । ସେଥିପାଇଁ ଧ୍ରୁବ, ପ୍ରହ୍ଲାଦ, ସୁଦାମା, ଉଦ୍ଧବ, ଅମ୍ବରୀଶ ଓ ନାରଦାଦି ଭକ୍ତାଗ୍ରଣୀମାନଙ୍କର ଚରିତ୍ର ଅଙ୍କନରେ ତାଙ୍କର ଚିରସଂଯତ ଲେଖନୀ ଚଳଚଞ୍ଚଳ ହୋଇଉଠିଛି । ଏହି ଭକ୍ତମାନଙ୍କର ଚରିତ୍ର ଏପରି ଜୀବନ୍ତ ଓ ପ୍ରାଣସ୍ପର୍ଶୀ ହୋଇଅଛି ଯେ ନିହାତି ବିଷୟୀ ଓ ନାସ୍ତିକ ଲୋକର ହୃଦୟ ମଧ୍ୟ ଭକ୍ତିରସରେ ପରିପ୍ଲୁତ ହୋଇଯାଏ ।

## ଗାଥା ସଂପଦ :

ଭାଗବତର ଗାଥା-ସମ୍ପଦ ଅତୁଳନୀୟ । ଏଥିରେ ସନ୍ନିବେଶିତ ଅମର ଗାଥାସମୂହ ଯୁଗ-ଯୁଗଧରି କୋଟି କୋଟି ଶିଶୁ, ବାଳକବାଳିକା ଓ ତରୁଣ-ତରୁଣୀଙ୍କ ପ୍ରାଣକୁ ଉଦ୍‌ବେଳିତ ଓ ଅନୁପ୍ରାଣିତ କରିଆସୁଅଛି । ଜଗନ୍ନାଥ ଦାସଙ୍କ ଗଳ୍ପକଥନଶୈଳୀ ମଧ୍ୟ ଅତୀବ ଚମତ୍କାର । ସହଜ ସରଳ ପ୍ରକାଶ-ଶୈଳୀ ସାଙ୍ଗକୁ କଥନଭଙ୍ଗୀର ସାବଲୀଳତା ପାଠକ ବା ଶ୍ରୋତାକୁ ଗଳ୍ପର ଉଚ୍ଛଳ ପ୍ରବାହରେ ଏପରି ଗମ୍ଭୀରଭାବରେ ମଜାଇଦିଏ ଯେ ସେ ଗଳ୍ପଟିକୁ ଶେଷ ନକରି ରହିପାରେନାହିଁ । କଥନଭଙ୍ଗୀର ଏ ତନ୍ମୟତା କ୍ୱଚିତ୍ ଦୃଷ୍ଟ ହୁଏ । ଜଗନ୍ନାଥ ଦାସଙ୍କ ଭାଗବତର ଏହି ଗାଥାଗୁଡ଼ିକ ପରବର୍ତ୍ତୀ କାଳରେ ବହୁ କାବ୍ୟ-କବିତା, ଭଜନ ଓ ଜଣାଣ ପାଇଁ ଉପାଦାନ ଯୋଗାଇଅଛି ।

## ଗୀତିକାବ୍ୟତ୍ୱ :

ଗୀତିକାବ୍ୟର ପ୍ରଧାନ ବିଶେଷତ୍ୱ ହେଉଛି ତାର ଭାବାତିଶଯ୍ୟ, ଅନୁଭୂତି-ପ୍ରଚୁରତା ଏବଂ ସଙ୍ଗୀତାତ୍ମକତା । ଭାଗବତ ଏକ ଆଧ୍ୟାତ୍ମିକ ଓ ଦାର୍ଶନିକ

ତଥ୍ୟସମ୍ବଳିତ କାବ୍ୟଗ୍ରନ୍ଥ ହେଲେହେଁ ଏଥିରେ ଏପରି କେତେକ ସ୍ଥଳ ଅଛି ଯାହାର ଭାବାତିଶଯ୍ୟ, ଅନୁଭୂତିର ସାନ୍ଦ୍ରତା ଏବଂ ସଙ୍ଗୀତପ୍ରାଣତା ପାଠକର ହୃଦୟକୁ ଏକ ଅପୂର୍ବ ଭାବାବେଶରେ ଆଚ୍ଛନ୍ନ କରିଦିଏ । କୁମ୍ଭୀରର ଗ୍ରାସରୁ ଜୀବନରକ୍ଷା ପାଇଁ ଗଜରାଜର ଆକୁଳ ପ୍ରାର୍ଥନା, କୃଷ୍ଣଙ୍କ ବିରହରେ ଯଶୋଦା ଓ ଗୋପୀମାନଙ୍କର ବିଳାପ, ବ୍ରହ୍ମା, ନାରଦ, ଧ୍ରୁବ, ପ୍ରହଲ୍ଲାଦ, କୁନ୍ତୀ, ଦେବକୀ ଓ ବ୍ରଜାଙ୍ଗନାମାନଙ୍କର ଶ୍ରୀକୃଷ୍ଣସ୍ତୁତି ଗୀତିକବିତାର ଶ୍ରେଷ୍ଠ ନିଦର୍ଶନ । ଯୁଗେ ଯୁଗେ ଏଗୁଡ଼ିକ ଓଡ଼ିଆ ଗୀତିସାହିତ୍ୟର ଅମୂଲ୍ୟ ସମ୍ପଦ ହୋଇ ରହିବା ସଙ୍ଗେ ସଙ୍ଗେ କେତେ ଦୁଃଖୀ ପତିତ ଓ ନିର୍ଯାତିତଙ୍କର ପ୍ରାଣରେ ଆଶା ଓ ଆଶ୍ୱାସନାର ସାନ୍ତ୍ୱନାଗୀତି ଶୁଣାଉଥିବ ।

## ବର୍ଣ୍ଣନାବିଳାସ :

ଶ୍ରବ୍ୟ-କାବ୍ୟରେ ବର୍ଣ୍ଣନାର ଗୁରୁତ୍ୱକୁ କୌଣସି ପ୍ରକାରେ ନ୍ୟୂନ କରାଯାଇ ନ ପାରେ । ଯଥାର୍ଥରେ ବର୍ଣ୍ଣନା ହେଉଛି କାବ୍ୟର ଶଯ୍ୟାସ୍ୱରୂପ । ବର୍ଣ୍ଣନାଦ୍ୱାରା ହିଁ କବି ବା ଲେଖକ ବିଷୟଟିକୁ ପାଠକ ବା ଶ୍ରୋତାର ପ୍ରତ୍ୟକ୍ଷ ଗୋଚର କରାଇଥାନ୍ତି । କାଳିଦାସ, ଭବଭୂତି, ଭାରବୀ, ବାଣଭଟ୍ଟ, ଶ୍ରୀହର୍ଷ, ସେକ୍ସପିଅର, ଟେନିସନ ଆଦି କବିଗଣ ସେମାନଙ୍କର ବର୍ଣ୍ଣନାର ଚମତ୍କାରିତା ପାଇଁ ବିଶ୍ୱପ୍ରସିଦ୍ଧ । ଚରିତ୍ରଚିତ୍ରଣ ଓ ଭାବବିଶ୍ଳେଷଣ ଭାଗବତର ପ୍ରଧାନ ଲକ୍ଷ୍ୟ ହେଲେହେଁ ରୂପ, ଗୁଣ, ସ୍ୱଭାବ, ପ୍ରବୃତ୍ତି, ମାନସିକ ଅବସ୍ଥା, ବାହ୍ୟ କ୍ରିୟାକଳାପ, ଘଟଣା ଓ ବହିଃ ପ୍ରକୃତିର ସୌନ୍ଦର୍ଯ୍ୟବର୍ଣ୍ଣନାରେ ଜଗନ୍ନାଥ ଦାସ ଅସାମାନ୍ୟ ପ୍ରତିଭା ଓ ଅନୁପମ କଳାବୋଧର ପରିଚୟ ପ୍ରଦାନ କରି ଅଛନ୍ତି । ସାରଲ୍ୟ ସଙ୍ଗେ ସଂଯମ ଓ ସୌନ୍ଦର୍ଯ୍ୟର ଅଦ୍ଭୁତ ଯୋଗ ତାଙ୍କ ବର୍ଣ୍ଣନା-ଶୈଳୀର ପ୍ରଧାନ ବିଶେଷତ୍ୱ । ତାହାଙ୍କ ବର୍ଣ୍ଣନା ପାଠକଲେ ମାନେ ମନେହୁଏ ସତେ ଯେପରି ବର୍ଣ୍ଣମାନ ବସ୍ତୁଟି ପାଠକ ବା ଶ୍ରୋତାର ଚକ୍ଷୁ-ସମକ୍ଷରେ ସଂଘଟିତ ହେଉଅଛି । ନିମ୍ନରେ ଅଳ୍ପ କେତୋଟି ଉଦାହରଣ ଦିଆଗଲା ।

**ରୂପ :**

“ତା ଦେଖି ନୃପତିନନ୍ଦନ । ହୋଇଲା ଅନଙ୍ଗେ ବନ୍ଧନ ॥
ଜଡ଼ର ପ୍ରାୟେ ସେ ହୋଇଲା । କାହୁଁ ତୁ ଅଇଲୁ ବୋଇଲା ॥
ବନଦେବତା ମାୟା କରି । ବନେ ଖେଳଇ ବନ ହେରି ॥
କାମର ଅସ୍ତ୍ରମାନ ଯୋଖି । କି ଅର୍ଥେ ବୁଲୁ ତୁ ମୃଗାକ୍ଷୀ ॥
ମୋ ଆଗେ କହ ତୁ ବଚନ । ମୃଗକୁ ଲୋଡ଼ୁ କି କାରଣ ॥
ତୋ ବେନି କମଳନୟନ । ନିଶ୍ଚୟେ ଅନଙ୍ଗର ବାଣ ॥
କାହାକୁ ବିନ୍ଧିବୁ ସୁନ୍ଦରୀ । କହ ତୁ ମାୟା ଦୂର କରି ॥
ଯେଉଁ ଲୋକରେ ଦୟାକରି । ଅନଙ୍ଗ-ଅନଳେ ନ ମାରି ॥
ତୋହର ଶିରୁ ଶ୍ଳଥ ହୋଇ । କୁସୁମମାଳା ପଡ଼ୁଛଇ ॥
ଚରଣପଙ୍କଜ ତୋହର । ମଧୁର ବାଜଇ ନୂପୁର ॥
ଶରୀର ପୁଲକ ତୋହର । ଉତ୍ଫୁଲ ଘନ କୁଚଭର ॥
କି ଅବା ଚକ୍ରବାକ ବେନି । ଶରୀରେ ବହୁଛୁ କାମିନୀ ॥
ମଧ୍ୟଭାଗ ଯେ ଜାଣି ତୋର । ଅଟଇ ଅତି ମନୋହର ॥
ତହିଁ ମୋ ନୟନଯୁଗଳ । ଆଶ୍ରୟେ କଲାକ ନିଶ୍ଚଳ ॥
ଏ ମୋର ତପୋବନ ଭୂମି । ଅତି ସୁନ୍ଦର କଲୁ ପୁଣି ॥
ଯାହାର ନୟନ ଗୋଚର । ହୋଇବ ରୂପ ଗୁଣ ତୋର ॥
ଅନଙ୍ଗବଶ ହୋଇ ସେ କି । ରହିବ ଏମନ୍ତ ହୋଇ କି ॥”

[ଶ୍ରୀ: ୫-୨]

**ଗୁଣ :**

“ଶୁଣ ହେ ଧର୍ମର ନନ୍ଦନ । ଆମ୍ଭର ଆଶିଷ ବଚନ ॥
ପ୍ରଜାପାଳନେ ଏ ନିଶ୍ଚିତ । ଯେହ୍ନେ ଇକ୍ଷ୍ୱାକୁ ମନୁସୁତ ॥
ବ୍ରାହ୍ମଣ ଜନ ହିତକର । ସତ୍ୟ ପ୍ରତିଜ୍ଞ ଗୁଣଧର ॥
ଏହାର ଯଶ ସର୍ବ ଦେଶେ । ଯେହ୍ନେ ଶ୍ରୀରାମ ରଘୁବଂଶେ ॥
ଦାତାଙ୍କ ମଧ୍ୟେ ଏ କୁମର । ଶିବି ଯେସନେ ଦୟାଧୀର ॥
ଭରତ ସମ ଆଜ୍ଞାକାରୀ । ଅର୍ଜୁନ ସମ ଧନୁର୍ଦ୍ଧାରୀ ॥

ହୁତାଶ ପ୍ରାୟେ ତେଜୋମୟେ । ବୁଦ୍ଧିର ସମୁଦ୍ରର ପ୍ରାୟେ ॥
ବଚନେ ଯେସନେ କେଶରୀ । ଆଶ୍ରୟେ ଯେହ୍ନେ ହିମଗିରି ॥
ପୃଥିବୀ ସମ ଧୀରଚେତା । ସହସ୍ତ୍ରେ ଯେହ୍ନେ ପିତାମାତା ॥"

[ଭାଃ ୩୧-୧୬-୬୦]

## କ୍ରିୟା ଓ ଗତି :

"ବାଳକେ ରାମକୃଷ୍ଣ ମେଳେ । ଯୁଦ୍ଧ କରନ୍ତି ବାହୁବଳେ ॥
କୃଷ୍ଣର ନୃତ୍ୟ ଦେଖି ପୋଏ । ରାମଙ୍କୁ ବେଢ଼ିଲେ ଥୋକାଏ ॥
ଖେମଟା ନାଦେ ଗୀତ ଗାଇ । କେ ଧାଏଁ ଶିଙ୍ଗାନାଦ ବାଇ ॥
ତାଳ ମୁରୁଳୀ ଗାଳଉର । ନାଚନ୍ତି ବ୍ରହ୍ମାଣ୍ଡଠାକୁର ॥
ନୃତ୍ୟର ଅନ୍ତେ ପରଶଂସି । କେ ତହିଁ କହନ୍ତି ଆଶ୍ବାସି ॥
ଦେବେ କରନ୍ତି ନାନା ସ୍ତୁତି । ହରଷେ ପୁଷ୍ପ ବରଷନ୍ତି ॥
କୃଷ୍ଣର ସଙ୍ଗେ ନୃତ୍ୟ କରି । ବୁଲନ୍ତି ବୃନ୍ଦାବନ ହେରି ॥
କେ ବଳ ଏକୁ ଆରେ ଧରି । ଡାକନ୍ତି ବାହ୍ୱାନାଦ କରି ॥
କୃଷ୍ଣ ଉଠିଲେ ଉଚ୍ଚ ବୃକ୍ଷେ । ଫଳ ତୋଳନ୍ତି ନାନା ଶିଖେ ॥
ପୋଏ ଆଣିଲେ ଯେତ୍ୟାମତେ । ଅମରଲୋକେ ଯୂଥେ ଯୂଥେ ॥
ଏକ ଆରେକ ମଉମର । ସାକ୍ଷୀ କେ କରନ୍ତି ମୁରାରି ॥
କର ଚରଣ ଧରି ଛନ୍ଦେ । ଯୁଦ୍ଧ କରନ୍ତି ନାନା ବନ୍ଧେ ॥
କେ ପଛେ ଥାଇ ଚକ୍ଷୁ ବୁଜି । ନାମ ଧରନ୍ତି ମନେ ହେଜି ॥
ମୃଗର ପ୍ରାୟେ କେହୁ ଧାଇଁ । ପକ୍ଷୀଙ୍କ ପ୍ରାୟେ କେ ଉଡ଼ଇ ॥
ଭେକର ପ୍ରାୟେ କେ ବୁଡ଼ନ୍ତି । ଗୁଳନ୍ତି ଦେଖି ହଂସପନ୍ତି ॥
ବସ୍ତ୍ର ପାଲଟି ବୃକ୍ଷଡାଳେ । ଦୋଳି କରନ୍ତି କୁତୂହଳେ ॥
ପର୍ବତ କୁଞ୍ଜ ନଦୀକୂଳେ । କୃଷ୍ଣ ଖେଳନ୍ତି ଗୋପମେଳେ ॥"

[ଭାଃ ୧୦-୧୯]

## ମାନସିକ ଅବସ୍ଥା :

"ହେ ମୋର କୃଷ୍ଣସାରବାଳ । ମୃଦୁ ତାହାର ପାଦତଳ ॥
କୋମଳ ଖୁରୁ ପୁଟପନ୍ତି । ସେ ମୋର ଦ୍ରବଣ ସମ୍ପତ୍ତି ॥

ପଥରେ ପଦଚହ୍ନ ଦେଖି । କହଇ ନରେଖି ନରେଖି ॥
ଧନ୍ୟ ପୃଥିବୀ ! ତୋର ପୁଣ୍ୟ । ଏ ଚହ୍ନ କଲୁ ତୁ ଧାରଣ ॥
ବିପ୍ରଙ୍କ ଯଜ୍ଞସ୍ଥାନ ପ୍ରାପ୍ତେ । ତୋ ଦେହଶୋଭାକୁ ସେ ପାଏ ॥
ପୁଣି ଉର୍ଦ୍ଧ୍ୱକୁ ଦୃଷ୍ଟିଦେଲା । ଯହୁଁ ସେ ଚନ୍ଦ୍ରଙ୍କୁ ଦେଖିଲା ॥
ତହିଁ ଦେଖିଣ ମୃଗଚହ୍ନ । ଭାବିଲା ନିଜ ମନେ ମନ ॥
ମୃଗଶାବକ ଦେଖି ଏକ । ଦୟାରେ କ ତାରାନାୟକ ॥
ସିଂହଭୟରୁ ରକ୍ଷାକଲେ । ଆପଣା ନିକଟେ ରଖିଲେ ॥
ଅତ୍ୟନ୍ତ ସୁଖକୁ ସେ ଦେଇ । ତା ବିନୁ ମୋର କେହି ନାହିଁ ॥"

[ଖ୍ରୀ: ୫-୮-'୭]

**ପ୍ରକୃତି-ଚିତ୍ର :**

"ଏବେ ଗ୍ରୀଷ୍ମ କାଳ ଗଲା । ବରଷା ଋତୁ ପ୍ରକାଶିଲା ॥
ସକଳ ଋତୁଙ୍କର ସାର । ଶସ୍ୟ ସମୃଦ୍ଧ ମଞ୍ଜପୁର ॥
ମେଘେ ମିଳିଲେ ଶୂନ୍ୟପଥେ । ବିଜୁଳି ଶବଦ ସଙ୍ଗତେ ॥
ଭୂମି ସାଗର ଶୂନ୍ୟେ ବ୍ୟାପୀ । ନୀଳ ଜୀମୂତ ବିଶ୍ୱରୂପୀ ॥
ଯେମନ୍ତେ ନିବିଡ଼ ଆକାଶ । ଭୂମିର ରସ ଅଷ୍ଟମାସ ॥
ଆଦିତ୍ୟ କରିଥିଲା ଗ୍ରାସ । ସେ ତାପ କଲା ମେଘ ନାଶ ॥
ମହୀମଣ୍ଡଳ ଦୁଃଖ ଗୁହିଁ । ଜଳ ଗ୍ରୁଡ଼ିଲା ତୋଷ ହୋଇ ॥
ଘୋର ଶବଦେ ମେଘମାଳ । ଗର୍ଜିଣ ବରଷନ୍ତି ଜଳ ॥
ପ୍ରାଣୀ ଜୀବନ ଜଳରାଶି । କରୁଣା ଚିତ୍ତରେ ବରଷି ॥
ଗୋପନଗର ସୀମା ଯେତେ । ରୁନ୍ଧିଲେ ଦିଗ ଶୂନ୍ୟପଥେ ॥
ପୃଥିବୀ ରବି ତପ୍ତ ଗ୍ରାସେ । ତାପିତ ଥିଲା ଅଷ୍ଟମାସେ ॥
ଜଳ ପାଇଲେ ତୋଷଚିତ୍ତେ । ତପସ୍ୱୀ ଜନଙ୍କର ମତେ ॥
ତପସ୍ୟା ଫଳ ଯେସ୍ନେ ପାଇ । ଭୁଞ୍ଜନ୍ତି ଅତି ସୁଖୀ ହୋଇ ॥
ଖଦ୍ୟୋତ କୀଟ ନିଶାମୁଖେ । ଜଗତ ଆବୋରିଲେ ସୁଖେ ॥
ପାଷାଣ୍ଡେ ଯେସ୍ନେ କଳିଯୁଗେ । ବେଦ ନିନ୍ଦନ୍ତି ଯୋଗମାର୍ଗେ ॥

ମଣ୍ଡୁକେ ମେଘନାଦ ଶୁଣି । ଗର୍ଜନ୍ତ ଆବୋରଣ ପାଣି ॥
ଅଳପ ନଦୀଏ ପୂରିଲେ । ଲହଗ୍ଣ ମତେ ଉଛୁଳିଲେ ॥"
[ଭା: ୧୦-୧୯]

**ବସ୍ତୁ-ବର୍ଣ୍ଣନା :**

"ବିଶ୍ୱକର୍ମାଙ୍କ ସେ ସୁମର । ବିମାନ ତପବଳେ କର ॥
ଯହିଁ କଳ୍ପିତ ବସ୍ତୁସ୍ତୁତ । ଅଶେଷ ରତ୍ନେ ସେ ନିର୍ମିତ ॥
ମଣି-ନିର୍ମିତ ସ୍ତମ୍ଭକୁଳେ । ସକଳ ଋତୁ ପୁଷ୍ପଫଳେ ॥
ଦେବଙ୍କ ଦିବ୍ୟଭୋଗ ଯହିଁ । ସର୍ବଦା କାଳ ସୁଖମୟୀ ॥
ବିଚିତ୍ର ଚିତ୍ର ବସ୍ତ୍ରମୟେ । ଚିତ୍ର ପତାକା ଧ୍ୱଜ ଶୋହେ ॥
ସୁଗନ୍ଧ ପୁଷ୍ପ ମାଳେ ମାଳେ । ଯେ ରଥେ ଲମ୍ବିଛି ଗହଳେ ॥
ଗମ୍ଭୀର ଭୃଙ୍ଗନାଦ ଶୋହେ । ପାଟବସନ ମନ ମୋହେ ॥
ଉପରେ ମାଳରତ୍ନମଣି । ବିରାଜେ ରବିତେଜ ଜିଣି ॥
ସେ ପୁରେ ସୁବର୍ଣ୍ଣ ପଲଙ୍କେ । ବିରାଜେ ପୃଥକେ ବୈଠକେ ॥
ବିଶ୍ୱକର୍ମାର ଶିଳ୍ପପଣ । ଯେ ରଥ କରିଛି ଘଟଣ ॥"
[ଭା: ୩-୧୩-୯]

ଜଗନ୍ନାଥ ଦାସଙ୍କ ବର୍ଣ୍ଣନାର ଏ ଚମତ୍କାରିତାର ମୂଳରେ ଅଛି ତାହାଙ୍କ କଥନଭଙ୍ଗୀର ଋଜୁ ମନୋହାରିତା, ଶବ୍ଦାର୍ଥସମ୍ଭାରର ସଯତ୍ନ ବିନ୍ୟାସ ଏବଂ ଶବ୍ଦାଳଙ୍କାର ତଥା ଅର୍ଥାଳଙ୍କାରର ସୁରୁଚି ସନ୍ନିବେଶ ।

**ରସ-ବୈଚିତ୍ର୍ୟ :**

ଭାଗବତ ଏକ ଅପୂର୍ବ ରସମୟ କାବ୍ୟ—"ବାକ୍ୟଂ ରସାତ୍ମକଂ କାବ୍ୟମ୍" —ସଂସ୍କୃତ ଆଳଙ୍କାରିକମାନଙ୍କର ଏ ଉକ୍ତି ଜଗନ୍ନାଥ ଦାସଙ୍କ ଭାଗବତରେ ପରିପୂର୍ଣ୍ଣ ସାର୍ଥକତା ଲାଭ କରିଅଛି । ଭାଗବତର କାନ୍ତକୋମଳ ପଦାବଳୀ ପାଠ କରୁ କରୁ ପାଠକ ଏପରି ଭାବବିହ୍ୱଳ ହୋଇପଡ଼େ ଯେ ତାର ଆଉ ବାହ୍ୟଜ୍ଞାନ ରହେନାହିଁ । ଯଥାର୍ଥରେ ଭଗବାନ ହେଉଛନ୍ତି ଅଖିଳ ରସର ଆଧାର (ରସ ବୈ ସଃ) । ସେହି ରସର ଏକ କ୍ଷୁଦ୍ରାତିକ୍ଷୁଦ୍ର କଣାମାତ୍ର ଲାଭକରି

ଚରାଚର ବିଶ୍ୱବ୍ରହ୍ମାଣ୍ଡ ଆନନ୍ଦସାଗରରେ ନିମଗ୍ନ ହୁଏ । ଭଗବାନ ଶ୍ରୀକୃଷ୍ଣଙ୍କର ପୁଣ୍ୟ ଚରିତ ଭାଗବତର ପ୍ରଧାନ ଉପଜୀବ୍ୟ ହୋଇଥିବାରୁ ସକଳ ରସର ପ୍ରମଧୁର ସମାବେଶ ଏଥିରେ ଦୃଷ୍ଟ ହୁଏ । ଅବଶ୍ୟ ଭାଗବତ ଶାନ୍ତରସପ୍ରଧାନ ହେଲେ ହେଁ ଏହି ମୂଳରସର ପରିପୋଷକ ବା ସହାୟକରୂପେ ଶୃଙ୍ଗାର, ହାସ୍ୟ, ବୀର, କରୁଣାଦି ବିବିଧ ରସର ଅବତାରଣା କରାଯାଇଛି । ବିବିଧ ରସ ଓ ସେହି ସେହି ରସର ପରିପୋଷକ ସ୍ଥାୟୀଭାବ, ବିଭାବ, ଅନୁଭାବ, ବ୍ୟଭିଚାରୀ ଓ ସଂଚାରୀ ଭାବାଦିର ପରିସ୍ଫୁଟନରେ ଜଗନ୍ନାଥ ଦାସ କାବ୍ୟକଳାର ଚରମ ପରାକାଷ୍ଠା ପ୍ରଦର୍ଶନ କରିଅଛନ୍ତି । ନିମ୍ନୋକ୍ତ କେତୋଟି ଉଦାହରଣରୁ ଏହାର ସତ୍ୟତା ପ୍ରତିପନ୍ନ ହୁଏ ।

**ଶୃଙ୍ଗାର :**

"ଅଦ୍ଭୁତ ସୁଧାରସ ସାର । ଆନନ୍ଦ କରଇ ଅଧର ॥
ସୁରଙ୍ଗ ଦଶଇ ବାହାର । କି ଅବା ଦେବା ପଟାନ୍ତର ॥
ବିଷ୍ଣୁକଳାକୁ ରୂ କି ଧରି । ମର୍ତ୍ତ୍ୟକୁ ଅଇଲୁ ସୁନ୍ଦରୀ ॥
ମକରକୁଣ୍ଡଳ ତୋ କର୍ଣ୍ଣେ । ଚଞ୍ଚଳ ମୀନ କି ନୟନେ ॥
ଏ ତୋର ଦନ୍ତପନ୍ତି ଦୁଇ । ଦାଡ଼ିମ ମଞ୍ଜିକୁ ଗଞ୍ଜାଇ ॥
ଏ ବନ ସରୋବରେ ମୁହିଁ । କଷ୍ଟେ ତପସ୍ୟା ଆଚରଇ ॥
ତପସ୍ୟା ପୂର୍ଣ୍ଣ ହେଲା ମୋର । ଯେଣୁ ତୁ ନୟନଗୋଚର ॥
କିବା ପ୍ରଭୁଙ୍କ ପ୍ରସନ୍ନରେ । ସୁନ୍ଦରୀ ମିଳିଲୁ ମୋହରେ ॥
ପ୍ରସନ୍ନ ହୁଅ ମୋତେ ତୁହି । ମିତ୍ରଭାବରେ ମୁଁ ଭଜଇ ॥"

[ଭାଃ ୫-୬]

**ବୀର :**

"ଏମନ୍ତେ ସଂଗ୍ରାମେ ଅସୁର । ଶ୍ରୁତିବ ବୋଲି କଳେବର ॥
ଜୟରୁ ଭଲ ମୋ ମରଣ । ମନରେ କଲା ହୋ ଗର୍ଜନ ॥
ଶୂଳକୁ ଧରି ବୃତ୍ରାସୁର । ଧାଇଁଲା ଇନ୍ଦ୍ରର ଉପର ॥
ଯେମନ୍ତେ କଇଟଭ ବୀର । ଧାଇଁଲା ବିଷ୍ଣୁଙ୍କ ଉପର ॥

ସ୍ବର୍ଗାନ୍ତ ଅଗ୍ନି ପ୍ରାୟ ତେଜେ । ଯେ ଶୂଳ ଅତ୍ୟନ୍ତ ବିରାଜେ ॥
ବୃତ୍ର ଅସୁର-ଚୂଡ଼ାମଣି । ଇନ୍ଦ୍ରଙ୍କୁ ପ୍ରହାରିଲା ଆଣି ॥
ଘୋର ଶବଦ ରୋଷେ କଲା । ପାପିଷ୍ଠ ମଲୁଟି ବୋଇଲା ॥
ଆକାଶୁ ଗ୍ରହ ଉଲ୍‌କାମାନ । ଖସିପଡ଼ିଲେ ତତକ୍ଷଣ ॥
ଦୁଃହେ ଦେଖିଣ ଅସୁର । ଭୟେ କମ୍ପିଲେ ସୁରନର ॥
ତହିରେ କରି ଦେବରାଜ । ଛେଦିଲେ ତାର ଏକ ଭୁଜ ॥
ପରିଘ ଘେନି ଆର କରେ । ଧାଇଁଲା ଇନ୍ଦ୍ରର ଉପରେ ॥
ଦେବରାଜ ନିକଟେ ଯାଇ । ସମ୍ମୁଖେ ପ୍ରହାରିଲା ନେଇ ॥
ଇନ୍ଦ୍ରହସ୍ତୁ ବଜ୍ର ଖସିଲା । ଅଧୋ ଭୂମିରେ ସେ ପଡ଼ିଲା ॥
ସିଦ୍ଧ କିନ୍ନର ଦେବଗଣ । ସକଳେ କଲେ ଧନ୍ୟ ଧନ୍ୟ ॥"

[ଭାଃ ୬-୧୨-୧୨]

**କରୁଣ :**

"ଏମନ୍ତେ ରାଜାର ବଚନ । ଅର୍ଜୁନ ଶୁଣି ଶୋକମନ ॥
ଯେତେ କହିଲେ ଧର୍ମସୁତ । ଶଙ୍କୁନ ଦେଖି ବିପରୀତ ॥
କୃଷ୍ଣ ବିୟୋଗେ ଖେଦମନ । ସ୍ବଭାବେ ଶୁଖିଛି ବଦନ ॥
ତେଜ ପ୍ରଭାବ ଦୂରେ ଗଲା । ଜୀବନ ଥାଉଁ ଦେହମଲା ॥
ଶୋକେ କମ୍ପଇ କଳେବର । ବଦନୁଁ ନ ସ୍ଫୁରେ ଉତ୍ତର ॥
ଲୋଚନେ ଦେଇ ବେନି କର । ଶୋକ ସମ୍ବରି ବୀରବର ॥
ଶୋକେ କୁଣ୍ଠିତ କଣ୍ଠଦ୍ବାର । କହିଲେ ନ ସ୍ଫୁରେ ଉତ୍ତର ॥
ସଖା ସୁହୃଦ ନନ୍ଦବଳା । ସାରଥିପଣେ ଯାହା କଲା ॥
ଏ ଆଦି ଯେତେ କୃଷ୍ଣ ଗୁଣ । ସୁମରି କାନ୍ଦେ ପୁଣ ପୁଣ ॥
ରାଜାଙ୍କୁ ଚାହିଁ ମନଖେଦେ । ବୋଲଇ ଶୋକ ଗଦଗଦେ ॥"

[ଭାଃ ୧-୧୫-୧୩]

**ବାତ୍ସଲ୍ୟ :**

"ଯଶୋଦା ଅଙ୍କୁରକୁ ଚାହିଁ । କାନ୍ଦଇ କୃଷ୍ଣ କୋଳେ ନେଇ ॥
ବଜ୍ର ପଡ଼ିଲା ଶିରେ ଜାଣି । କାନ୍ଦନ୍ତି ଯଶୋଦା ରୋହିଣୀ ॥

ବିଧାତା କଲା ବିପରୀତ । କାହାକୁ ସମର୍ପିବି ସୁତ ॥
ଜୀବ ନଥିବ ଆଉ କାହିଁ । ମରିବି ପୁଅକୁ ନ ଚାହିଁ ॥
ଯଶୋଦା କୃଷ୍ଣଙ୍କୁ ଅନାଇ । କାନ୍ଦଇ ମୁଖେ ଚୁମ୍ବ ଦେଇ ॥
ତୁ କୃଷ୍ଣ ଗଲେ ମଧୁପୁରୀ । ଜୀବନ ନପାରିବି ଧରି ॥
ଗୋରୁ ଚରାନ୍ତ ଯେତେବେଳେ । କାନନେ ଗୋପ ସୁତ ମେଳେ ॥
ଦଣ୍ଡେ ମୁଁ ନଦେଖିଲେ ତୋତେ । ନିମିଷ ହୁଏ ଯୁଗମତେ ॥
ପୁଛଇ ଜଣେ ଜଣେ ଯାଇ । ପୁଅ ମୁଁ ନଦେଖିଲି କାହିଁ ॥
ଷଡ ହରିଣୀ ପ୍ରାୟେ ହୋଇ । ରବି କିରଣ ଚାହୁଁଥାଇ ॥
ବେଳ ଯେ ହୋଇଲା ଉଛୁର । କୃଷ୍ଣ ନଇଲା କମ୍ପା ଘର ॥
ଅନ୍ନ ଭୋଜନ ମାନ ପିତା । ତୋତେ ନ ଦେଖି ମୋର ଚିନ୍ତା ॥
ନିମିଷ ଯୁଗ ପ୍ରାୟେ ହୋଇ । ଘର ବାହାର ନ ରୁଚଇ ॥
ତୋର ବଦନ ଯେତେବେଳେ । ଦେଖଇ ନୟନ ଯୁଗଳେ ॥
ତେବେ ମୋ ଜୀବନ ପଶଇ । ସର ଲବଣୀ ତୋତେ ଦେଇ ॥
ଏବେ ତୁ ମଧୁପୁର ଗଲେ । ମୁହିଁ ଯିବଇଁ ତୋର ତୁଲେ ॥"

[ଶ୍ଳୋ: ୧୦-୪୧]

## ହାସ୍ୟ :

"କୃଷ୍ଣ ବିକଳ ଦେଖି ମାତା । ଗ୍ଳାଟ କରାଇ କଲେ ଚିନ୍ତା ॥
ବୋଲଇ ବାନ୍ଧିବି ଏହାରେ । ବେପାର କରୁଥିବି ଘରେ ॥
ଗୋଲେ ଖଟାଇ ଥିବି ନିତି । ଏଣେ ନଥିବ • ମୋର ଭୀତି ॥
ଏତେ ବିଚାରି ପରିମଳ । ଘରୁ ଆଣିଲା ବେଗେ ଗୋଲ ॥
ଦାଉଡ଼ି ଘେନି ଅଛି ହସ୍ତ । ଦେଖି କାନ୍ଦନ୍ତି ଗୋପୀନାଥ ॥
ଅଣ୍ଟାରେ ବାନ୍ଧିଲା ତା ନେଇ । ବେନି ଅଙ୍ଗୁଳି ନ ଅଣ୍ଟଇ ॥
ଘରେ ଯେତେକ ରଜ୍ଜୁ ଥିଲା । ସମସ୍ତ ଘରୁ ଅଣାଇଲା ॥
ତାହା ଯୋଖଇ ବେଗେ ନେଇ । ବେନି ଅଙ୍ଗୁଳି ନଅଣ୍ଟଇ ॥
କରଚରଣ ବେନି ଯୋଖି । ଦେଖି ଚକିତ ଗୋପଗୋପୀ ॥
ଗୋପୀ ହସନ୍ତି ତାହା ଚାହିଁ । ସମସ୍ତେ ମୁଖେ ହସ୍ତଦେଇ ॥

ଏକ ଆରକେ କରତାଳ । ମାରନ୍ତ ହୋଇ କୁତୂହଳୀ ॥
ବୋଲନ୍ତ ପରିହାସବାଣୀ । ଦଉଡ଼ି ନପାରିଲୁ ଆଣି ॥
ଗୁଣୀ ବୋଲାଉ ଗୋପପୁରେ । ନାନା ଭଣ୍ଡାର ତୋର ଘରେ ॥
ଦଉଡ଼ି ନାହିଁ ତୋ ଭୁବନେ । ବାଳକ ବାନ୍ଧିବୁ କେସନେ ॥”

[ସ୍କ: ୧୦-୬]

**ଅଦ୍ଭୁତ :**

“ମାୟା ନିର୍ମିତ ମାୟା ସଭା । କ ପଟାନ୍ତର ଦେବା ଅବା ॥
ସେ ସଭା ମଧ୍ୟେ ଧର୍ମସୁତ । ସଙ୍ଗେ ଅଛନ୍ତି ଚାରିଭ୍ରାତ ॥
କାଞ୍ଚନ-ଆସନେ ବିଜୟ । ଦିଶେ ଆକାଶ ଇନ୍ଦ୍ର ପ୍ରାୟ ॥
ବ୍ରହ୍ମାଙ୍କ ସଭା ପ୍ରାୟ ଦିଶି । ସୂତ ମାଗଧେ ପରଶଂସି ॥
ଏମନ୍ତେ ମିଳେ ଅନ୍ଧସୁତ । ସଙ୍ଗେ ଅଛନ୍ତି ଶତେଭ୍ରାତ ॥
ରତ୍ନ ମୁକୁଟ ଅଛି ଶିରେ । ହସ୍ତ ନିବେଶି ମନ୍ତ୍ରୀକରେ ॥
ମୟ ନିର୍ମିତ ମାୟା-ସଭା । ଯହିଁ ଭ୍ରମନ୍ତି ସୁରଦେବା ॥
କୃଷ୍ଣ ମହିମା ଅନ୍ତରାଳ । କ୍ଷଣକେ ଦିଶେ ଜଳସ୍ଥଳ ॥
ସ୍ଥଳକୁ ଜଳ ପ୍ରାୟମଣି । ବସ୍ତ୍ର ତୋଳିଲ ନୃପଜାଣି ॥
ଜଳକୁ ସ୍ଥଳ ପ୍ରାୟ ବୁଝି । ଭ୍ରମେ ବସିଲ ଚକ୍ଷୁବୁଜି ॥
ଜଳ ହୋଇଲା ସ୍ଥଳ ଭ୍ରାନ୍ତି । ମୟ ମାୟାରେ ମୋହଗତି ॥”

[ସ୍କ: ୧୦-୮୦-୩୬]

**ରୌଦ୍ର :**

“ଏମନ୍ତେ ପୁତ୍ର ମୁଖୁ ଶୁଣି । କୋପେ ଅସୁର ନୃପମଣି ॥
ତେଜିଁ ଉଠିଲା ଶିରଧୁଣି । ଖଡ଼ଗ କରେ ବୀରମଣି ॥
ପୁତ୍ରକୁ ଚାହିଁ କୋପଦୃଷ୍ଟି । ଓଷ୍ଠେ ଚାପିଣ ଦନ୍ତପାଟି ॥
ତତକ୍ଷଣ ଖଡ଼ଗ ଧରି କରେ । ଆସନୁ ଉଠି କୋପଭରେ ॥
ସ୍ତମ୍ଭକୁ ଚାହିଁ କୋପ ଦୃଷ୍ଟି । ପ୍ରହାର କଲା ବାମମୁଷ୍ଟି ॥

ତତକ୍ଷଣେ ଘୋର ନାଦକରି । ସ୍ତମ୍ଭ ଭିତରେ ନରହରି ॥
ଅତି ଭୀଷଣ ଘୋର ନାଦେ । ବ୍ରହ୍ମାଣ୍ଡ ପୂରିଲା ଶବଦେ ॥
ବ୍ରହ୍ମାଦି ଭୁବନ ପାଳକେ । ଭୟେ କମ୍ପିଲେ ଏକ ଏକେ ॥
ଶବଦ ଶୁଭେ ଘଡ଼ଘଡ଼ି । ବ୍ରହ୍ମାଣ୍ଡ ପଡ଼ିଲା କି ଝଡ଼ି ॥
ଅଦ୍ଭୁତ ଘୋରନାଦ ଶୁଣି । କୋପେ ଧାଇଁଲା ଖଡ୍ଗ ଘେନି ॥
ଦେଖି କମ୍ପିଲେ ଦିଗପାଳ । ଧଇଲେ ପ୍ରହ୍ଲାଦ ବାଳ ॥
ଦେଖଇ ସ୍ତମ୍ଭେ କେହି ନାହିଁ । ବୋଲଇ ପୁତ୍ର ମୁଖ ଚାହିଁ ॥
ଆଜ ପେଷିବି ଯମପୁର । ଦେଖା ତୋ କାହିଁ ଚକ୍ରଧର ॥"

**ଭୟାନକ :**

"ଏରୂପ ଦେଖିଲା ତ ନାହିଁ । ସ୍ତମ୍ଭେ ଏ ପ୍ରକାଶିଲା କାହିଁ ॥
ଦଗ୍ଧ କାଞ୍ଚନ ପ୍ରାୟ ବର୍ଣ୍ଣ । କର୍କଶ ପିଙ୍ଗଳ ଲୋଚନ ॥
ସ୍ଫୁରିତ କେଶର କମ୍ପନେ । ଜଳଦେ ଉଡ଼ିଲେ ଗଗନେ ॥
ବିସ୍ତାରି ତୁଣ୍ଡ ବେଦନକଲେ । ଜିହ୍ୱା ବୁଲଇ ଅନ୍ତରାଳେ ॥
ବିକଟ ଦନ୍ତ ବେନିପାନ୍ତି । ନିଷ୍ଠୁର ଚଞ୍ଚଳ ଭ୍ରୁକୁଟି ॥
ଊର୍ଦ୍ଧ୍ୱେ ଚଳଇ କର୍ଣ୍ଣଦୁଇ । ଗିରି ଗୁହାର ପ୍ରାୟ ହୋଇ ॥
ନାସିକା ରନ୍ଧ୍ର ଅନ୍ଧକାର । ହନୁ ବିଶେଷେ ଭୟଙ୍କର ॥
ଅଦୀର୍ଘ ସ୍ଥୂଳ ଗ୍ରୀବାଦେଶ । ଶରୀର ସ୍ପରଶେ ଆକାଶ ॥
ବିସ୍ତାରି ବକ୍ଷସ୍ଥଳ ସାଜେ । କ୍ଷୀଣ ଉଦର ଯେ ବିରାଜେ ॥
ଚନ୍ଦ୍ର ଗଉର ତନୁରୁହେ । ବିଶ୍ୱ ପୂରିତ ବିଶ୍ୱଦେହେ ॥
କର ଚରଣ ନଖାୟୁଧ । ତା ଦେଖି କମ୍ପିଲେ ବିବୁଧ ॥
ଅସୁରେ ପଳାଇଲେ ତ୍ରାସେ । ଭୟେ ଲୁଚିଲେ ଦଶଦିଶେ ॥"

[ଖ୍ରୀ: ୭-୮-୧୪-୨୦]

**ବୀଭତ୍ସ :**

"ଦଇବ ଯୋଗେ ହତଜ୍ଞାନ । ଯାଦବେ କଲେ ମଦ୍ୟପାନ ॥
କୃଷ୍ଣ ମାୟାରେ ବିମୋହିତ । ହୋଇଲେ ସର୍ବେ ମହାମତ୍ତ ॥
ଫଳିଲା ବ୍ରହ୍ମ ଶାପଫଳ । ଅଦ୍ଭୁତେ ଉଠିଲା କନ୍ଦଳ ॥

ବେଣୁ ଘର୍ଷଣେ ଅଗ୍ନି ଯେସନ୍ତେ । ତକ୍ଷଣେ ଉଠେ ଘୋର ସ୍ୱନେ ॥
ଶୂନ୍ୟେ ପଡ଼ିଲ୍ଲ ଆଚ୍ଛେ ଦ୍ୱର । ଯାଦବ କରେ ଶସ୍ତ୍ର ଧର ॥
ଗଦା ମୁଦ୍‌ଗର ଅସିବର । ଧନୁକ ଭୁଷଣ୍ଡି ତୋମର ॥
ଏମନ୍ତେ ନାନା ଅସ୍ତ୍ର ଧର । ଧାଇଁଲେ ଘୋର ନାଦକର ॥
ଡାକନ୍ତି ଅତି ଭୟଙ୍କରେ । ଘୋର ସମର ନଦୀତୀରେ ॥
ରଥେ କେ ଯୁଦ୍ଧେ ରଣମଧ୍ୟେ । କେ ଗୋରୁ ମହିଷର ସ୍କନ୍ଧେ ॥
ଖର ଉଷ୍ଟ୍ରର ସ୍କନ୍ଧେ ବସି । କେ ଯୁଦ୍ଧେ ଘୋର ରଣେ ପଶି ॥
ମୁଷଳ ମୁଦ୍‌ଗର ପ୍ରହାରେ । ରଜନୀ ଘୋର ଅନ୍ଧକାରେ ॥
ଅଭୂତ ମୂଷଳ ସମରେ । ମୁଖ ନ ଦିଶେ ଅନ୍ଧକାରେ ॥
ସ୍ୱଭାବେ ମହା ବୀରଗଣ '। ରେଷେ କରନ୍ତି ମହାରଣ ॥

× × ×

ରୋଷେ ଯୁଦ୍ଧନ୍ତି ପିତାପୁତ୍ରେ । ଦୁର୍ମଦ ଅନ୍ଧ ମିତ୍ର ମିତ୍ରେ ॥
ସୋଦର ସୋଦରେ ନସ୍କନ୍ଧି । କୋପେ ଯୁଦ୍ଧନ୍ତି ବେନିଭାଇ ॥
ମାତୁଳ ଭଗ୍ନୀର କୁମର । ଏମନ୍ତେ ଜ୍ଞାତି ସହୋଦର ॥
ଲକ୍ଷ୍ମୀ ପୀରତି ତେଜି ଦୂରେ । ଯୁଦ୍ଧନ୍ତି ଘୋର ଅନ୍ଧକାରେ ॥"

[ଭା: ୧୧-୩୧]

**ଶାନ୍ତ :**

"ଦେଖ ମୋହର ମୋହଜାଲ । ଅଜ୍ଞାନେ ବଞ୍ଚିଲି ମୁଁ କାଳ ॥
ଧର୍ମ ନାଶିଲି ଧନ ଲୋଭେ । ନାଶ ସ୍ୱଭାବେ କାମଭାବେ ॥
ଅସାଧୁ ପୁରୁଷଙ୍କ ମେଳେ । କାନ୍ତର ଭାବେ କାମଖେଳେ ॥
ରମିଲି ଧନେ ଦେଇ ମନ । ଧିକ ଏ ମୋହର ଜୀବନ ॥
ନିକଟେ ଅଛି ମୋର ଭର୍ତ୍ତା । ସର୍ବ ସମ୍ପଦ ସୁଖଦାତା ॥
ଅନାଥ ନାଥ ଜନହିତା । ମୁକତି ଗତିର ବିଧାତା ॥
ଯେ ନିତ୍ୟ ପୁରୁଷ ରତନ । ତାହାଙ୍କୁ ଦୂରେ ଥୋଇ ମନ ॥
ରମିଲି କୁପୁରୁଷ ସଙ୍ଗେ । ଅଜ୍ଞାନ ମୋହ ରତିରଙ୍ଗେ ॥

× × ×

ବିଦେହି ନଗରରେ ଥାଇ । ମୋ ପରି ମୂଢ଼ କେହି ନାହିଁ ॥
ଆତ୍ମାକୁ ଦିଅନ୍ତି ଯେ ହରି । ତା ତହୁଁ ଆନ ଇଚ୍ଛାକରି ॥
ମୋ ପ୍ରାଣନାଥ ଅଛୁ ପାଖେ । ମୁହିଁ ନ ଦେଖଇ ପ୍ରତ୍ୟକ୍ଷେ ॥
ସୁହୃଦ ସର୍ବଜୀବ ଆତ୍ମା । ନିର୍ଲେପ ନିର୍ଗୁଣ ମହାତ୍ମା ॥
ପ୍ରିୟ ଆନନ୍ଦ ସୁଖଦାତା । ଘରେ ମୋ ଥାଉଁ ନିଜଭର୍ତ୍ତା ॥
ତୁଚ୍ଛ ପୁରୁଷ ସଙ୍ଗେ ରମି । ମୁହିଁ ହୋଇଲି ପଥଶ୍ରମୀ ॥
ନିଷ୍ଫଳ ମୋହର ଜୀବନ । ଅଜ୍ଞାନେ ଗଲା ଏତେ ଦିନ ॥"

[ଭା-୧୧-୯-୩୩]

ଜଗନ୍ନାଥ ଦାସଙ୍କ ରସମୟୀ ଲେଖନୀ ଏହିପରି ସର୍ବତ୍ର ରସ ବର୍ଷଣ କରିଅଛି । ଏହି ଗ୍ରନ୍ଥର ପ୍ରତ୍ୟେକ ବାକ୍ୟ ଏବଂ ପ୍ରତ୍ୟେକ ପଦ ଅପରିମିତ ରସର ନିର୍ଝର କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ରସ ସାଗରରେ ଝାସ ଦେଇ ପାରିଲେ ମନୁଷ୍ୟର ଅନନ୍ତ ତୃଷାର ପରିସମାପ୍ତି ସୁନିଶ୍ଚିତ ।

## ବାଣୀ ବିଭବ :

ଜଗନ୍ନାଥ ଦାସଙ୍କ ଭାଗବତର ବାଣୀବିଭବ ଅତୁଳନୀୟ । ଦୀନକୃଷ୍ଣ ଦାସ ତାହାଙ୍କ 'ରସକଲ୍ଲୋଳ' କାବ୍ୟରେ କହିଅଛନ୍ତି—"କବି ଯେ ସତ ମିଛ କରି କହନ୍ତି । କବିତା ଗୁରୁଗିରେ ମନ ମୋହନ୍ତି ।" କାବ୍ୟ ଜଗତରେ ଚାତୁର୍ଯ୍ୟ-ମୟୀ ଉକ୍ତିର ଅଭାବ ନାହିଁ । କବି କଳ୍ପନାର ଅନ୍ତ ମଧ୍ୟନାହିଁ; କିନ୍ତୁ ଆତସ-ବାଜି କ୍ଷଣକପାଇଁ ଦର୍ଶକ ଚକ୍ଷୁକୁ ଝଲସିତକରି ନିର୍ବାପିତ ହୋଇଯିବା ପରି ଏଗୁଡ଼ିକ ପାଠକ ପ୍ରାଣକୁ ମୁହୂର୍ତ୍ତିକ ପାଇଁ ମୁଗ୍ଧ ଚକିତ କରି ଚିରକାଳ ପାଇଁ ବିସ୍ମୃତିର ଅତଳ ଗର୍ଭରେ ବିଲୀନ ହୋଇଯାଆନ୍ତି; କିନ୍ତୁ ଏପରି କେତେକ କବି ଅଛନ୍ତି ଯେଉଁମାନେ ଜୀବନର ଶାଶ୍ୱତ ସତ୍ୟ ସମୂହକୁ କାବ୍ୟ କଳାର ଅନନ୍ତ ସୌନ୍ଦର୍ଯ୍ୟରେ ମଣ୍ଡିତକରି ଏପରି ଏକ ଅଲୌକିକ ବାଣୀରୂପ ପ୍ରଦାନ କରନ୍ତି ଯେ ସେଗୁଡ଼ିକ ଆଉ ବ୍ୟକ୍ତିବିଶେଷ ବା କାଳବିଶେଷର ବସ୍ତୁ ହୋଇ ରହନ୍ତି ନାହିଁ । ସେଗୁଡ଼ିକ ସକଳ ଜନର ଓ ସର୍ବକାଳର ସମ୍ପଦରେ ପରିଣତ ହୋଇଯାନ୍ତି । କାଳିଦାସ, ଭବଭୂତି ଆଦି କବି ଏହି ଶ୍ରେଣୀର କବି ।

ଜଗନ୍ନାଥ ଦାସଙ୍କ ଭାଗବତ ଏହିପରି ଅସଂଖ୍ୟ ଉକ୍ତିର ଭଣ୍ଡାର । ଏଗୁଡ଼ିକର ଧ୍ୱନି ଓ ବ୍ୟଞ୍ଜନା ଅତୁଳନୀୟ । ଏଗୁଡ଼ିକ ପୁଣି ଏପରି ସରଳ ମାଧୁର୍ଯ୍ୟମଣ୍ଡିତ ଯେ ଶୁଣିବା ବା ପାଠ କରିବାମାତ୍ରେ ଶ୍ରୋତା ବା ପାଠକର ସ୍ମୃତିପଟ୍ଟରେ ଚିରକାଳ ପାଇଁ ଲିପିବଦ୍ଧ ହୋଇ ରହିଯାଏ । ଯୁଗ ଯୁଗ ଧରି ଏହି ବାଣୀଗୁଡ଼ିକ ଓଡ଼ିଆ ଜାତିକୁ ପଥ ପ୍ରଦର୍ଶନ କରାଉଅଛି । ନିମ୍ନରେ କେତୋଟି ଉଦାହରଣ ଦିଆଗଲା ।

**ପ୍ରଥମ ସ୍କନ୍ଧ :**

**ହରିଭକ୍ତି—**

"ଗୋବିନ୍ଦ ଯାର ହୃଦ ଦେଶେ । ସେ କି ବିଷୟ ରସେ ରସେ ॥
କ୍ଷୁଧିତ ଜନ ମନ ଯେହ୍ନେ । ଅନ୍ନହିଁ ନ ଲୋଡ଼ଇ ଆନେ ॥"

**ସାଧୁ ସଙ୍ଗ—**

"ହରି ଭକତ ଜନ ସଙ୍ଗେ । ଯେ କ୍ଷଣେ ବଞ୍ଚେ ନରଅଙ୍ଗେ ॥
ତା ସଙ୍ଗେ ସ୍ୱର୍ଗଭୋଗ ମୋକ୍ଷ । କେ ତୁଲ୍ୟ କରିବ ପ୍ରତ୍ୟକ୍ଷ ॥"

**ପରହିଂସା—**

"ମତ୍ତ ପ୍ରମତ୍ତ ଉନମତ୍ତ । ସୁପ୍ତ ସ୍ତ୍ରୀ ବାଳକ ନିଦ୍ରାଗତ ॥
ଶରଣାଗତ ରଥହୀନ । ସଂକଟେ ଦେଖି ରିପୁଜନ ॥
ଏହାଙ୍କୁ ବଧ ଯେ କରନ୍ତି । ଜୀବନ ଥାଉଁ ସେ ମରନ୍ତି ॥
ପର ଜୀବନ ମାରିଆଣି । ଆତ୍ମାକୁ ପୋଷେ ଯେଉଁ ପ୍ରାଣୀ ॥
ତାର ମରଣେ ହୋଏ ପୁଣ୍ୟ । ବେଦେ କହନ୍ତି ବିପ୍ରଜନ ॥"

**କୃତଘ୍ନତା—**

"ଯାହା ଆଶ୍ରୟ ଭୋଗଗଲା । ତାର ବିପଦ ଏ ଚିନ୍ତିଲା ॥
ଏଣୁ ଏ ଗଣା ପଶୁଗଣେ । ନିତ୍ୟ ବଞ୍ଚଇ ଘୋର ବନେ ॥"

**ଦ୍ୱିତୀୟ ସ୍କନ୍ଧ :** ବ୍ୟର୍ଥ ଜୀବନ :—

"ଗୋବିନ୍ଦ ନାମ ଯାର ହୃଦେ । ନ ପଶେ ପୁଲକ ଆନନ୍ଦେ ॥
କି ଅବା ପଶିଲେ ହୃଦରେ । ନୟନୁ ଅଶ୍ରୁ ତା ନ ଝରେ ॥

ତାର ହୃଦସ୍ଥ ଅଣୁସାର । ବହଇ ନୌହ ମସ୍ତୁଘର ॥"

**ତୃତୀୟ ସ୍କନ୍ଧ :** ଆତ୍ମଞ୍ଜନ :—

"ଯେମନ୍ତେ ଅଗ୍ନି ଧୂମବଳେ । କେବେହେଁ ନଦହଣେ ନର୍ମଳେ ॥
ସେ ରୂପେ ବିଷୟରେ ପ୍ରାଣୀ । କେବେହେଁ ଆତ୍ମାକୁ ନଚହ୍ନି ॥
କାଠରୁ ଧୂମ ଅଗ୍ନି ଜାତ । ସେ କାଠ ଦହଇ ଯେମନ୍ତ ॥
ଅଜ୍ଞାନୁ ଜ୍ଞାନ ଜାତ ହୋଇ । ବିଷୟ ବାସନା ଦହଇ ॥

**ଧନ ସଞ୍ଚୟର ଅସାରତା—**

ଏ ଜୀବ ଅତି ମତିହୀନ । ଅର୍ଥ ସଞ୍ଚଇ ପ୍ରତିଦିନ ॥
ଯେ ଅର୍ଥ ମୃତ୍ୟୁ ଉପଗତ । ନ ଜାଣେ ଏ ମୂଢ଼ ପଣ୍ଡିତ ॥
ଅନିତ୍ୟ ଦେହ ନ ବୁଝଇ । ବ୍ୟାପାର କରେ ଦୁଃଖ ସହି ॥"

**ଚତୁର୍ଥ ସ୍କନ୍ଧ :** ଆଦର୍ଶ ଗୃହ—

"ପତ୍ନୀ ନ ଥିଲେ ନ ଶୋଭନ୍ତି । ଏ ରାଜ ସମ୍ପଦ ବିଭୂତି ॥
ଯେ ଗୃହେ ନାହିଁ ତାତ ମାତା । ସୁପୁତ୍ର ସୁତା ପତିବ୍ରତା ॥
ସେ ଗୃହ ପତି ଧର୍ମହୀନ । ସୁଖେ ତା ନାହିଁ ପ୍ରୟୋଜନ ॥
ଯେସନେ ଚକହୀନ ରଥ । ବସିଲେ ସୁଖ ନୋହେ ଜାତ ॥
ତେସନେ ଗୃହଣୀ ବିହୀନେ । ଗୃହସ୍ଥ ନ ଶୋଭେ ସଦନେ ॥

**ଆଶ୍ରମ ଲକ୍ଷଣ—**

ଅହିଂସା ସନ୍ନ୍ୟାସ ଲକ୍ଷଣ । କୃଷ୍ଣ କହନ୍ତି ପୁଣ ପୁଣ ॥
ତପସ୍ୟା ବିବେକ ଯେ ଶାନ୍ତି । ବନସ୍ଥ ଜନର ଏ ଗତି ॥
ଗୃହୀର ଇଷ୍ଟ ଜୀବ ରକ୍ଷା । ବ୍ରହ୍ମଚାରୀର ଗୁରୁ ଦୀକ୍ଷା ॥
ତପ ଶଉଚ ମୋ ଭଜନ । ସନ୍ତୋଷ ବ୍ରହ୍ମଚର୍ଯ୍ୟ ପୁଣ ॥
ପତ୍ନୀ ସଙ୍ଗମ ଋତୁକାଳେ । ଗୃହସ୍ଥ ଧର୍ମ ଏ ଶସ୍ତଳେ ॥"

**ପଞ୍ଚମ ସ୍କନ୍ଧ :** ସମଭାବ—

"କେ ଅବା କାହାରେ ବହଇ । ଏମନ୍ତ ମୁହିଁ ନ ଦେଖଇ ॥
କେବା ଈଶ୍ୱର କେ କିଂକର । ଏମନ୍ତ ନ ଦେଖି ଅପର ॥

ଦୟା ଓ କ୍ଷମା—

ସେ ସାଧୁ ବୋଲାଇ ସଂସାରେ । ପ୍ରାଣୀଙ୍କୁ ଯେବା ଦୟାକରେ ॥
ଦଣ୍ଡିବା ଶକ୍ତି ଯାର ଥାଇ । ସେ ପୁଣି କ୍ଷମା ଆଚରଇ ॥"

ଷଷ୍ଠ ସ୍କନ୍ଧ : ଅସତ୍‌କର୍ମ—

"ଜନ୍ମ ମରଣ ବେନି ଦଗେ । ମାୟାନଦୀ ଯେ ବହେବେଗେ ॥
ତହିଁ ପଡ଼ିଣ ଜୀବଭ୍ରମେ । କ କାର୍ଯ୍ୟ ଅସତ କରମେ ॥

ଭ୍ରାତୃଭାବ—

ଆନର ଦୁଃଖେ ଯେହୁ ଦୁଃଖୀ । ସେପ୍ରାଣୀ ସର୍ବକାଳେ ସୁଖୀ ॥
ତାହାକୁ ପୁଣ୍ୟବନ୍ତ କହ । ଦେବଙ୍କସଙ୍ଗେ ସ୍ୱର୍ଗେ ଯାଇ ॥"

ସପ୍ତମ ସ୍କନ୍ଧ : ଜନ୍ମମୃତ୍ୟୁ ରହସ୍ୟ—

"ଯେହୁ ଅଇଲା ତା ନ ଜାଣି । ଦେହକୁ ସତ୍ୟ ପ୍ରାୟ ମଣି ॥
ଅନ୍ତେ ଯହିଁକି ପ୍ରାଣୀ ଯିବ । ଏହା ନ ଜାଣେ ବ୍ରହ୍ମାଶିବ ॥

ସନ୍ତୋଷ—

ଯାବତ ଦେହେ ପ୍ରାଣ ଥିବ । ତାବତ ସନ୍ତୋଷେ ବଞ୍ଚିବ ॥
ଲୋଭେ ଅଧିକ ଯେ ଚିନ୍ତନ୍ତି । ଚୋର ସମାନେ ଦଣ୍ଡପାନ୍ତି ॥

ଅହଂଭାବ—

ମୁହିଁ ମୋହର ବୋଲି ଜାଣେ । ଯାବତ ବଶ ତିନିଗୁଣେ ॥
ଶରୀର ସ୍ୱଭାବ ଏମନ୍ତେ । ସଂସାର ମଧ୍ୟେଚିନ୍ତ ଯେତେ ॥"

ଅଷ୍ଟମ ସ୍କନ୍ଧ : ପରୋପକାର—

"ଯେ କରେ ଦୀନ ଉପକାର । ସେ ଧର୍ମ ଜ୍ଞାନୀଙ୍କର ସାର ॥
ଦୁଃଖୁ ଯେ ପରିତ୍ରାଣ କରେ । ସଙ୍କଟୁ ପ୍ରାଣୀଙ୍କୁ ଉଦ୍ଧରେ ॥
ତା ଜନ୍ମ ଧନ୍ୟ ଏ ସଂସାରେ । ଯେ ରହେ ପର ଉପକାରେ ॥
ସାଧୁ ଜନଙ୍କର ଏ ରୀତ । କେବେହେଁ ଧର୍ମ ନ ଛାଡ଼ନ୍ତି ॥
କ୍ଷଣଭଙ୍ଗୁର ଏ ଶରୀର । ସୁଦୃଢ଼ ପର ଉପକାର ॥

ଦାନଶୀଳତା—

ଯେ ଦାନେ ବୃତ୍ତି ଯାଏ ନାଶ । କୁଳ ସମ୍ପଦ କର୍ମ ଯଶ ॥
ସେ ଦାନ କେବେହେଁ ନ କର । ଯଶ ସମ୍ପଦ ଧର୍ମହର ॥

ମନୁଷ୍ୟ ଜୀବନର ଶ୍ରେଷ୍ଠତା—

ଯଥା ଅନଳ କାଷ୍ଠେ ଥାଏ । ଯେସନ୍ତେ ଅମୃତ ଗୋରୁଦେହେ ॥
ଧରଣୀ ଦେହେ ଅନ୍ନ ଯେସନ୍ତେ । ସଂଯୋଗେ କୃଷି କରଷଣେ ॥
ମନୁଷ୍ୟ ନାନା ଯୋଗବଳେ । ଲଭଇ ତୋପାଦ କମଳେ ॥"

**ନବମ ସ୍କନ୍ଧ :** ଭକ୍ତାଧୀନ ଭଗବାନ—

"ମୁଁ ଯେ ଭକତ ପରାଧୀନ । ମୋ ତହୁଁ ଭକ୍ତ ନୋହେ ଭିନ୍ନ ॥
ଭକ୍ତର ଅଧୀନ ମୁଁ ହୋଇ । ସେବକ ପ୍ରାପ୍ତ ପଛେ ଥାଇ ॥"

**ଦଶମ ସ୍କନ୍ଧ :** ତେଜସ୍ୱୀ ଜନଙ୍କ ଗୁଣ :—

"ଶୁଣ ରାଜନ ଭାଗବତ । ଏ ବଡ଼ଲୋକଙ୍କର ମତ ॥
ଏହାଙ୍କ କର୍ମ ବିପରୀତ । ଯେଣୁ ଏ ତେଜେ ବଳବନ୍ତ ॥
ତେଣୁକି ଦୋଷ ଗୁଣ ନାହିଁ । ଅଗ୍ନି ଯେସନେ ସର୍ବଖାଇ ॥

ହରିଶରଣ—

ଅଶେଷ ତୀର୍ଥଙ୍କର ଜଳ । ଯେବନ୍ତ ବ୍ରହ୍ମା ସୁରନର ॥
କଳ୍ପବୃକ୍ଷର ପ୍ରାପ୍ତ ହୋଇ । ସକଳ ବାଞ୍ଛା ଫଳଦେଇ ॥
ସକଳ ସମ୍ପଦର ସାର । ସେବକ ଜନ ସୁଖଧର ॥
ଜନ୍ମ ମରଣ ପଥ ଦୁଇ । ଏଣେ ଅଜ୍ଞାନୀ ଭ୍ରମୁଥାଇ ॥
ତାହାଙ୍କ ବିଶ୍ରାମ ମନ୍ଦର । ଭବ ନଦୀର ଛଡସାର ॥

କର୍ମର ମହତ୍ତ୍ୱ—

କୃଷ୍ଣ କହନ୍ତି ଶୁଣ ତାତ । ଜଗତ କର୍ମେ ଆତଯାତ ॥
ଏ ଜୀବ ନିଜ କର୍ମଫଳ । ରୂପରେ ରହି ଏ ଶରୀର ॥
କର୍ମର ମତେ ସୁଖ ଦୁଃଖ । ଜନ୍ମ ମରଣ ହୋଏ ଦେଖ ॥
କର୍ମଟି ଦୁଃଖ ସୁଖଦାତା । ବିଶ୍ୱ ସଂସାରେ ବଳବନ୍ତ ॥
କର୍ମହୁଁ ନାହିଁ ଆନ ଦେବ । ସ୍ୱେ ତାତ କର୍ମପାଦେ ସେବ ॥

ମନୁଷ୍ୟ ଜୀବନର ସାର୍ଥକତା :—

ମନୁଷ୍ୟ ଦେହ ପଦ୍ମନାଭ । ଯେ ଦେହ ଦେବଙ୍କୁ ଦୁର୍ଲ୍ଲଭ ॥
ସେ ଦେହ ପାଇ ଜ୍ଞାନହାର । ତୋତେ ନ ଜାଣେ ନରହର ॥
ଭାବେ ତୋ ଚରଣ ନ ସଞ୍ଚେ । ସେ ଦୁଃଖୀ ନିଜ ଆତ୍ମା ବଞ୍ଚେ ॥"

ଏକାଦଶ ସ୍କନ୍ଧ : ସହନଶୀଳତା :—

"କର୍ମ ଆଦର ସହେ ଦୁଃଖ । କେବେହେଁ ନୁହଇ ବିମୁଖ ॥
ଦୁଃଖେ ନ ଛାଡ଼ ନିଜ ପଥ । ଚଞ୍ଚଳ ନ କରଇ ଚିତ୍ତ ॥

ସର୍ବତ୍ର ସମଭାବନା :—

"ସକଳସ୍ଥାନେ ମୁହିଁ ଭ୍ରମେ । ମୁଁ ଥାଏ ଅଜଗର ଧର୍ମେ ॥
ସ୍ୱର୍ଗ ନରକ ବେଦ ବାଣୀ । ମୁଁ ତାହା ଏକ ଧର୍ମେ ଜାଣି ॥
ଏଣୁ ମୋ ଦୁଃଖ ସୁଖ ଏକ । ସମେ ଦେଖଇ ସର୍ବଲୋକ ॥
ଆହାରେ ଭଲ ମନ୍ଦ ନାହିଁ । ଯେ ସ୍ଥାନେ ଯେମନ୍ତ ମିଳଇ ॥
ଅଳପେ ବହୁତେ ସନ୍ତୋଷ । ନ ମିଳେ କରେ ଉପବାସ ॥
କର୍ମକକ୍ଷଣ ଦେହ ସହେ । ଅରଣ୍ୟେ ଅଜଗର ପ୍ରାୟେ ॥

ବୃଥା ଦେହାଭିମାନ :—

ଏ ଦେହେ ବସେ ନାରାୟଣ । ସେ ହର ଛାଡ଼ ମୂଢ଼ପଣ ॥
ଯେ ଦେହେ ଅଛୁ ନାନା ରୋଗ । ତା ସଙ୍ଗେ କଲ୍ ରତ ରଙ୍ଗ ॥
ମର୍ତ୍ତ୍ୟମଣ୍ଡଳେ ଦେହ ବନ୍ଧ । ଦେବତା ହୋଇଲେ ମରଇ ॥

ପରାଧୀନତା : —

ଯାବତ ନାନା ଭାବେ ଛନ୍ନ । ତାବତ ଜୀବ ପରାଧୀନ ॥
ଯାବତ ପରାଧୀନ ହୋଇ । ଈଶ୍ୱର ତହୁଁ ଭୟ ପାଇ ॥

ଦାନର ମହତ୍ତ୍ୱ :—

ଧନ କାର୍ପଣ୍ୟ ସେବା ଫଳେ । କିବା ଅସାଧ୍ୟ ମହୀତଳେ ॥

ଧନ ଲୋଭ ହିଁ ଦୁଃଖର କାରଣ:—

ମରଣ ପଥ ହେତୁ ଧନ । ତାର ଅର୍ଜନେ ନିତ୍ୟ ମନ ॥
ଅନେକ ଦୁଃଖେ ତା ସଞ୍ଚଇ । ନିଶି ଦିବସେ ମନ ଦେଇ ॥

ନରତେ ହୃଦୟ ନର୍ଦ୍ଦୟ । ଏଣୁଟି ଧନ ଦୁଃଖମୟ ॥
ଦୁଃଖେ ସଞ୍ଚିତ ଯେତେ ଧନ । ସେ ନୋହେ ସୁଖେ ପ୍ରୟୋଜନ ॥
ସୁତ ତନୟ ଦାରା ଦାସ । ଏ ସର୍ବ ବିକୂଳ ପ୍ରକାଶ ॥
ଏହାଙ୍କ ସ୍ନେହେ ବନ୍ଦୀ ହୋଇ । ପୋଷଇ ଦୁଃଖ ଭାର ବହି ॥
ଏ ପୁଣି ଯାନ୍ତି କର୍ମପଥେ । ଶୋକ ସନ୍ତାପ ଦେଇ ଚିତ୍ତେ ॥

ଏକମାତ୍ର ଭଗବାନ ହିଁ ଭଜନୀୟଃ—

ଉଠି କୃଷ୍ଣଙ୍କୁ ବୋଲେ ବାଣୀ । ମୋତେ କି ଭଣ୍ଡୁ ଚକ୍ରପାଣି ॥
ସକଳ ତୀର୍ଥ ତୋ ଚରଣେ । ବଦ୍ରିକା ଯିବି କି କାରଣେ ॥”

ଜଗନ୍ନାଥ ଦାସଙ୍କ ଲେଖନୀରେ କି ଅନନ୍ତ ଶକ୍ତି ନିହିତ ଥିଲା, ତାହାର କିଞ୍ଚିତ ଆଭାସ ଉପରୋକ୍ତ ଉକ୍ତି ସମୂହରୁ ମିଳିଥାଏ । ସ୍ପର୍ଶମଣି ଯୋଗରେ ଲୁହା ସୁନା ହୋଇଯିବା ପରି ସେ ଯାହାକୁ ଛୁଇଁ ଦେଇଛନ୍ତି, ତାହା ଅମୃତ ପାଲଟି ଯାଇଛି । “ପଦ ସରଳ ଧ୍ୱନିରେ ମାନସ ମୋହିବ । ଅର୍ଥ ଜନ ପ୍ରକରକୁ ଆନନ୍ଦ କରିବ ।” କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଏ ଉକ୍ତି— ଏ ପ୍ରସଙ୍ଗରେ ଅକ୍ଷରେ ଅକ୍ଷରେ ସତ୍ୟ । ଏକ ତରଙ୍ଗ ବହୁ ତରଙ୍ଗ ସୃଷ୍ଟି କଲାପରି ଜଗନ୍ନାଥ ଦାସଙ୍କ ଉକ୍ତିଗୁଡ଼ିକ ଭାବୁକ ପାଠକର ଅନ୍ତରରେ ଭାବନାର ଅନନ୍ତ ଲହରୀ ଖେଳାଇ ଦିଏ ।

## ରଚନାଶୈଳୀ :—

ଜଗନ୍ନାଥ ଦାସଙ୍କ ଭାଗବତର ରଚନା ଶୈଳୀ ଅନୁପମ ଓ ଅସାମାନ୍ୟ । କାଳ ଏହାର ଜ୍ୟୋତି ହରଣ କରିପାରିନାହିଁ । ଦୀର୍ଘ ପାଞ୍ଚଶହ ବର୍ଷ ତଳେ ରଚିତ ହେଲେ ମଧ୍ୟ ମନେହୁଏ ସତେ ଯେପରି ଏହା କବିଙ୍କ ଲେଖନୀରୁ ସଦ୍ୟ ନିଃସୃତ ହୋଇଅଛି । ସରଳତା, ଋଜୁତା, ରମଣୀୟତା ଓ ଲାଳିତ୍ୟ ସଙ୍ଗେ ଔଦାର୍ଯ୍ୟ, ଗାମ୍ଭୀର୍ଯ୍ୟ ଓ ଗତିଶୀଳତାର ଏପରି ଅପୂର୍ବ ସମାବେଶ କ୍ୱଚିତ ଦୃଷ୍ଟ ହୁଏ । ଏହି ରଚନାଶୈଳୀର ପ୍ରଧାନ ବିଶେଷତ୍ୱ ହେଉଛି ତାର ନୈସର୍ଗିକ ସୌନ୍ଦର୍ଯ୍ୟ ଓ ଆଡ଼ମ୍ବରହୀନତା । ଏଥିରେ କୌଣସିଠାରେ ମଣ୍ଡନର ପ୍ରୟାସ ଦେଖିବାକୁ ମିଳେନାହିଁ । ଅମଣ୍ଡନା କ

ହେଲେ ହେଁ ଏହା ସ୍ୱଳ୍ପାଭରଣା ଓ ମନୋଜ୍ଞମଣ୍ଡନା । ଜଗନ୍ନାଥ ଦାସଙ୍କ ଶବ୍ଦ ଚୟନ ଓ ଗ୍ରଥନ କୌଶଳ ଅତୀବ ଚମତ୍କାର । ସଂସ୍କୃତର ଶିଷ୍ଟ ପଦାବଳୀ ସହିତ କଥିତ ଓଡ଼ିଆ ଭାଷାର ପଦ ମିଶାଇ ସେ ଏପରି ଏକ ଭାଷା ସୃଷ୍ଟି କରିଛନ୍ତି, ଯାହା ଶୃଙ୍ଖଳା, ଶାଳୀନତା ଓ ସୌନ୍ଦର୍ଯ୍ୟରେ ସମସ୍ତଙ୍କୁ ଟପି ଯାଇଛି । ଶବ୍ଦଗୁଡ଼ିକ କ୍ଷୁଦ୍ର, ସରଳ, ଅସମାସାନ୍ତ ଏବଂ ମୁଖ୍ୟତଃ ପ୍ରସାଦ ଓ ମାଧୁର୍ଯ୍ୟଗୁଣ-ସମ୍ପନ୍ନ । କେବଳ ଯୁଦ୍ଧାଦି ବର୍ଣ୍ଣନା ପ୍ରସଙ୍ଗରେ ସେ ଓଜଗୁଣାଶ୍ରିତ ପଦାବଳୀର ବ୍ୟବହାର କରିଅଛନ୍ତି । ତାଙ୍କର ଧ୍ୱନିସଂକଳନ ଏଡ଼େ ଚମତ୍କାର ଯେ ତାହା ଶ୍ରୋତାର କର୍ଣ୍ଣରେ ଅମୃତ ଢାଳି ଦେଲପରି ମନେହୁଏ । ବାକ୍ୟବିନ୍ୟାସ ପଦ୍ଧତି ଏପରି ସରସ ଓ ସାରଲ୍ୟମଣ୍ଡିତ ଯେ ଅର୍ଥାବଗତିପାଇଁ ଅନ୍ୱୟର କୌଣସି ପ୍ରୟୋଜନ ହୁଏନାହିଁ । ଅଳଙ୍କାରର ପାରିଭାଷିକ ଭାଷାରେ କହିଲେ ସମଗ୍ର ରଚନା ଦ୍ରାକ୍ଷା ଓ ଗୁଡ଼ୂକୃତ ପାକରେ ନିଷ୍ପନ୍ନ ହୋଇଅଛି ।

ଭାଗବତର ପଦ ଯୋଜନା ସର୍ବତ୍ର ରସ ଓ ଭାବାନୁସାରୀ ହୋଇଅଛି । କେଉଁ ସ୍ଥାନରେ କେଉଁ ଶବ୍ଦ ବ୍ୟବହାର କଲେ ରଚନା ଶ୍ରୁତିସୁଖକର ହେବା ସଙ୍ଗେ ସଙ୍ଗେ ରସବ୍ୟଞ୍ଜକ ଓ ଭାବଦ୍ୟୋତକ ହେବ, ସେଥିପ୍ରତି ବିଶେଷ ଧ୍ୟାନ ଦିଆଯାଇଛି । ଭାଗବତର ପଦଯୋଜନାର ଏହି ଅନିବାର୍ଯ୍ୟତା ପ୍ରତି ଦୃଷ୍ଟି ଦେଲେ, ବିସ୍ମିତ ହେବାକୁ ପଡ଼େ । ଫଳରେ କୌଣସି ପ୍ରକାର ଅଙ୍ଗହାନି ନ ଘଟାଇ ତାହାଙ୍କ ରଚନାରୁ ଗୋଟିଏ ଶବ୍ଦ ଉଠାଇ ଦେଇ ସେହି ସ୍ଥାନରେ ସମାର୍ଥବୋଧକ ଆଉ ଗୋଟିଏ ପଦ ବ୍ୟବହାର କରିବା ଏକ କଠିନ ବ୍ୟାପାର । ଲିପିକାରମାନଙ୍କ ଅବିମୃଶ୍ୟକାରିତା ହେତୁ ଯେଉଁଠି ଏପରି ହୋଇଛି, ସେଠାରେ ଅର୍ଥପ୍ରତୀତି ନିଶ୍ଚିତ ଭାବରେ ବାଧିତ ହୋଇଛି । ଭାଗବତ ଏକ ଧ୍ୱନିକାବ୍ୟ । ରସର ପରିସ୍ଫୁଟନ ଏହାର ପ୍ରଧାନ ଲକ୍ଷ୍ୟ । ଏଣୁ ଅଳଙ୍କାରର ସନ୍ନିବେଶ ପ୍ରତି ଏଥିରେ ବିଶେଷ ଧ୍ୟାନ ଦିଆଯାଇନାହିଁ । ହେଲେହେଁ ସ୍ୱତଃସ୍ଫୂର୍ତ୍ତି ଭାବରେ ରସର ପରିପୋଷକ ରୂପେ ଯେଉଁ କେତେକ ସ୍ଥାନରେ ଅଳଙ୍କାରର ପ୍ରୟୋଗ କରାଯାଇଛି, ତହିଁରୁ ଅଳଙ୍କାର ପ୍ରୟୋଗରେ ଜଗନ୍ନାଥ ଦାସଙ୍କ ଅସାମାନ୍ୟ ଦକ୍ଷତାର ପରିଚୟ ମିଳେ । ଏଥିରେ ଯେଉଁ ସବୁ ଅଳଙ୍କାରର ପ୍ରୟୋଗ କରାଯାଇଛି, ସେଗୁଡ଼ିକ ମଧ୍ୟରେ ଅନୁପ୍ରାସ, ଉପମା, ଉତ୍ପ୍ରେକ୍ଷା, ରୂପକ,

ଦୃଷ୍ଟାନ୍ତ ନିଦର୍ଶନା ଆଦି ଉଲ୍ଲେଖ ଭ୍ରାନ୍ତିମାନଙ୍କ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ପ୍ରଧାନ । ହେଲେହେଁ 'ଉପମା' ପ୍ରତି ତାଙ୍କର ବିଶେଷ ଆକର୍ଷଣ ଥିବା ଅନୁମିତ ହୁଏ । କଠିନ ଆଧ୍ୟାତ୍ମିକ ତଥ୍ୟସମୂହର ସହଜ ଅବଗତି ନିମିତ୍ତ ସେ ବହୁ ସ୍ଥଳରେ ଉପମାର ବ୍ୟବହାର କରିଅଛନ୍ତି ।

"ସୁନ୍ଦର ପୁରୁଷ ନିର୍ଦ୍ଧନ । ଗଣିକା ଛାଡ଼ଇ ଯେସନ ॥
ରାଜାଙ୍କ ଅଭାଜନ ଦେଖି । ପରଜା ଛାଡ଼ି ଯେହ୍ନେ ଦୁଃଖୀ ॥
ବିଦ୍ୟା ପାଇଲେ ଶିଷ୍ୟ ଗୁରୁ । ସେ ଯେହ୍ନେ ଛାଡ଼ନ୍ତି ମନରୁ ॥
ଦକ୍ଷିଣା ପାଇ ବିପ୍ର ଜନେ । ଯେହ୍ନେ ଛାଡ଼ନ୍ତି ଯଜମାନେ ॥
ଫଳ ସରିଲେ ବୃକ୍ଷ ଛାଡ଼ି । ପକ୍ଷୀଏ ଯାନ୍ତି ଯେହ୍ନେ ଉଡ଼ି ॥
ଅତିଥି ଯେହ୍ନେ ଖାଇପିଇ । ପଛେ ନ କହି ଚଳିଯାଇ ॥
ପୋଡ଼ିଲା ବନ ପଶୁଗଣେ । ଛାଡ଼ି ପଳାନ୍ତି ଅନ୍ୟ ବନେ ॥
ପର ପୁରୁଷେ ପର ନାରୀ । ରମଣେ ଯେମନ୍ତ ପାସୋରି ॥
ତେମନ୍ତ କଲେ ବନମାଳୀ । ଛାଡ଼ି ସକଳ ଗୋପବାଳୀ ॥"

ଉପମାଳଙ୍କାରର ଏହିପରି ସାର୍ଥକ ପ୍ରୟୋଗରେ ଭାଗବତର ପୃଷ୍ଠାରାଜି ସୁମଣ୍ଡିତ । ହେଲେ ଏହା ସ୍ୱତଃସ୍ଫୂର୍ତ୍ତି ଓ ଅଯତ୍ନ ସାଧିତ ଜଗନ୍ନାଥଙ୍କ ରଚନା ଶୈଳୀ ତାହାଙ୍କ ସରଳ ଓ ମୂର୍ତ୍ତିମନ୍ତ ପ୍ରକାଶ । ବ୍ୟକ୍ତିତ୍ୱର ଅନାଡ଼ମ୍ବର ଭାଗବତ ପାଠ କଲାବେଳେ କବିଙ୍କର ଭାବବିହ୍ୱଳ ଓ ପ୍ରେମୋନ୍ମାଦ ପ୍ରାଣର କୋମଳ ସ୍ପର୍ଶ ଆମକୁ ଏକାନ୍ତ ଅଭିଭୂତ କରିପକାଏ । ଆମର ମନେହୁଏ ସତେ-ଯେପରି କବି ତାଙ୍କର ପ୍ରାଣର ସମସ୍ତ ରସ ନିଗାଡ଼ି ଓ ଚପୁଡ଼ି ଦେଶବାସୀଙ୍କ ପାଇଁ କାବ୍ୟର ଏହି ଅନନ୍ତ ରସଭଣ୍ଡାର ନିର୍ମାଣ କରି ରଖିଯାଇଅଛନ୍ତି । କବି ପ୍ରାଣର ଏହି ଆତ୍ମବିସ୍ମୃତି ଓ ତନ୍ମୟତା ଭାଗବତକୁ ଶ୍ରେଷ୍ଠ କଳାକୃତିର ଗୌରବରେ ମଣ୍ଡିତ କରିଅଛି ।

ଜଗନ୍ନାଥ ଦାସଙ୍କ ରଚନାଶୈଳୀରେ ଯେଉଁ ମୋହିନୀ ଶକ୍ତି ଅଛି, ତାର ମୂଳ ଉତ୍ସ ହେଉଛି, ତାଙ୍କର ଅନନ୍ୟସାଧାରଣ ବ୍ୟକ୍ତିତ୍ୱ । ସେଥିପାଇଁ ଏହାକୁ ଅନୁକରଣ କରିବାର ସମସ୍ତ ଉଦ୍ୟମ ବ୍ୟର୍ଥ ହୋଇଛି । ଭାଗବତର ରଚନା

ଶୈଳୀ ଆଲୋଚନା କଲାବେଳେ ସ୍ମରଣ ରଖିବା ଉଚିତ ଯେ ରୂପଦ୍ୱାରା ଅରୂପର ବ୍ୟଞ୍ଜନା, ବାଣୀ ସାହାଯ୍ୟରେ ଅନିର୍ବଚନୀୟର ଧ୍ୱନନ କବିଙ୍କର ପ୍ରଧାନ ଲକ୍ଷ୍ୟ । ଏଠାରେ ପଦଯୋଜନା, ଉକ୍ତିବୈଚିତ୍ର୍ୟ ଓ ଅଳଂକରଣ କେବଳ ସାଧନ ମାତ୍ର । ଧ୍ୱନିତ ବସ୍ତୁ ହିଁ ମୁଖ୍ୟ । ଏହାହିଁ କାବ୍ୟକଳାର ଚରମ ନିଦର୍ଶନ ।

**ଛାନ୍ଦ ମାଧୁରୀ**—ଭାଗବତ ରଚନା ପାଇଁ ଜଗନ୍ନାଥ ଦାସ ଏକ ନୂତନ ଛନ୍ଦର ପ୍ରୟୋଗ କରି ଅଛନ୍ତି । ଏହା ନବାକ୍ଷର ବିଶିଷ୍ଟ ଏବଂ ପରିବର୍ତ୍ତୀକାଳରେ 'ଭାଗବତ ବୃତ୍ତ' ନାମରେ ପରିଚିତ ହୋଇ ଓଡ଼ିଆ ସାହିତ୍ୟରେ ବିଶେଷ ପ୍ରସିଦ୍ଧି ଲାଭକରିଅଛି । ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ ଏହା ଜଗନ୍ନାଥ ଦାସଙ୍କର ଏକ ଅଭୂତ ଓ ଅନନ୍ୟସାଧାରଣ କୀର୍ତ୍ତି ଏବଂ ଓଡ଼ିଆ ସାହିତ୍ୟର ଏକ ଅମୂଲ୍ୟ ସମ୍ପଦ । ଏହି ଛନ୍ଦର ଏକ ପ୍ରଧାନ ସୁବିଧା ଏଇ ଯେ ଏଥିରେ ପାଠକକୁ ଆବୃତ୍ତି କରିବାରେ କୌଣସି ଆୟାସ ସ୍ୱୀକାର କରିବାକୁ ପଡ଼େନାହିଁ । ଏଥିରେ ବୃତ୍ତ ନିର୍ଦ୍ଦିଷ୍ଟ କିନ୍ତୁ ବାଣୀ ବହୁମୁଖୀ । ପାଠକ ଯେଉଁ ଭାବରେ ଅନୁପ୍ରାଣିତ ହୋଇ ଯେଉଁ ଭାବରେ ବୋଲୁନା କାହିଁକି ତାହା ଶ୍ରୁତି ସୁଖକର ହୋଇଥାଏ । ସ୍ଥୂଳତଃ ଏହି ବୃତ୍ତକୁ ପାଠକର ରୁଚି ଅନୁଯାୟୀ ବିବିଧ ଭଙ୍ଗୀରେ ପକାଇ ବୋଲିଯାଇପାରେ ।

**ମହାକାବ୍ୟତ୍ୱ :**

ଭାଗବତ ଏକ ପୁରାଣନାମରେ ପରିଚିତ । ଅଷ୍ଟାଦଶ ପୁରାଣ ମଧ୍ୟରୁ ଏହା ଅନ୍ୟତମ । ନାମ ଓ ଆକାରରେ ଏକ ପୁରାଣ ହେଲେହେଁ ସ୍ୱରୂପତଃ ଏହା ଏକ ମହାକାବ୍ୟ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଆଲୋଚକଗଣ ମହାକାବ୍ୟର ଯେଉଁ ସଂଜ୍ଞା ନିର୍ଦ୍ଦେଶ କରିଅଛନ୍ତି, ତଦନୁଯାୟୀ ଜଗନ୍ନାଥ ଦାସଙ୍କ ଭାଗବତ ମହାକାବ୍ୟ ସକଳ ଲକ୍ଷଣରେ ଭୂଷିତ । ସଂସ୍କୃତ ଅଳଙ୍କାର ଶାସ୍ତ୍ରାନୁଯାୟୀ ସର୍ଗବନ୍ଧ, ଆଶୀର୍ନମସ୍କ୍ରିୟାଯୁକ୍ତ ନାତିଦୀର୍ଘ ରଚନା ବିଶେଷର ନାମ ମହାକାବ୍ୟ । ଇତିହାସ ପ୍ରସିଦ୍ଧ କୌଣସି ପ୍ରଖ୍ୟାତ କଥାବସ୍ତୁ ଅବଲମ୍ବନରେ

---

ଓଡ଼ିଆ ସାହିତ୍ୟର କ୍ରମ ପରିଣାମ—ପୃଃ ଦ୍ୱିତୀୟ ଭାଗ ୬୧୦.

ଏକ ସର୍ବଜନବନ୍ଦିତ ବୃତ୍ତରେ ଏହା ରଚିତ ହୋଇଥାଏ । ନାଟକ ସଦୃଶ ଏହାର ବସ୍ତୁବିନ୍ୟାସରେ ବିବିଧ ସନ୍ଧିର ପ୍ରୟୋଗ କରାଯାଇଥାଏ । ମହାକାବ୍ୟର ନାୟକ କୌଣସି ଦେବତା ଅଥବା ଧୀରୋଦାତ୍ତ ଗୁଣସମ୍ପନ୍ନ କ୍ଷତ୍ରିୟ ହେବା ଆବଶ୍ୟକ । ଏହାର ଅଙ୍ଗୀରସ ଶୃଙ୍ଗାର ଅଥବା ଶାନ୍ତ ଏବଂ ଅଙ୍ଗରସରୂପେ ବୀର, ଅଦ୍ଭୁତ, ରୌଦ୍ରାଦି ବିବିଧ ରସର ଅବତାରଣା କରାଯାଇଥାଏ । ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚାରି ପୁରୁଷାର୍ଥ ମଧ୍ୟରୁ ଯେକୌଣସି ଗୋଟିଏ ପୁରୁଷାର୍ଥର ସାଧନ ମହାକାବ୍ୟର ଧ୍ୟେୟ ହେବା ଉଚିତ । ମହାକାବ୍ୟରେ ସାଧୁ ସ୍ତୁତି ଓ ଖଳନିନ୍ଦା ସଙ୍ଗେ ସନ୍ଧ୍ୟା, ପ୍ରଭାତ ଓ ଚନ୍ଦ୍ର ସୂର୍ଯ୍ୟାଦିର ବର୍ଣ୍ଣନା ସନ୍ନିବେଶିତ ହୋଇଥିବା ବିଧେୟ । ମହାକାବ୍ୟର ନାମକରଣ ସାଧାରଣତଃ ବିଷୟବସ୍ତୁ ଅଥବା ନାୟକଙ୍କର ନାମାନୁଯାୟୀ ହୋଇଥାଏ ।

ପାଶ୍ଚାତ୍ୟ ସାହିତ୍ୟ ସମୀକ୍ଷା ଅନୁଯାୟୀ ମହାକାବ୍ୟର ନାୟକ କୌଣସି ଦେଶ ବା ସମଗ୍ରମାନବଜାତିର ଆଦର୍ଶର ପ୍ରତୀକ ହୋଇଥିବେ ଏବଂ ତାହାଙ୍କର ବିଜୟରେ ଉକ୍ତ ଆଦର୍ଶର ବିଜୟ ସୂଚିତ ହେଉଥିବ । ମହାକାବ୍ୟ ବର୍ଣ୍ଣିତ ପାତ୍ରପାତ୍ରୀମାନଙ୍କର କ୍ରିୟାକଳାପ ମହତ୍ତ୍ୱପୂର୍ଣ୍ଣ ହେବା ସଙ୍ଗେ ସଙ୍ଗେ ସମଗ୍ର ରଚନାଟି ମହିମାମଣ୍ଡିତ ହେବା ବାଞ୍ଛନୀୟ । ଏହା ପାଠକର ଅନ୍ତରରେ ରହସ୍ୟପୂର୍ଣ୍ଣ, ଭୟାନକ ତଥା ଦିବ୍ୟ ଅନୁଭୂତି ସମୂହର ଜାଗରଣରେ ସମର୍ଥ ହେବା ଉଚିତ । ଏଥିରେ ଅତି ପ୍ରାକୃତ ଶକ୍ତି ଅଥବା ସର୍ବାଧିଷ୍ଠାତ୍ରୀ ନିୟତିର ବିଚିତ୍ର ଲୀଳାର ବର୍ଣ୍ଣନା ସନ୍ନିବେଶିତ ହୋଇଥିବା ଆବଶ୍ୟକ । ତାହାଛଡ଼ା ମାନବସମାଜର ଏକ ବୃହତ୍ତର ଚିତ୍ରର ଅଙ୍କନ ପାଇଁ ଏଥିରେ ପ୍ରୟାସ ହୋଇଥିବା ଉଚିତ । ସ୍ପଷ୍ଟତଃ ମାନବଜାତିକୁ ଅନ୍ଧାରରୁ ଆଲୋକକୁ, ଅଶାନ୍ତିରୁ ଶାନ୍ତିଆଡ଼କୁ ଏବଂ ଇତରତାରୁ ମହାନୀୟତା ପ୍ରତି ଘେନି ଯିବାର ଅନ୍ତର୍ନିହିତ ସାମର୍ଥ୍ୟ ଏହାର ରହିଥିବା ଉଚିତ । ଏହା ଘଟଣାବହୁଳ, ବର୍ଣ୍ଣନା ସମୃଦ୍ଧ ଏବଂ କଳ୍ପିତ ଶିଥିଳଗତି ହୋଇଥିବା ଆବଶ୍ୟକ । ଏହାର ରଚନାଶୈଳୀ ସାତ୍ତ୍ୱିକ ଓ ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ହୋଇଥିବା ବାଞ୍ଛନୀୟ । ପ୍ରାଚ୍ୟ ବା ପାଶ୍ଚାତ୍ୟ ଯେକୌଣସି ଦୃଷ୍ଟିକୋଣରୁ ବିଚାରକଲେ ମଧ୍ୟ ଜଗନ୍ନାଥ

ଦାସଙ୍କ ଭାଗବତର ମହାକାବ୍ୟତ୍ୱ ପ୍ରତିପନ୍ନ ହୁଏ । ବିଶ୍ୱକବି ରବୀନ୍ଦ୍ରନାଥ କବି ଓ ମହାକବିଙ୍କ ମଧ୍ୟରେ ପାର୍ଥକ୍ୟ ଦର୍ଶାଇ କହି ଅଛନ୍ତି—"କବିଙ୍କ ମଧ୍ୟରେ ସେହି କ୍ଷମତା ଅଛି, ଯଦ୍ଦ୍ୱାରା ସେ ନିଜର ସୁଖଦୁଃଖ, କଳ୍ପନା ଓ ଅନୁଭୂତି ମାଧ୍ୟମରେ ବିଶ୍ୱମାନବର ଚିରନ୍ତନ ହୃଦୟାବେଗ ଓ ଜୀବନର ମର୍ମବାଣୀକୁ ପ୍ରକାଶ କରିଥାନ୍ତି । ଏମାନଙ୍କ ଗୁଡ଼ିଦେଲେ, ଆଉ ଏକ ଶ୍ରେଣୀର କବି ଅଛନ୍ତି, ଯେଉଁମାନଙ୍କ ରଚନା ମାଧ୍ୟମରେ ସମଗ୍ର ଦେଶ ଓ ସମଗ୍ର ଯୁଗ ଆପଣାର ହୃଦୟ ଓ ଅଭିଜ୍ଞତାକୁ ବ୍ୟକ୍ତ କରି ତାକୁ ମାନବ ସମାଜର ଚିରନ୍ତନ ସାମଗ୍ରୀରୂପେ ଉପସ୍ଥାପିତ କରିଥାଏ ।" ଏହି ଦ୍ୱିତୀୟ ଶ୍ରେଣୀର କବିଙ୍କୁ ମହାକବି କୁହାଯାଏ । ଜଗନ୍ନାଥ ଦାସ ଏହି ଅର୍ଥରେ ଜଣେ ମହାକବି । ଭାଗବତର ପୀୟୂଷବୋଳା କରୁଣ ମର୍ମସ୍ପର୍ଶୀ ପଦାବଳୀରେ ଆମେ ଶୁଣିବାକୁ ପାଉଁ ବିଶ୍ୱମାନବର ସେହି ଆକୁଳ ଆହ୍ୱାନ ଓ ଶାଶ୍ୱତ ଅନୁସନ୍ଧିତ୍ସା, "ହେ ପ୍ରଭୁ ! ତୁମ୍ଭେ ଆମ୍ଭଙ୍କୁ ଅସତ୍ୟରୁ ସତ୍ୟକୁ, ମୃତ୍ୟୁରୁ ଅମୃତକୁ ଏବଂ ଅନ୍ଧକାରରୁ ଆଲୋକକୁ ଘେନିଯାଅ । ପୁଣି ଏହାର ଛନ୍ଦେ ଛନ୍ଦେ ଆମେ ଅନୁଭବ କରୁ ସେହି ଅରୂପ, ଅତୀନ୍ଦ୍ରିୟ ଓ ଅନିର୍ବଚନୀୟ ଆନନ୍ଦାଲୋକର ଏକ ସ୍ପର୍ଶ ଯାହାଲାଗି ଯୁଗ ଯୁଗ ଧରି ଚାଲିଆସିଛି ମନୁଷ୍ୟର ଏହି ଅସରନ୍ତି ଅନ୍ୱେଷଣ ।

## ଓଡ଼ିଆ ସାହିତ୍ୟକୁ ଜଗନ୍ନାଥ ଦାସଙ୍କ ଦାନ—

ଜଗନ୍ନାଥ ଦାସଙ୍କ ଭାଗବତ ଓଡ଼ିଆ ସାହିତ୍ୟ କାନନର ସୁନ୍ଦରତମ ପୁଷ୍ପ । ଏହାର ସୌନ୍ଦର୍ଯ୍ୟ ଓ ସୁରଭି ଅତୁଳନୀୟ । ଓଡ଼ିଆ ଭାଷା ଓ ସାହିତ୍ୟର ନିର୍ମାଣରେ ଏହାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହାର ବିଷୟବସ୍ତୁ ଅବଲମ୍ବନରେ ପରବର୍ତ୍ତୀକାଳରେ ବହୁ କାବ୍ୟ, ନାଟକ ଓ ଗୀତାଭିନୟ ରଚିତ ହୋଇଅଛି । ଭାଗବତ ବ୍ୟତୀତ ତାହାଙ୍କ ମୃଗୁଣୀସ୍ତୁତି, ଦାରୁବ୍ରହ୍ମଗୀତା, ଗଜ ନିସ୍ତାରଣ ଗୀତା, ଗୁରୁ ଚଉପଦୀ ଓ ଷୋଳ ଚଉପଦୀ ଅନୁକରଣରେ ବହୁ ଗାଥା କବିତା, ଭଜନ, ଜଣାଣ ଓ ଚଉପଦୀ ଆଦି ମଧ୍ୟ ରଚିତ ହୋଇ ଅଛି । ଅନ୍ୟ ଏକ ବିଷୟ ଯାହା ପରବର୍ତ୍ତୀ କବି ଓ ଲେଖକଗଣଙ୍କୁ ବିଶେଷ ଅନୁପ୍ରାଣିତ କରିଅଛି, ତାହା ହେଉଛି ଜଗନ୍ନାଥ ଦାସଙ୍କ ଅନୁପମ ପ୍ରକୃତି

ବର୍ଣ୍ଣନା । ତାହାଙ୍କର ପ୍ରକୃତ ବର୍ଣ୍ଣନା ପାଠକଲେ ମନେହୁଏ ସତେ ଯେପରି ପ୍ରକୃତ ମୂର୍ତ୍ତିଧାରଣ କରି ପାଠକ ସମକ୍ଷରେ ଆବିର୍ଭୂତା ହୋଇ ଅଛନ୍ତି । ଏହା ଯେପରି ବାସ୍ତବ, ସେହିପରି ସରସ ଓ ଜୀବନ୍ତ । ଦୀନକୃଷ୍ଣ, ଉପେନ୍ଦ୍ର ଓ ଅଭିମନ୍ୟୁଙ୍କଠାରୁ ଆରମ୍ଭକରି ରାଧାନାଥ, ମଧୁସୂଦନ ଓ ଗଙ୍ଗାଧରଙ୍କ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ପ୍ରକୃତପୂଜାରୀ କବିଗଣ ଯେ ତଦ୍ଦ୍ୱାରା ଅନୁପ୍ରାଣିତ ହୋଇଥିବେ, ଏଥିରେ ସନ୍ଦେହନାହିଁ । ବିଶେଷକରି ରାଧାନାଥଙ୍କ ପ୍ରକୃତ ବର୍ଣ୍ଣନା ପାଠକଲେ ମନେହୁଏ, ସତେ ଯେପରି ସେ ଜଗନ୍ନାଥ ଦାସଙ୍କୁ ହିଁ ତାଙ୍କର ଆଦର୍ଶରୂପେ ଗ୍ରହଣ କରିଅଛନ୍ତି । କାରଣ ସୌନ୍ଦର୍ଯ୍ୟ ସଙ୍ଗେ ଗାମ୍ଭୀର୍ଯ୍ୟର ଅପୂର୍ବ ସମାବେଶ ପ୍ରାଚୀନ ସାହିତ୍ୟରେ ଜଗନ୍ନାଥ ଦାସଙ୍କ ପ୍ରକୃତ ବର୍ଣ୍ଣନାରେ ହିଁ କେବଳ ଦୃଷ୍ଟହୁଏ । ଓଡ଼ିଆ ସାହିତ୍ୟକୁ ସବୁଠାରୁ ଅଧିକ ପ୍ରଭାବିତ କରିଛି ଜଗନ୍ନାଥ ଦାସଙ୍କ ରଚନାଶୈଳୀ ଓ ଛନ୍ଦ । ତାହାଙ୍କଦ୍ୱାରା ପ୍ରବର୍ତ୍ତିତ ନବାକ୍ଷରୀ ଭାଗବତବୃତ୍ତ ଓଡ଼ିଆ ଗ୍ରନ୍ଥ ସାହିତ୍ୟର ଇତିହାସରେ ଏକ ଅଭିନବ ଓ ବିସ୍ମୟକର ଆବିଷ୍କାର । ଏହା ଯେପରି ସରଳ, ସେହିପରି ସରସ ଓ ହୃଦୟଗ୍ରାହୀ । ପରବର୍ତ୍ତିକାଳରେ ବହୁ କବି ଓ ଲେଖକ ଏହାର ଅନୁସରଣ କରିଅଛନ୍ତି । କାବ୍ୟର ରଚନାଶୈଳୀ ସମ୍ବନ୍ଧରେ ଭକ୍ତ କବି ଅଭିମନ୍ୟୁ ତାହାଙ୍କ ଅମର କାବ୍ୟ ବିଦଗ୍ଧ ଚିନ୍ତାମଣିରେ କହିଅଛନ୍ତି "ଦିବ୍ୟ ଅଦିବ୍ୟ ଭାଷାରେ ପଦ ହେବ ସିଦ୍ଧି; ଦେଖ ମହାଜନ ଏହୁ ପରଂପରା ବିଧି ।" ସଂସ୍କୃତ ଓ ଓଡ଼ିଆ ଭାଷାର ସୁମଧୁର ଓ ସୁଷମ ସମନ୍ୱୟରେ କିପରି ଉତ୍କୃଷ୍ଟ ରଚନା ସମ୍ଭବପର ତାର ଏକ ସର୍ବକାଳୀନ ଓ ସାର୍ବଜନୀନ ଆଦର୍ଶ ରଖି ଯାଇଛନ୍ତି ଜଗନ୍ନାଥ ଦାସ ତାହାଙ୍କ ଭାଗବତରେ । ଜଗନ୍ନାଥଙ୍କ ରଚନାଶୈଳୀ ଅନନୁକରଣୀୟ ହେଲେହେଁ, ପ୍ରାଚୀନ ଯୁଗରେ ଦୀନକୃଷ୍ଣ, ଅଭିମନ୍ୟୁ, କବିସୂର୍ଯ୍ୟ ବଳଦେବ ଓ ଗୋପାଳକୃଷ୍ଣଙ୍କଠାରୁ ଆରମ୍ଭକରି ଆଧୁନିକ ଯୁଗରେ ଗଙ୍ଗାଧର, ଗୋପବନ୍ଧୁଙ୍କ ପର୍ଯ୍ୟନ୍ତ କବି ଓ ଲେଖକମାନଙ୍କ ରଚନାବଳିରେ ଏହି ରଚନା ଶୈଳୀର ଧାରା ଅନୁସନ୍ଧାନ କରାଯାଇପାରେ । ଜଗନ୍ନାଥ ଦାସଙ୍କ ଭାଷା ଆଧୁନିକ ଓଡ଼ିଆ ଭାଷାର ମେରୁଦଣ୍ଡ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଜଗନ୍ନାଥ ଦାସ ଓଡ଼ିଆ ଭାଷାକୁ ତାର ଶୈଶବୋଚିତ ପ୍ରଗଳ୍ଭତା ଓ ଅପରି

ପଙ୍କ୍ତିରୁ ମୁକ୍ତ ଦେଇ ଏହାକୁ ଏକ ସାର୍ବଜନୀନ ଓ ସାର୍ବକାଳିକ ବାଣୀରୂପ ପ୍ରଦାନ କରିଛନ୍ତି । ଏ ଭାଷାର ପ୍ରଧାନ ବିଶେଷତ୍ୱ ହେଉଛି ତାର ସରଳତା, ଶୃଙ୍ଖଳତା, ଶାଳୀନତା ଓ ସହଜ ପ୍ରବହମାନତା ।

"ଗୋବର୍ଦ୍ଧନଲୀଳା କର୍ମ ଯେତେ । ଆଉ ନପାରେ କହି ତୋତେ ॥
ତା ଦେଶକାଳ ଅର୍ଥଯୁକ୍ତ । ଶୀତଳ ବାଣୀ ଜନହିତ ॥
ସେ ବାଣୀ ଶୁଣି ମୋର ଚିତ୍ତେ । ପ୍ରାଣ ଦହଇ ଅନ୍ତର୍ଗତେ ॥"

[ଭାଃ ୧-୧୫-୨୭]

ଏହାହିଁ ଥିଲି ଜଗନ୍ନାଥ ଦାସଙ୍କ ଭାଷାର ଆଦର୍ଶ । ଏହିପରି ଯଦୃଚ୍ଛା-କ୍ରମରେ ଗୃହୀତ ଯେକୌଣସି ବାକ୍ୟ ବା ବାକ୍ୟପୁଞ୍ଜକୁ ପରୀକ୍ଷା କରି ଦେଖିଲେ ତହିଁର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ଓ ପ୍ରାଣବତ୍ତା ସହଜେ ଉପଲବ୍ଧ ହୁଏ । ଏହାହିଁ ଏପର୍ଯ୍ୟନ୍ତ ଓଡ଼ିଆ ଭାଷାର ଆଦର୍ଶ ସ୍ଥାନୀୟ ହୋଇ ରହିଅଛି । ଯେଉଁଠି ଏବଂ ଯେତେବେଳେ ଓଡ଼ିଆ ଭାଷା ଏହି ତାର ଜାତୀୟ ଆଦର୍ଶରୁ ବିଚ୍ୟୁତ ହୋଇ ପରଧର୍ମର ଅନୁସରଣ କରିଅଛି, ସେତେବେଳେ ତାର ନୈସର୍ଗିକ ସୌନ୍ଦର୍ଯ୍ୟ ଓ ସ୍ୱାଭାବିକ ପ୍ରାଣବତ୍ତା ବ୍ୟାହତ ହୋଇଅଛି । □□□

# ଅଷ୍ଟମ ଅଧ୍ୟାୟ

## ଉତ୍କଳୀୟ ଜନଜୀବନ ଓ ଜଗନ୍ନାଥ ଦାସ

ଉତ୍କଳୀୟ ଜନଜୀବନରେ ଜଗନ୍ନାଥ ଦାସଙ୍କ ପ୍ରଭାବ ଅଖଣ୍ଡ ଓ ଅପ୍ରତିହତ । ଗୀତା, ବାଇବେଲ ଓ କୋରାଣକୁ ଛାଡ଼ିଦେଲେ ଅନ୍ୟ କୌଣସି ଗ୍ରନ୍ଥ ଏକ ମାନବଗୋଷ୍ଠୀକୁ ଏତେ ନିବିଡ଼ ଭାବରେ ପ୍ରଭାବିତ କରିଥିବାର ଦୃଷ୍ଟାନ୍ତ ଖୁବ୍ ବିରଳ । ସମଗ୍ର ହିନ୍ଦୁ ସମାଜ ବେଦ ବା ଗୀତାକୁ ଯେଉଁ ଦୃଷ୍ଟିରେ ଦେଖେ, ଓଡ଼ିଆ ଜଗନ୍ନାଥ ଦାସଙ୍କ ଭାଗବତକୁ ସେହି ଦୃଷ୍ଟିରେ ଦେଖେ । ଓଡ଼ିଆ ନିକଟରେ ଜଗନ୍ନାଥ ଦାସଙ୍କ ଭାଗବତ ଖଣ୍ଡିଏ ଗ୍ରନ୍ଥମାତ୍ର ନୁହେଁ । ଓଡ଼ିଆର ସଭ୍ୟତା, ସଂସ୍କୃତି, ସମାଜତତ୍ତ୍ୱ, ଜୀବନାଦର୍ଶ ଓ ନୈତିକତାର ମୂଳ ଉତ୍ସ ହେଉଛି ଭାଗବତ । ଉତ୍କଳୀୟ ସଂସ୍କୃତିକୁ ବସ୍ତୁତଃ ଜଗନ୍ନାଥ ସଂସ୍କୃତି ବା ଭାଗବତ ସଂସ୍କୃତି କହିଲେ ଅତ୍ୟୁକ୍ତି ହେବନାହିଁ । ଭାଗବତ ଓଡ଼ିଆର ଗତିମୁକ୍ତି ଦାତା ଇଷ୍ଟଦେବତା । ଜଗନ୍ନାଥ ମହାପ୍ରଭୁ ତାର ଯେପରି ପ୍ରିୟ, ଜଗନ୍ନାଥ ଦାସଙ୍କ ଭାଗବତ ତାର ସେହିପରି ପ୍ରିୟ । ଯଥାର୍ଥରେ ଏହି ଦୁଇଟି ମହାନ୍ ଅନୁଷ୍ଠାନ ଓଡ଼ିଆ ଜାତୀୟତାର ଦୁଇ ପ୍ରଧାନସ୍ତମ୍ଭ । ଏହି ଗ୍ରନ୍ଥ ଓଡ଼ିଶାର ଘରେ ଘରେ ଓ ଗ୍ରାମେ ଗ୍ରାମେ ଭାଗବତଗାଦି ନାମରେ ପୂଜିତ ହୁଏ । ଉତ୍କଳରେ ଏପରି କୌଣସି ହିନ୍ଦୁ ଗ୍ରାମ ନାହିଁ, ଯେଉଁଠି ଭାଗବତ ରକ୍ଷିତ ବା ପଠିତ ହୁଏନାହିଁ । ଗ୍ରାମମାନଙ୍କରେ ଏଥିପାଇଁ ଏକ ସ୍ୱତନ୍ତ୍ର ଗୃହ ନିର୍ଦ୍ଦିଷ୍ଟ ଥାଏ । ଏହାକୁ 'ଭାଗବତ ଘର' ବା 'ଭାଗବତ ଟୁଙ୍ଗୀ' କହନ୍ତି । ଅତୀତରେ ଏହି ଭାଗବତ ଘର ଗ୍ରାମ୍ୟ ଜୀବନର ପ୍ରାଣକେନ୍ଦ୍ର ଥିଲା । ଏହା ଏକାଧାରରେ ଗ୍ରାମ୍ୟ ବିଦ୍ୟାଳୟ, ପୁସ୍ତକାଗାର, ବିଚାରାଳୟ, ଲୋକ ସଂସଦ ବା ପାର୍ଲିଆମେଣ୍ଟ ଏବଂ ଧର୍ମଚର୍ଚ୍ଚାର କେନ୍ଦ୍ର ରୂପେ କାର୍ଯ୍ୟ କରୁଥିଲା । ପ୍ରତ୍ୟହ ସନ୍ଧ୍ୟାରେ ଗ୍ରାମର ନରନାରୀ, ବାଳକବାଳିକାଗଣ ଏଠାରେ ସମବେତ ହୋଇ ଭାଗବତ ଓ ଅନ୍ୟାନ୍ୟ ପୁରାଣ ଶ୍ରବଣ କରୁଥିଲେ । ଧର୍ମର ବିବିଧ ଜଟିଳ ପ୍ରଶ୍ନ ସମ୍ବନ୍ଧରେ ଆଲୋଚନା ମଧ୍ୟ ହେଉଥିଲା । ଏତଦ୍ଦ୍ୱାରା ଲୋକମାନଙ୍କ ଆଧ୍ୟାତ୍ମିକ ଜୀବନର ଗଠନ ଓ ନିୟନ୍ତ୍ରଣରେ ଭାଗବତ ଏକ ମୁଖ୍ୟ ଭୂମିକା ଗ୍ରହଣ କରୁଥିଲା । ଭାଗବତର ନିର୍ଦ୍ଦେଶ ଓ ନୀତିବାକ୍ୟ ଅନୁଯାୟୀ ଏଠାରେ ଗ୍ରାମ୍ୟ ବିବାଦ ଓ

କଳିକଳହର ସମାଧାନ ମଧ୍ୟ କରାଯାଉଥିଲା । ଗ୍ରାମପଞ୍ଚାୟତର ଅଧିବେଶନ ଏଠାରେ ବସୁଥିଲା ଏବଂ ଗ୍ରାମୀଣ ସମସ୍ୟା ସମୂହର ଆଲୋଚନା ଓ ସମାଧାନ ଏଠାରେ କରାଯାଉଥିଲା । ଉତ୍କଳର କେତେକ ଗ୍ରାମ ତଥା ସହରରେ ଏହା ଏବେ ମଧ୍ୟ ଏକ ଜୀବନ୍ତ ଅନୁଷ୍ଠାନ ରୂପେ ତିଷ୍ଠି ରହିଛି । ଭାଗବତ ପାଠ ବା ଶ୍ରବଣ ପାଇଁ କୌଣସି ବାଛବିଚାର ନଥିଲା କି ନାହିଁ । ଜାତି ଧର୍ମ ନିର୍ବିଶେଷରେ ବ୍ରାହ୍ମଣଠାରୁ ଚଣ୍ଡାଳ ପର୍ଯ୍ୟନ୍ତ ସମସ୍ତେ ଏଥିର ଅଧିକାରୀ । ଭାଗବତ ଧର୍ମର ସାର୍ବଜନୀନତା ସମ୍ବନ୍ଧରେ ଭଗବାନ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହୁଅଛନ୍ତି—

"ଶୁଣ ହେ ସାବଧାନ ହୋଇ । ଏ ଧର୍ମ ଯାହାକୁ ନ କହି ॥
ଦାମ୍ଭିକ ନାସ୍ତିକ କପଟୀ । କୁଟିଳ ବିଷୟୀ ଲମ୍ପଟି ॥
ଭକତି ଶୂନ୍ୟ ମତିହୀନ । ଶ୍ରବଣେ ଯାର ନାହିଁ ମନ ॥
ଏହାଙ୍କୁ ଏ ଧର୍ମ ନ କହି । ଶୁଣ ଉଦ୍ଧବ ଯାକୁ କହି ॥
ସାଧୁ ଚରିତ ଲୋକପ୍ରିୟ । ଶୁଚି ପବିତ୍ର ପୁଣ୍ୟ ଦେହ ॥
ବ୍ରାହ୍ମଣ ଚରଣେ ଯେ ସେବେ । ଦୋଷ ନ ଧରେ ପରଭବେ ॥
ଏମନ୍ତ ପ୍ରାଣୀଙ୍କର ମଧ୍ୟେ । ଏ ଧର୍ମ କହିବ ଆନନ୍ଦେ ॥
ଯେ ଶୂଦ୍ର ଭଜେ ମୋର ପଦେ । ମୋ ନାମ ଜପେ ହୃଦଗତେ ॥
ଯେ ନାରୀ ମୋର ଭାବେ ଥାଇ । ସ୍ୱାମୀ ସଙ୍ଗତେ ମୋତେ ଧ୍ୟାୟି ॥
ସେ ପ୍ରାଣୀ ମୋହର ବିଶ୍ୱାସ । ତାହାଙ୍କୁ ଦେଇ ଉପଦେଶ ॥"

ଜଗନ୍ନାଥ ଦାସ ଭାଗବତକୁ ଓଡ଼ିଆରେ ଅନୁବାଦ କରି ଜଗତର ଏହି ଅମୂଲ୍ୟ ସମ୍ପଦକୁ ସର୍ବସାଧାରଣଙ୍କ ହାତ ପାଆନ୍ତାରେ ପହଞ୍ଚାଇ ଦେଲେ । ଏହାଦ୍ୱାରା ଯୁଗ ଯୁଗର ପରାଧୀନତା, ଅନ୍ୟାୟ ଓ ଅବିଚାରର ଅବସାନ ଘଟିଲା । ଦଳିତ, ନିର୍ଯାତିତ ଅଗଣିତ ନରନାରୀ ମୁକ୍ତିର ଆନନ୍ଦରେ ଅଧୀର ହୋଇ ଉଠିଲେ । ଏହି ବିଷୟକୁ ଲକ୍ଷ୍ୟ କରି ଭକ୍ତକବି ରାମଦାସ ତାହାଙ୍କ "ଦାର୍ଢ୍ୟତାଭକ୍ତି ରସାମୃତ" କାବ୍ୟରେ କହି ଅଛନ୍ତି ।

"ପ୍ରାକୃତ ବନ୍ଧେ କଲେ ଗୀତ । ଯେ ପୁଣ୍ୟମୟ ଭାଗବତ ॥
ପ୍ରାଣୀଙ୍କ ଚିତ୍ତ କରି ସ୍ଥିର । ବାଢ଼ିଲେ ମୁକତି ପସରା ॥
ସୁନ୍ଦର ମଧୁର କୋମଳ । ସାଧୁଙ୍କ ଶ୍ରବଣ ମଙ୍ଗଳ ॥

ପ୍ରାଣୀ କଳୁଷ ନାଶିବାରେ । ଗାୟନ କଲେ ସର୍ବଠାରେ ॥
ତାହା ଶୁଣିଣ ପ୍ରାଣୀମାନେ । ଅତି ଆନନ୍ଦ ହୋଇ ମନେ ॥
ସ୍ତ୍ରୀପୁରୁଷ ବାଳବୃଦ୍ଧା । ସମସ୍ତେ ଶୁଣିବାରେ ଶ୍ରଦ୍ଧା ॥"
[ ଦା. ଉ. ର. ୧୫ ଅ. ]

ଏହାଦ୍ୱାରା ଜଗନ୍ନାଥ ଦାସ ଏକ ମହାନ୍ ଗଣଧର୍ମର ଭିତ୍ତିସ୍ଥାପନ କରିବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ମଧ୍ୟରେ ଗଣତାନ୍ତ୍ରିକ ଚେତନା ଓ ଗଣତାନ୍ତ୍ରିକ ମୂଲ୍ୟବୋଧ ସୃଷ୍ଟି କରିବାରେ ସହାୟକ ହେଲେ । ଭାଗବତ ଘର ହେଲା ଆଚଣ୍ଡାଳବ୍ରାହ୍ମଣ ସମସ୍ତଙ୍କର ମିଳନ ମନ୍ଦିର । ଜାତୀୟ ଐକ୍ୟ ଓ ସଂହତି ବିଧାନରେ ଭାଗବତର ଭୂମିକା ଅତୁଳନୀୟ । ଓଡ଼ିଶା ବାହାରେ ବିଭିନ୍ନ ଅଞ୍ଚଳରେ ବିକ୍ଷିପ୍ତ ଓ ବିଚ୍ଛିନ୍ନ ଓଡ଼ିଆଜାତିକୁ ଏହା ଏକତାବଦ୍ଧ କରି ରଖିବାରେ ସହାୟକ ହୋଇଅଛି । ଜନସାଧାରଣଙ୍କ ମଧ୍ୟରେ ସାମ୍ୟ, ମୈତ୍ରୀ ଓ ଭ୍ରାତୃତ୍ୱ ଭାବନାର ପ୍ରସାର ଓ ପ୍ରଚାର କ୍ଷେତ୍ରରେ ଏହାର ଭୂମିକା ମଧ୍ୟ ଅତ୍ୟନ୍ତ ପ୍ରଶଂସନୀୟ । ଦୂର ଅତୀତରେ ଭାଗବତ ଥିଲା ବିଦ୍ୟାଳୟର ପ୍ରଧାନ ପାଠ୍ୟପୁସ୍ତକ ଏବଂ ଭାଗବତ ପଢ଼ିବାର ଯୋଗ୍ୟତା ଅର୍ଜନ କରିବା ପାଇଁ ଲୋକେ ପରମ ଉତ୍ସାହର ସହିତ ସେମାନଙ୍କର ସନ୍ତାନମାନଙ୍କୁ ବିଦ୍ୟାଳୟକୁ ପଠାଉଥିଲେ । ଏହାଦ୍ୱାରା ପ୍ରାଚୀନ ଉତ୍କଳରେ ଶିକ୍ଷା ଓ ସାକ୍ଷରତାର ପ୍ରସାର ସୁଗମ ହୋଇଥିଲା । ଚଳିତ ଶତାବ୍ଦୀର ପ୍ରାରମ୍ଭରେ ସ୍କୁଲସମୂହର ଇନ୍‌ସ୍ପେକ୍ଟର ଭୂଦେବ ମୁଖାର୍ଜି ଲୋକରେ ଭାଗବତର ପ୍ରସାର ହେତୁ ବଙ୍ଗଳା ଅପେକ୍ଷା ଓଡ଼ିଶାରେ ସାକ୍ଷରଙ୍କ ସଂଖ୍ୟା ଅଧିକ ଥିବା ବିଷୟ ସରକାରୀ ରିପୋର୍ଟରେ ପ୍ରକାଶ କରିଥିଲେ । *

ଉତ୍କଳର ଜନସାଧାରଣଙ୍କ ମଧ୍ୟରେ ଭାଗବତ ବାଣୀର ପ୍ରସାର ଓ ଜନପ୍ରିୟତା ଦେଖିଲେ ବିସ୍ମିତ ହେବାକୁ ପଡ଼େ । ବ୍ରାହ୍ମଣ ପଣ୍ଡିତଙ୍କଠାରୁ ମୂର୍ଖ ଓ ଦରିଦ୍ର ହରିଜନ ପର୍ଯ୍ୟନ୍ତ ଓଡ଼ିଶାରେ ଏପରି ଜଣେ ହେଲେ ଲୋକ ଦେଖିବାକୁ ମିଳିବେ ନାହିଁ, ଯିଏ ଜଗନ୍ନାଥ ଦାସଙ୍କ ଭାଗବତରୁ ଦୁଇଧାଡ଼ି

* Typical selections from Oriya literature–Introduction—B. C. Majumdar.

ଆବୃତ୍ତି କରିବାକୁ ଅସମର୍ଥ । କଥା କଥାକେ ଲୋକେ ଭାଗବତରୁ ପଦମାନ ଉଦ୍ଧାର କରି ଦାସ୍ଥିକା ଦିଅନ୍ତି । ଭାଗବତର ପଦାବଳୀ ଯେତେ ବହୁଳ ଭାବରେ ଉଦ୍ଧୃତ ହୋଇଥାଏ ଅନ୍ୟ କୌଣସି ଗ୍ରନ୍ଥ ପକ୍ଷରେ ଏପରି ସୌଭାଗ୍ୟ କ୍ୱଚିତ ଦୃଷ୍ଟହୁଏ । ସ୍ଥୂଳତଃ ଭାଗବତ ଓଡ଼ିଆ ଜନଜୀବନର ଅଙ୍ଗୀଭୂତ ହୋଇଯାଇଛି । ଏହା ଓଡ଼ିଆ ଜାତୀୟ ଜୀବନର ପ୍ରତୀକ ଏବଂ ଏ ଜାତିର ସାମାଜିକ ଓ ନୈତିକ ଜୀବନକୁ ଗଢ଼ିବାରେ ଏହାର ଅବଦାନ ଭାଷାରେ ବ୍ୟକ୍ତ କରାଯାଇ ନ ପାରେ ।

ଜାତୀୟ ଜୀବନକୁ ଛାଡ଼ିଦେଲେ, ବ୍ୟକ୍ତିଗତ ଜୀବନର ବିକାଶ ଓ ଉନ୍ନତି ବିଧାନରେ ଭାଗବତର ଭୂମିକା କୌଣସି ଗୁଣରେ ନ୍ୟୂନ ନୁହେଁ । ପ୍ରତ୍ୟେକ ଲୋକ ପାଇଁ ଏକ ସୁଖମୟ ଓ ଶାନ୍ତିମୟ ଜୀବନର ଶୁଭ ସମ୍ଭାବନା ଆଣି ଦେବାରେ ଭାଗବତର ସାଫଲ୍ୟ କଳ୍ପନାତୀତ । ଅବଶ୍ୟ ମୋକ୍ଷ ବା ଭଗବତ୍ପ୍ରାପ୍ତି ହେଉଛି, ଭାଗବତର ଚରମ ଲକ୍ଷ୍ୟ; କିନ୍ତୁ ମୁକ୍ତି ଜୀବନ ଧର୍ମରୁ ବିଚ୍ଛିନ୍ନ ବା ବ୍ୟତୀତ ନୁହେଁ । ମଧୁ ଯେପରି ଫୁଲର ନିଷ୍କର୍ଷ, ମୁକ୍ତି ସେହିପରି ମନୁଷ୍ୟ ଜୀବନର ସର୍ବଶ୍ରେଷ୍ଠ ଓ ଚରମ ପରିଣତି । ଶୋଭାପୂରିଭରିଯୁକ୍ତ ଫୁଲର ପରିପୂର୍ଣ୍ଣ ବିକାଶ ଯେପରି ମଧୁପାଇଁ ପ୍ରୟୋଜନ, ମୁକ୍ତି ବା ଭକ୍ତି ପାଇଁ ମନୁଷ୍ୟ ଜୀବନର ସୁଷମ ଓ ପରିପୂର୍ଣ୍ଣ ବିକାଶ ସେହିପରି ଏକାନ୍ତ ଆବଶ୍ୟକ । ଭକ୍ତି ବା ମୁକ୍ତି କେବଳ ସଂସାର ବିରାଗୀ ସନ୍ନ୍ୟାସୀ ପାଇଁ ଅଭିପ୍ରେତ ନୁହେଁ । ପ୍ରତ୍ୟେକ ବ୍ୟକ୍ତି, ସେ ଗୃହସ୍ଥ ହେଉ କି ବାନପ୍ରସ୍ଥୀ ହେଉ, ସ୍ତ୍ରୀ, ଶୂଦ୍ର ଅଥବା ଅନ୍ତ୍ୟଜ ହେଉ, ତାର ଏଥିରେ ଅଧିକାର ଅଛି । ସ୍ୱାଧୀନତା ପରି ଏହା ତାର ଜନ୍ମଗତ ଅଧିକାର । ଏଥିରୁ ତାକୁ କେହି ବଞ୍ଚିତ କରିପାରିବେନାହିଁ ।

ସେଥିପାଇଁ ଶ୍ରୀମଦ୍ଭାଗବତରେ ନାରଦ ବ୍ୟାସଦେବଙ୍କୁ କହୁଅଛନ୍ତି—

"ପ୍ରବୃତ୍ତି ନିବୃତ୍ତି ଏ ଭାବେ । ଯେମନ୍ତେ ପ୍ରାଣୀ ନିସ୍ତରିବେ ॥
ହରିଚରିତ ଦୀପକର । ପ୍ରାଣୀଙ୍କୁ ଅନ୍ଧାରୁ ଉଦ୍ଧର ॥"

ଜଗନ୍ନାଥ ଦାସ ପ୍ରତ୍ୟେକ ବ୍ୟକ୍ତିପାଇଁ ତାହାଙ୍କ ଭାଗବତରେ ଏକ ପରିପୂର୍ଣ୍ଣ ଜୀବନାଦର୍ଶ ରଖିଦେଇ ଯାଇଅଛନ୍ତି । ଜନ୍ମଠାରୁ ମୃତ୍ୟୁ ଓ ବାସର ଘରଠାରୁ ବାନପ୍ରସ୍ଥଯାଏ ଜୀବନର କୌଣସି ବିଭାବ ଏଥିରୁ ବାଦ ଯାଇନାହିଁ ।

ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚାରିଗୋଟି ପୁରୁଷାର୍ଥ ମଧ୍ୟରୁ ମୋକ୍ଷ ବା ଭଗବତ୍ପ୍ରାପ୍ତି ମନୁଷ୍ୟ ଜୀବନର ଚରମ ଲକ୍ଷ୍ୟ ହେଲେହେଁ ଅନ୍ୟ ତିନିଗୋଟି ପୁରୁଷାର୍ଥ କଦାପି ଉପେକ୍ଷାର ବସ୍ତୁ ହୋଇ ନ ପାରେ, କାରଣ ଏଗୁଡ଼ିକର ସୁପରିଚାଳନା ଓ ସୁନିୟନ୍ତ୍ରଣ ଉପରେ ହିଁ ମନୁଷ୍ୟ ଜୀବନର ଚରମ ଲକ୍ଷ୍ୟ ପ୍ରାପ୍ତି ନିର୍ଭରଶୀଳ । ଭାଗବତ ଏହା ଦୃଢ଼ ଗମ୍ଭୀର ସ୍ୱରରେ ଘୋଷଣା କରୁଅଛି । ଏକାଦଶ ସ୍କନ୍ଧରେ ଯଦୁରାଜା ଏବଂ ଅବଧୂତଙ୍କର ଉକ୍ତି ପ୍ରତ୍ୟୁକ୍ତି ଛଳରେ ଦିନଚର୍ଯ୍ୟାର ଯେଉଁ ବିବରଣୀ ପ୍ରଦତ୍ତ ହୋଇଅଛି, ତାହା ସୁଖ ଓ ଶାନ୍ତିକାମୀ ପ୍ରତ୍ୟେକ ଗୃହସ୍ଥର ଅବଶ୍ୟ ପାଳନୀୟ । ଜୀବିକାର୍ଜନ ଏକ ଜୈବ ଧର୍ମ । ଏହାକୁ କଦାପି ଏଡ଼ାଇ ଦିଆଯାଇ ନ ପାରେ; କିନ୍ତୁ ଜୀବନର ପରିପୂର୍ଣ୍ଣ ବିକାଶ ପାଇଁ ଏହା ଏକ ସାଧନ ମାତ୍ର । ଏହା କଦାପି ମନୁଷ୍ୟ ଜୀବନର ଲକ୍ଷ୍ୟ ବା ସାଧ୍ୟ ହୋଇ ନ ପାରେ । ତେଣୁ ଏହା ଯେପରି ମନୁଷ୍ୟର ସମଗ୍ର ଜୀବନକୁ ଗ୍ରାସ କରି ନ ଯାଏ, ସେଥିପାଇଁ ସର୍ବଦା ସାବଧାନ ରହିବା ଦରକାର । ଏହି କଥାକୁ ଲକ୍ଷ୍ୟ କରି ଭାଗବତକାର କହୁଅଛନ୍ତି—

"ଧନ ଅର୍ଜନେ ଧର୍ମ କରି । ଧର୍ମେ ପ୍ରାପତ ନରହରି ॥
ଧନ ଅର୍ଜନେ ଦେହ ଧରେ । ମରଣ ସଙ୍କଟେ ନ ଡରେ ॥
× × ×
ଧନ ଅର୍ଜନେ ଯାର ଆଶ । ନିରତେ ଦୁଃଖସୁଖ ପ୍ରାସ ॥
ଧନ ସଞ୍ଚଇ ରାତ୍ରଦିନ । ନ କରେ ସୁଖଭୋଗ ଦାନ ॥
ନିରନ୍ତେ କରଇ ସଞ୍ଚୟ । ପାପୀ କୃପଣ ଦୁରାଶୟ ॥
ତାହାର ଧନ ହରେ ଆନେ । ମଧୁମକ୍ଷିକା ମାରି ଯେହ୍ନେ ॥
× × ×
ଦୁଃଖେ ଅର୍ଜିତ ଯେତେ ଧନ । ସେ ନୋହେ ସୁଖେ ପ୍ରୟୋଜନ ॥"

ସୃଷ୍ଟିରକ୍ଷାର୍ଥ ଜୀବନରେ କାମସେବନର ପ୍ରୟୋଜନୀୟତା ରହିଅଛି । ଏହାକୁ ଅସ୍ୱୀକାର କରାଯାଇ ନ ପାରେ; କିନ୍ତୁ ଏହି ସ୍ୱାଭାବିକ ମନୁଷ୍ୟଧର୍ମ ଯେତେବେଳେ ଯୌନସ୍ୱୈରାଚାର ଓ ଜଘନ୍ୟ ଇନ୍ଦ୍ରିୟଲାଳସାରେ ପରିଣତ ହୁଏ, ସେତେବେଳେ ମନୁଷ୍ୟପାଇଁ ନରକର ଦ୍ୱାର ଉନ୍ମୁକ୍ତ ହୋଇଯାଏ । ସେଥିପାଇଁ ଜଗନ୍ନାଥ ଦାସ ମନୁଷ୍ୟ ସମାଜକୁ ଚେତାବନୀ ଶୁଣାଇ କହୁଅଛନ୍ତି—

"ନାରୀ ସଙ୍ଗମ ଋତୁମତେ । କେବଳ ପୁତ୍ର ଜନ୍ମ ଅର୍ଥେ ॥
ଅନ୍ୟଥା ରତିସୁଖ ମତେ । ପ୍ରସଙ୍ଗ ନ କର ଏକାନ୍ତେ ॥
ଜୀବର ସ୍ୱଧର୍ମ ଏ ବାଣୀ । ସକଳ ବେଦ ବାକ୍ୟ ଭଣି ॥
ଏହା ନ ବୁଝି ମୂଢ଼ ପ୍ରାଣୀ । ଦୁଃଖକୁ ସୁଖ ପ୍ରାୟ ମଣି ॥
କରଇ ଜ୍ଞାନହୀନ କର୍ମ । ଏଣୁ ସଂସାରେ ହୁଏ ଭ୍ରମ ॥"

ଶରୀର ଧାରଣାର୍ଥ ଆହାରର ଏକାନ୍ତ ଆବଶ୍ୟକତା ରହିଅଛି । କାରଣ ଆହାର ବିନା ପ୍ରାଣଧାରଣ ଅସମ୍ଭବ । କବିଙ୍କ ଭାଷାରେ—

"ଅନ୍ନ ବିହୁନେ ହଂସ ହାନି । ଯୋଗ ସାଧିବୁ କାହାଘେନି ॥"

କିନ୍ତୁ ଯେତେବେଳେ ଆହାର ଶରୀର ରକ୍ଷାର ଉପାୟ ବିଶେଷ ନହୋଇ ଦୁର୍ନିବାର ଜିହ୍ୱା ଲାଳସାରେ ପର୍ଯ୍ୟବସିତ ହୁଏ, ସେତେବେଳେ ତାହା ମନୁଷ୍ୟର ସର୍ବନାଶର କାରଣ ହୋଇଥାଏ । ସେଥିପାଇଁ ଜଗତର ସୁଧି-ସମାଜକୁ ସାବଧାନ ବାଣୀ ଶୁଣାଇ ଜଗନ୍ନାଥ ଦାସ କହୁଅଛନ୍ତି—

"ଜିହ୍ୱା ମଧୁର ରସ ପାଇ । ଲାଳସେ ଛାଡ଼ି ନ ପାରଇ ॥
ମୃତ୍ୟୁ ଲଭଇ ଲୋଭେ ତେଣେ । ମୀନ ବଡ଼ଶୀ ଥୋପେ ଯେହ୍ନେ ॥
ଜିହ୍ୱାକୁ ବର୍ଜି ଇନ୍ଦ୍ରିଗଣ । ହେଲେ ତ ଜିଣିପାରେ ଜନ ॥
ଏ ବୋଲ ବୁଝିଣ ଯେ ପ୍ରାଣୀ । ଯେବେ ଜିହ୍ୱାକୁ ପାରେ ଜିଣି ॥
ତେବେ ଜିଣଇ ଇନ୍ଦ୍ରିଗଣ । ସେ ପ୍ରାଣୀ ନିଷ୍ଟେ ନାରାୟଣ ॥"

ଅର୍ଥ ଉପାର୍ଜନ ଓ କାମ ସେବନ ଉଭୟ ଜୀବ ଧର୍ମ । ମନୁଷ୍ୟ ଜୀବନରେ ଏଉଭୟର ସୁନିର୍ଦ୍ଦିଷ୍ଟ ଭୂମିକା ରହିଅଛି; କିନ୍ତୁ ଜୀବଧର୍ମର ଅନୁସରଣ ମନୁଷ୍ୟ ଜୀବନର ଏକମାତ୍ର ଲକ୍ଷ୍ୟ ହୋଇ ନ ପାରେ । ମନୁଷ୍ୟ ଏକ ସାମାଜିକ ଜୀବ । ସମାଜ ପ୍ରତି ସେ ନାନା ଭାବରେ ଋଣୀ । ତେଣୁ ସମାଜ ପାଇଁ ତାର ଦାୟିତ୍ୱ ଓ କର୍ତ୍ତବ୍ୟ ରହିଅଛି । ଏଣୁ ଜୀବଧର୍ମର ଊର୍ଦ୍ଧ୍ୱକୁ ଉଠି ତାକୁ ସମାଜ ସେବାରେ ଆତ୍ମନିୟୋଗ କରିବାକୁ ହେବ । ଏହିଠାରେ ହିଁ ମନୁଷ୍ୟ ଜୀବନର ସାର୍ଥକତା । ସେଥିପାଇଁ କବି କହୁଅଛନ୍ତି—

"ଧନ୍ୟ ଜୀବନ ଏ ଜଗତେ । ଯେ ପ୍ରାଣ ଧରେ ପ୍ରାଣୀ ହିତେ ॥
ଧନ୍ୟ ଜୀବନ ଧନ୍ୟ ତାର । ଦୁର୍ଲ୍ଲଭ କର୍ମ ଏ ଦେହର ॥"

ସାମାଜିକ ଜୀବନରେ ସଫଳତା ପାଇଁ ଦୟା, କ୍ଷମା, ଶାନ୍ତି, ଦାନଶୀଳତା, ଅକ୍ରୋଧ, ନିର୍ଲୋଭ, ଅହିଂସା ଓ ପ୍ରେମ ଆଦି ସାମାଜିକ ଧର୍ମର ଅନୁସରଣ ଉପରେ ଭାଗବତକାର ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ଜୀବଧର୍ମଠାରୁ ସମାଜ ଧର୍ମ ଉଚ୍ଚତର; କିନ୍ତୁ ଏଥିରେ ମଧ୍ୟ ସ୍ୱାର୍ଥ, ସଙ୍କୀର୍ଣ୍ଣତା ଏବଂ ଅହଂଭାବ ନିହିତ । ତେଣୁ ଏହାର ଊର୍ଦ୍ଧ୍ୱକୁ ଉଠି ସମଗ୍ର ବିଶ୍ୱର ଜୀବନ-ପ୍ରବାହ ସହିତ ନିଜକୁ ମିଶାଇ ଏକାକାର କରିଦେବାକୁ ହେବ । ଏହାହିଁ ନରରେ ନାରାୟଣ ଭାବ । ବ୍ରହ୍ମଭାବରେ ଆତ୍ମଭାବର ବିଲୁପ୍ତି । ଏହାର ଅପର ନାମ ମୁକ୍ତି ବା ମୋକ୍ଷ । ବେଦାନ୍ତୀର ଭାଷାରେ ଏହା ହେଉଛି "ତତ୍ତ୍ୱମସି ।" ବୈଷ୍ଣବ ଶାସ୍ତ୍ରାନୁଯାୟୀ ଏହା ହେଉଛି ପରିପୂର୍ଣ୍ଣ ଈଶ୍ୱରାର୍ପଣ । ଅର୍ବ୍ୟଭିଚାରିଣୀ ଭଗବଦ୍ ଭକ୍ତିଦ୍ୱାରା ହିଁ ଏହା କେବଳ ସମ୍ଭବ । ସେଥିପାଇଁ ପରମ କାରୁଣିକ ଭକ୍ତକବି ଜଗନ୍ନାଥ ଦାସ ବିଶ୍ୱର ମାନବ-ସମାଜକୁ ନିବେଦନ ଜଣାଇଛନ୍ତି ଶ୍ରୀକୃଷ୍ଣ-ଉଦ୍ଧବ ଉକ୍ତି ପ୍ରତ୍ୟୁକ୍ତି ଛଳରେ—

"ଈଶ୍ୱର ବସେ ସର୍ବ ଦେହେ । ଏ ଘେନ ନମିବ ନିର୍ଭୟେ ॥
ସମସ୍ତ ଭୂତେ ମୋର ଭାବ । ଯାବତ ନୋହୁଛି ସମ୍ଭବ ॥
ତାବତ ଉପାସନା ମୋର । ମନ ବଚନ କାୟେ କର ॥
ଏ ରୂପ ଉପାସନ୍ତେ ମୋତେ । ଈଶ୍ୱର ଦେଖି ସର୍ବଭୂତେ ॥
ଆତ୍ମା ସାକ୍ଷାତ ହୁଏ ଯେବେ । ଛାଡ଼ିବ ସର୍ବ କର୍ମ ତେବେ ॥
ଏ ରୂପେ କରନ୍ତେ ବିଗ୍ଭର । ଛାଡ଼ଇ ଭାବ 'ତୋର' 'ମୋର' ॥
କାୟରେ ମନ ବଚନରେ । ମୋ ଭାବ ସର୍ବଭୂତେ କରେ ॥
ଏହି ସେ ସର୍ବ ଧର୍ମ ସାର । ଏ ବାକ୍ୟ ସମ୍ମତ ମୋହର ॥
ଉତ୍ତମ ଗତି ଏ ବୋଲାଇ । ଏ ମାର୍ଗେ ଗମି ମୋତେ ପାଇ ॥"

[ଭା ୧୧—୩୦—୧୮/୧୯]

ଭାଗବତର ଏହି ସୁଧାମୟୀ ବାଣୀ ପ୍ରତ୍ୟେକ ଉତ୍କଳୀୟର ପ୍ରାଣକୁ ଆଲୋଡ଼ିତ ଓ ଅନୁପ୍ରାଣିତ କରିଥାଏ ଏବଂ ପ୍ରତ୍ୟେକ ବ୍ୟକ୍ତି ନିଜ ଜୀବନକୁ ତଦନୁଯାୟୀ ଗଢ଼ିବାକୁ ଯତ୍ନଶୀଳ ହୋଇଥାନ୍ତି । ଅବଶ୍ୟ ଆଧୁନିକ ଯୁଗରେ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ପ୍ରଚଳନ ହେତୁ ଆମ୍ଭମାନଙ୍କର ବ୍ୟକ୍ତିଗତ ପାରିବାରିକ ତଥା ସାମାଜିକ ଜୀବନରେ ଭାଗବତର ପ୍ରଭାବ କ୍ରମେ କ୍ଷୀଣ ହୋଇ

ଆସୁଛି । ତଥାପି ଆମ୍ଭମାନଙ୍କ ଜୀବନଧାରାର ଅନ୍ତରାଳରେ ଏହାର ପ୍ରଚ୍ଛନ୍ନ ଭାବ ଯେ କାର୍ଯ୍ୟ କରୁନାହିଁ ଏହା କୁହାଯାଇ ନ ପାରେ । ସ୍ଥୂଳତଃ ଉତ୍କଳୀୟ-ମାନଙ୍କର ନୈତିକ ଓ ଆଧ୍ୟାତ୍ମିକ ଜୀବନକୁ ଗଢ଼ିବାରେ ଭାଗବତର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହା ଓଡ଼ିଆର ସମ୍ପଦ, ବିପଦ, ରୋଗ, ଶୋକ ଓ ଜନ୍ମ ମରଣର ସାଥି । ପ୍ରତ୍ୟେକ ଓଡ଼ିଆ ଗୃହେଁ କିପରି ଜଗନ୍ନାଥ ଦାସଙ୍କ ଭାଗବତରୁ ଅଧ୍ୟାୟେ ଶ୍ଳୋକେ ଶ୍ଳୋକେ ତାର ଜୀବନ ଦୀପ ଲିଭିଯାଉ । ତାହାହେଲେ ତାର ତୃଷିତ ଆତ୍ମା ଚରଣାମୃତ ପାଇବ ।

ଜଗନ୍ନାଥ ଦାସ ଏକାଧାରରେ ଜଣେ କବି, ବିପ୍ଳବୀ, ସମାଜସଂସ୍କାରକ ପରମ ବୈଷ୍ଣବ ଓ ଧର୍ମପ୍ରଚାରକ ଥିଲେ; କିନ୍ତୁ ସର୍ବୋପରି ସେ ଥିଲେ ଜଣେ ମାନବବାଦୀ । ଦଳିତ, ନିର୍ଯାତିତ, ପୀଡ଼ିତ, ବ୍ୟାଧିଗ୍ରସ୍ତ, ଶୋକାର୍ତ୍ତ ଓ ଅଜ୍ଞାନ-ତମିସାଚ୍ଛନ୍ନ ପ୍ରତ୍ୟେକ ବ୍ୟକ୍ତି ପାଇଁ ତାଙ୍କର ପ୍ରାଣ ହାହାକାର କରୁଥିଲା । ତାହାଙ୍କ ଭାଗବତ ଅଧ୍ୟୟନ କଲାବେଳେ ଆମର ମାନସଚକ୍ଷୁ ସମ୍ମୁଖରେ ଝଲସି ଉଠେ ତାଙ୍କର ଶୁଭ୍ର ସୁବର୍ଣ୍ଣ କାନ୍ତି, ଅଶ୍ରୁସିକ୍ତ ନୟନ ଓ କରୁଣା କୋମଳ କମନୀୟ ମୂର୍ତ୍ତି । ମନେହୁଏ ସତେ ଯେପରି ସେ ଅଶ୍ରୁପୂରିତ ଲୋଚନରେ ଅଖିଳ ମାନବ ସମାଜ ପ୍ରତି ହସ୍ତ ପ୍ରସାରଣପୂର୍ବକ ନିଜର କାତର ନିବେଦନ ଜଣାଉଅଛନ୍ତି "ହେ ମନୁଷ୍ୟ ଜାତି ! ତୁମେ ଅମୃତର ସନ୍ତାନ । ଅମୃତତ୍ୱ ତୁମର ଭାଗ୍ୟଲିପି । ଏହା ପୁଣି ତୁମର ହସ୍ତଗତ । ତେଣୁ ଏ ଦୁର୍ଲ୍ଲଭ ମନୁଷ୍ୟ ଜନ୍ମ ପାଇ ତୁମେ ନିଜକୁ ଏ ପରମ ସୌଭାଗ୍ୟରୁ ବଞ୍ଚିତ କରନାହିଁ ।

"ସର୍ବ ଶରୀର ମଧ୍ୟେ ସାର । ଦୁର୍ଲ୍ଲଭ ନର କଳେବର ॥
ସୁଲଭ ନାବ ରୂପ ଘଟେ । ବନ୍ଧନ ଭବସିନ୍ଧୁ ତଟେ ॥
ଏ ନାବଗୁରୁ କର୍ଣ୍ଣଧାର । ମୁହିଁ ଅନୁକୂଳ ସମୀର ॥
ଏମନ୍ତ ନାବ ଆଉଁ କୂଳେ । ଯେବା ନ ତରେ ଭବ ଜଳେ ॥
ସେ ନର ହୀନ ମୂଢ଼ମତି । ତାହାକୁ ବୋଲି ଆତ୍ମଘାତୀ ॥"

ଜଗନ୍ନାଥ ଦାସଙ୍କ ଭାଗବତର ଆଶା ଆଶ୍ୱାସନାର ଏ ଅଭୟ ବାଣୀ ଅନନ୍ତକାଳଯାଏ ଜଗତର ତୃଷିତ ତାପିତ ପ୍ରାଣରେ ସୁଶୀତଳ ସୁଧାଧାରା ଢାଳୁଥିବ ।

